ଜାତୀୟ ଜୀବନ ଚରିତମାଳା

# ରାଣୀ ଚେନ୍ନମ୍ମା

ସଦାଶିବ ବୋଡ଼ିୟାର

ଅନୁବାଦ

ବଂଶୀଧର ମହାନ୍ତି



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ଭୂମିକା

ପିଲାଦିନରୁ ମୁଁ ଇଂରେଜମାନଙ୍କ ବିରୁଦ୍ଧରେ ରାଣୀ ଚେନ୍ନମ୍ମାଙ୍କ ଦୁଃସାହସିକ ସଂଗ୍ରାମର ବୀରତ୍ୱପୂର୍ଣ୍ଣ କାହାଣୀ ଶୁଣିଆସୁଛି । ବର୍ଷ ବର୍ଷ ଧରି ବିଭିନ୍ନ ସୂତ୍ରରୁ କିତ୍ତୁରର ଇତିହାସ ଅଧ୍ୟୟନ କରିଛି । ବେଳେବେଳେ ରାଣୀଙ୍କ ଜୀବନ ସମ୍ପର୍କରେ କୌଣସି ଐତିହାସିକ ଉପନ୍ୟାସ କିମ୍ବା ନାଟକ ଲେଖିବାର ଅଭିଳାଷ ମୋ ମନକୁ ଆସିଛି । ସୌଭାଗ୍ୟ ତଥା ସଂଯୋଗ ବଶତଃ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ 1974 ମସିହା ଡିସେମ୍ବର ମାସରେ ରାଣୀଙ୍କର ଏକ ଜୀବନଚରିତ ଲେଖିବା ନିମନ୍ତେ ମୋତେ ଅପ୍ରତ୍ୟାଶିତ ଭାବରେ ଅନୁରୋଧ ଜଣାଇଲେ । ଏହି ପୁସ୍ତକ 'ଜାତୀୟ ଜୀବନ ଚରିତମାଳା'ର ଅନ୍ତର୍ଗତ ହୋଇ ପ୍ରକାଶିତ ହେବ ବୋଲି କୁହାଯାଇଥିଲା । ମୁଁ ଏହି ଅନୁରୋଧ ରକ୍ଷାକରି ଯଥାଶୀଘ୍ର କିତ୍ତୁରର ଇତିହାସ ତଥା ରାଣୀ ଚେନ୍ନାମ୍ମାଙ୍କ ସମ୍ପର୍କରେ ତଥ୍ୟ ସଂଗ୍ରହ କରିବାକୁ ଲାଗିଲି । ଏ ସମ୍ପର୍କରେ ମୋତେ ପ୍ରଚୁର ଅପ୍ରକାଶିତ ତଥା ପ୍ରକାଶିତ ତଥ୍ୟ ମିଳିଲା । ଏହା ମଧ୍ୟରେ ତତ୍କାଳୀନ ବ୍ରିଟିଶ୍ ସାମରିକ ତଥା ବେସାମରିକ ପଦାଧିକାରୀମାନଙ୍କ ମଧ୍ୟରେ ବିନିମୟ ହୋଇଥିବା ପତ୍ର, ରାଣୀ ଚେନ୍ନମ୍ମା ତଥା ଅନ୍ୟ ପ୍ରମୁଖ ବ୍ୟକ୍ତିମାନଙ୍କ ସହିତ ବିନିମୟ ହୋଇଥିବା ସେମାନଙ୍କର ପତ୍ର ( ଯାହା ଏବେ ଇଣ୍ଡିଆ ଅଫିସ୍, ଲଣ୍ଡନର ପୁରାତତ୍ତ୍ୱ ବିଭାଗରେ ସୁରକ୍ଷିତ ରହିଛି ), ଭାରତର ଅନେକ ମ୍ୟୁଜିୟମ୍ ତଥା ଅନ୍ୟ ଅନେକ କାର୍ଯ୍ୟାଳୟରୁ ସଂଗୃହୀତ ତଥ୍ୟାବଳୀ ଅନ୍ତର୍ଭୁକ୍ତ । ଏ ବିଷୟରେ ଅଦ୍ୟାବଧି ପ୍ରକାଶିତ ପ୍ରାୟ ସମସ୍ତ ପୁସ୍ତକ ଏବଂ ପତ୍ରପତ୍ରିକା ମୁଁ ପଢ଼ିଛି । କିଛି ଅପ୍ରକାଶିତ କବିତା, ଲୋକଗୀତ ତଥା ସେହି ପ୍ରକାରର ଅନ୍ୟ ଉପାଦାନ ମଧ୍ୟ ମୁଁ ସଂଗ୍ରହ କରିପାରିଛି । ତଥ୍ୟ ସଂଗ୍ରହ ନିମନ୍ତେ ମୁଁ ଅନେକ ଥର କିତ୍ତୁର ତଥା କିତ୍ତୁର ଇତିହାସ ସମ୍ପର୍କିତ ଅନ୍ୟ ଅନେକ ସ୍ଥାନ ମଧ୍ୟ ପରିଦର୍ଶନ କରିଛି । କିତ୍ତୁର ରାଜପରିବାରର ବର୍ତ୍ତମାନର ଆତ୍ମୀୟ ସ୍ୱଜନ, ବଂଶଧରମାନଙ୍କ ସହିତ ମଧ୍ୟ ମୁଁ ଯୋଗାଯୋଗ କରି ସେମାନଙ୍କଠାରୁ ବହୁ ତଥ୍ୟ ସଂଗ୍ରହ କରିଛି । କାମଟି ପରିଶ୍ରମ ସାପେକ୍ଷ ହେଲେ ମଧ୍ୟ ଅତ୍ୟନ୍ତ ଉଦ୍ଦୀପନାମୂଳକ ଥିଲା । ସଂଗ୍ରହ ତଥା ଅଧ୍ୟୟନ କାର୍ଯ୍ୟ ସଂମ୍ପୂର୍ଣ୍ଣ ହେଲା ପରେ ମୋର ହୃଦ୍‌ବୋଧ ହେଲା ଯେ, ଭାରତୀୟ ସୂତ୍ରରୁ ରାଣୀ ଚେନ୍ନମ୍ମା କିମ୍ବା କିତ୍ତୁରର ଇତିହାସ ସମ୍ପର୍କରେ ଯାହା ଉପାଦାନ ମିଳୁଛି, ତାହାର ପରିମାଣ ସେତେ ଉଲ୍ଲେଖଯୋଗ୍ୟ ନୁହେଁ । କାରଣ ଚେନ୍ନାମ୍ମାଙ୍କ ଶାସନକାଳରେ କିମ୍ବା ଠିକ୍ ତା'ପରେପରେ ଇତିହାସ ଉପରେ ଯାହାସବୁ ଲେଖାଯାଇଥିଲା, ତା' ଭିତରୁ ଖୁବ୍ କମ୍ ଏବେ ଉପଲବ୍ଧ ହେଉଛି । ତେଣୁ ଯାହା ସବୁ ମିଳୁଛି, ସେଗୁଡ଼ିକ ହେଉଛି ମୁଖ୍ୟତଃ ସାହିତ୍ୟିକ ଉପାଦାନ, ଯଥା : ଗାଥା କବିତା, ଲୋକଗୀତ, କବିତା, ନାଟକ ଏବଂ ଅନ୍ୟ ସାହିତ୍ୟିକ କୃତି । ସାଧାରଣ ଭାବରେ ଏଗୁଡ଼ିକରେ ଇତିହାସ ଗୌଣ ହୋଇ ରହିଛି ଏବଂ କେତେକ ଘଟଣା ସମ୍ପର୍କରେ ପରସ୍ପର ବିରୋଧୀ ତଥ୍ୟ ମଧ୍ୟ ଦିଆଯାଇଛି । ଇଣ୍ଡିଆ ଅଫିସ୍‌ରେ କାଗଜପତ୍ର, ବିଶେଷ କରି ସାମରିକ ତଥା ବେସାମରିକ ପଦାଧିକାରୀମାନଙ୍କ ମଧ୍ୟରେ ବିନିମୟ ହୋଇଥିବା ପତ୍ରାଦି ବେଶ୍ ଯତ୍ନର ସହିତ ରଖାଯାଇଛି । ସେଗୁଡ଼ିକ ହିଁ ହେଉଛି କିତ୍ତୁର ଇତିହାସ

ତଥା 1824 ରେ ସଂଘଟିତ ଯୁଦ୍ଧ ସମ୍ପର୍କରେ ମୂଲ୍ୟବାନ୍ ସାମଗ୍ରୀ । ତେଣୁ ଏହି ଜୀବନ ଚରିତରେ ବର୍ଣ୍ଣିତ ଘଟଣା ସମ୍ପର୍କରେ ସନ୍ଦେହ କରାଯିବାର କୌଣସି କାରଣ ନାହିଁ । କାରଣ ସେସବୁ ଘଟଣାର ସୂଚନା ପୂର୍ବୋକ୍ତ ପତ୍ରଗୁଡ଼ିକରେ ହିଁ ରହିଛି । ଘଟଣାକୁ ପ୍ରାଣବନ୍ତ କରିବା ନିମନ୍ତେ ଏହିସବୁ ଐତିହାସିକ ବିବରଣୀ ବ୍ୟବହାର କରିଛି । ଏହାଛଡ଼ା ମୁଁ କର୍ଣ୍ଣାଟକ ସରକାରଙ୍କଦ୍ୱାରା ପ୍ରକାଶିତ 'ହିଷ୍ଟ୍ରି ଅଫ୍ ଫ୍ରିଡ଼ମ୍ ମୁଭ୍‌ମେଣ୍ଟ ଇନ୍ କର୍ଣ୍ଣାଟକ' (ଡଃ ଏମ୍. ବି. କୃଷ୍ଣାରାଓ ଓ ପ୍ରଫେସର ଜୀ. ଏସ୍. ହଲ୍ଲପ୍ପାଙ୍କଦ୍ୱାରା ସମ୍ପାଦିତ)ର ପ୍ରଥମ ସଂସ୍କରଣରେ କିତ୍ତୁର ଇତିହାସ ସମ୍ପର୍କରେ ଯେଉଁ ମୂଲ୍ୟବାନ୍ ତଥ୍ୟାବଳୀ ରହିଛି, ତାକୁ ମଧ୍ୟ ପ୍ରଚୁର ପରିମାଣରେ ବ୍ୟବହାର କରିଛି ।

ସ୍ୱର୍ଗୀୟ ବୋଡ଼୍‌ଡା ଭାଦେସ୍ପା ମୃଗୀ ଏ ସମ୍ପର୍କରେ ଯେଉଁ ମୂଲ୍ୟବାନ୍ ଗବେଷଣା କରିଥିଲେ, ତାହାକୁ ଏଠାରେ ମୁଁ କୃତଜ୍ଞତାର ସହିତ ସ୍ମରଣ କରୁଛି । ସ୍ୱର୍ଗୀୟ ମୃଗୀ ଗ୍ରାମରୁ ଗ୍ରାମାନ୍ତର ପରିଭ୍ରମଣ କରି ସମସ୍ତ ସମ୍ଭାବ୍ୟ ଉପାଦାନରୁ ଟିପ୍ପଣୀ ସଂଗ୍ରହ କରିଛନ୍ତି; ଲୋକଗୀତ, କବିତା ପ୍ରଭୃତିକୁ ଏକତ୍ର କରି ତନ୍ମଧ୍ୟରୁ କିତ୍ତୁର ଇତିହାସର ଅବଲୁପ୍ତ ଉପାଦନ ସଂଗ୍ରହ କରିଛନ୍ତି । ଏହା ହିଁ ଥିଲା ତାଙ୍କ ଲକ୍ଷ୍ୟ । ପ୍ରସ୍ତୁତ ଗ୍ରନ୍ଥରେ ମୁଁ ତାଙ୍କଦ୍ୱାରା ସଂଗୃହୀତ ଉପାଦାନକୁ ପ୍ରଚୁର ପରିମାଣରେ ବ୍ୟବହାର କରିଛି । ମହତ୍ତ୍ୱ ଦୃଷ୍ଟିରୁ ଏହିସବୁ ଉପାଦାନ ଇଣ୍ଡିଆ ଅଫିସ୍, ଲଣ୍ଡନର କାଗଜପତ୍ରଠାରୁ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ ।

ଏହି ଜୀବନଚରିତ ରଚନା କାଳରେ ମୁଁ କର୍ଣ୍ଣାଟକ ବିଶ୍ୱବିଦ୍ୟାଳୟର ପ୍ରାଚୀନ ଭାରତୀୟ ଇତିହାସ ତଥା ସଂସ୍କୃତି ବିଭାଗର ଡଃ ଏ. ସୁନ୍ଦରଙ୍କଠାରୁ ଯଥେଷ୍ଟ ସାହାଯ୍ୟ, ପରାମର୍ଶ ତଥା ଦିଗ୍‌ଦର୍ଶନ ଲାଭକରିଛି । ସେ ଏହାର ପାଣ୍ଡୁଲିପିଟିକୁ ଆମୂଳ ଅଧ୍ୟୟନ କରି ବହୁ ମୂଲ୍ୟବାନ ସଂଶୋଧନ ନିମନ୍ତେ ପରାମର୍ଶ ଦେଇଥିଲେ । ସେଥିରୁ ଅନେକ ମୁଁ ଗ୍ରହଣ କରିନେଇଛି । ତାଙ୍କର ସହାୟତା ତଥା ମୂଲ୍ୟବାନ୍ ପରାମର୍ଶ ନିମନ୍ତେ ମୁଁ ତାଙ୍କ ନିକଟରେ କୃତଜ୍ଞ । ମାତ୍ର ବ୍ୟକ୍ତି ଏବଂ ଘଟଣା ସମ୍ପର୍କୀୟ ତ୍ରୁଟି କିମ୍ବା ମତାମତର ଦାୟିତ୍ୱ ସମ୍ପୂର୍ଣ୍ଣ ଭାବରେ ମୋର । ଇଂରାଜୀ ବିଭାଗର ଡଃ. ସି. ଆର୍. ଯରବିନ୍ତେଲିମଥ୍‌ଙ୍କ ପ୍ରତି ମୁଁ କୃତଜ୍ଞ । ସମ୍ପୂର୍ଣ୍ଣ ପାଣ୍ଡୁଲିପି (ଇଂରାଜୀ)ଟିକୁ ପଢ଼ି ସେ ଭାଷା ତଥା ଅଭିବ୍ୟକ୍ତି ଦୃଷ୍ଟିରୁ କେତେକ ସ୍ଥାନରେ ଏହାକୁ ସଂଶୋଧନ କରିଥିଲେ ଏବଂ କେତେକ ସ୍ଥାନରେ ପରିବର୍ତ୍ତନ ନିମନ୍ତେ ପରାମର୍ଶ ଦେଇଥିଲେ । ଷ୍ଟେନୋ ଟାଇପିଷ୍ଟ ଶ୍ରୀ ଜୀ. ଏମ୍. ଘୁଣ୍ଟମଥ, ବ୍ୟକ୍ତିଗତ ସହାୟକ ଶ୍ରୀ ଏସ୍. ଆଇ. ବଡ଼ବଡ଼ଗୀ ତଥା ଟାଇପିଷ୍ଟ ଶ୍ରୀ ଏସ୍. ଏସ୍. ନାବଚୀ ପାଣ୍ଡୁଲିପିର ପ୍ରେସ୍ କପି ପ୍ରସ୍ତୁତ କରିଥିଲେ । ଏମାନଙ୍କ ପ୍ରତି ମୁଁ କୃତଜ୍ଞ । ଲାଇବ୍ରେରୀଆନ୍ ଶ୍ରୀ କେ. ଏସ୍. ଦେଶପାଣ୍ଡେ, ସହକାରୀ ଲାଇବ୍ରେରୀଆନ୍ ଶ୍ରୀ ଏସ୍. ଆର୍. ଗୁଂଜଲ ଏବଂ କନ୍ନଡ଼ ଗବେଷଣା ପରିଷଦ୍‌ର ନିର୍ଦ୍ଦେଶକ ଡଃ ବି. ଏସ୍. କୁଲକର୍ଣ୍ଣୀ ସେମାନଙ୍କ ନିକଟରେ ଥିବା ପ୍ରୟୋଜନୀୟ କାଗଜପତ୍ର ମୋତେ ଯୋଗାଇ ଦେଇଥିଲେ । ଫଳରେ ଏହି ଗ୍ରନ୍ଥ ରଚନାକରିବା ସମ୍ଭବପର ହୋଇପାରିଲା । ତେଣୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ ।

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ପ୍ରତି ମୁଁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି । ସେମାନେ ହିଁ ମୋତେ ଏହି ଜୀବନ ଚରିତ ଲେଖିବାର ସୁଯୋଗ ଦେଇଛନ୍ତି । ମୋ ପାଇଁ ଏହା ଏକ ଆନନ୍ଦମୟ ଅନୁଭୂତି ହୋଇ ରହିଛି ।

*2 ଅକ୍ଟୋବର 1976* **ସଦାଶିବ ବୋଡ଼ିୟାର**

# ସୂଚୀ

# ଐତିହାସିକ ପୃଷ୍ଠଭୂମି

ସଂପ୍ରତି କିତ୍ତୁର୍ କର୍ଣ୍ଣାଟକ ରାଜ୍ୟର ବେଲଗାଓଁ ଓ ଧରୱାଡ଼ର ମଧ୍ୟଭାଗରେ ପୁଣେ-ବାଙ୍ଗାଲୋର୍ ରାଜପଥର ନିକଟରେ କେତେକ ଛୋଟ ପାହାଡ଼ ଗୁଡ଼ିକର ପଛରେ ସବୁଜ ଗଛର ଅରଣ୍ୟ ମଧ୍ୟରେ ଅବସ୍ଥିତ ଏକ ଛୋଟ ଜନବସତି । କର୍ଣ୍ଣାଟକ ବାହାରର ବହୁତ କମ୍ ଲୋକ ଏକଥା ଜାଣନ୍ତି ଯେ, ଏହି ଛୋଟ ଜନବସତିଟି କେତେ ଗୌରବମୟ କୌଶଳ ପ୍ରଦର୍ଶନ କରିଛି । ଏହି ଜନବସତି କୌଣସି ଏକ ଉନ୍ନତ ରାଜବଂଶର ଏକ ଛୋଟ ରାଜ୍ୟର ପାଖାପାଖି 164 ବର୍ଷ ପର୍ଯ୍ୟନ୍ତ ରାଜଧାନୀ ଥିଲା । ଏହି ରାଜବଂଶର ଦ୍ୱିଶତାଧିକ ବର୍ଷ ଧରି ଏକ ଅବିଚ୍ଛିନ୍ନ ଇତିହାସ ରହିଛି ।

କିତ୍ତୁର୍‌ର ରାଣୀ ଚେନ୍ନାମ୍ମା ଶକ୍ତିଶାଳୀ ବ୍ରିଟିଶ୍ ସାମ୍ରାଜ୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିବା ଭାରତୀୟ ରାଜବଂଶର ସର୍ବପ୍ରଥମ ରାଣୀ ଥିଲେ, ଅବଶ୍ୟ ଖୁବ୍ ଅଳ୍ପକାଳ ପାଇଁ । ରାଣୀ ଚେନ୍ନାମା ଯଦିଓ ଏକ ଛୋଟ ରାଜ୍ୟର ରାଣୀ ଥିଲେ, ତଥାପି ତାଙ୍କର ଅଦମ୍ୟ ସାହସ ଓ ଦେଶଭକ୍ତି ପରିପୂର୍ଣ୍ଣ ଥିଲା । ତାଙ୍କର ନିଜ ମାତୃଭୂମି ଓ ନିଜ ଦେଶବାସୀଙ୍କ ପ୍ରତି ଏତେ ସ୍ନେହ ଥିଲା ଯେ, ସେ ଏହି ସ୍ୱାଧିନତା ସୁରକ୍ଷିତ ରଖିବା ପାଇଁ ସବୁ କିଛି ତ୍ୟାଗ କରିବା ନିମନ୍ତେ ପ୍ରସ୍ତୁତ ଥିଲେ । ତାଙ୍କ ଭିତରେ ଯେ କୌଣସି ଧରଣର ସଙ୍କଟକୁ ମୁକାବିଲା କରିବାର ବୌଦ୍ଧିକ କ୍ଷମତା ଥିଲା, ତାହା ରାଜନୈତିକ ସଙ୍କଟ ହେଉ ବା ସାମରିକ ନୀତି ହେଉ । ସେ ଶକ୍ତିଶାଳୀ ବ୍ରିଟିଶ ସେନା ସହ ଲଢ଼ିଲେ ଏବଂ ଘମାଘୋଟ ଯୁଦ୍ଧ ମଧ୍ୟ ହେଲା । ଥରେ ତ ବ୍ରିଟିଶ ସୈନ୍ୟବାହିନୀ ଭୟାବହ ଯୁଦ୍ଧ ଓ ସେମାନଙ୍କର କ୍ଷୟକ୍ଷତିକୁ ଦେଖି ବିବ୍ରତ ହୋଇ ପଡ଼ିଥିଲେ ଏବଂ ପୂର୍ଣ୍ଣରୂପେ ପରାସ୍ତ ହୋଇ ଯାଇଥିଲେ । ଏହା ଥିଲା ଶକ୍ତିଶାଳୀ ବ୍ରିଟିଶ୍ ସାମ୍ରାଜ୍ୟ ବିରୁଦ୍ଧରେ ଭାରତୀୟ ସ୍ୱାଧିନତା ସଂଗ୍ରାମର ପ୍ରଥମ ଓ ଏକମାତ୍ର ବିଜୟ । ଏହି ପ୍ରେରଣାଦାୟକ ଗାଥା, ପ୍ରତ୍ୟେକ ଦେଶର ସ୍ୱାଧୀନତା ପ୍ରେମୀମାନଙ୍କୁ ସର୍ବଦା ସ୍ପନ୍ଦିତ କରିଚାଲିବ । ମୁଁ ପ୍ରୟାସ କରିବି ଯେପରି ଏହି ବୀରା ରାଣୀଙ୍କ କାହାଣୀର ବର୍ଣ୍ଣନା ସାକ୍ଷ୍ୟ ଓ ଲିଖିତ ପ୍ରମାଣ ଅନୁସାରେ ନିଷ୍ଠାପୂର୍ବକ କରାଯାଇପାରିବ, ଯାହାକି ଇତିହାସ ଓ ଲୋକ ସାହିତ୍ୟ ଉଭୟ ଉପରେ ଆଧାରିତ । ଆଶା କରୁଛି ଯେ, ଭାବୀ ସନ୍ତାନମାନେ କର୍ଣ୍ଣାଟକର ଏହି ବୀରା ରାଣୀଙ୍କୁ ସମ୍ୟକ୍ ମାନ୍ୟତା ଦେବେ ଓ ନିଜର ଶ୍ରଦ୍ଧାଞ୍ଜଳୀ ଅର୍ପଣ କରିବେ ।

### କିତ୍ତୁର୍ ରାଜବଂଶ

କିତ୍ତୁର ରାଜବଂଶର ପ୍ରାରମ୍ଭ 1585ରେ ହୋଇଥିଲା । ଏହାର ସଂସ୍ଥାପକ ଥିଲେ ମୈସୁର୍ ରାଜ୍ୟସ୍ଥ ସାଗରର ହିରେମଲ୍ଲ ସେଟ୍ଟୀ ଓ ଚିକ୍କା ମଲ୍ଲ ସେଟ୍ଟୀ, ଯାହାଙ୍କୁ ଏହି ଅଞ୍ଚଳ ବୀଜାପୁରର ଆଦିଲ୍‌ସାହୀ ରାଜାଙ୍କଠାରୁ ଉପହାର ସ୍ୱରୂପ ମିଳିଥିଲା, ଯେହେତୁ ସେମାନେ ବହୁବର୍ଷ ଧରି ଅତ୍ୟନ୍ତ ନିଷ୍ଠା ସହକାରେ ସେମାନଙ୍କର ସେବା କରିଥିଲେ । ଦୁଇଭାଇ ଖୁବ୍ ବୀର ଓ ଯୋଦ୍ଧା ଥିଲେ । ଆଦିଲ୍‌ସାହୀ ରାଜାମାନେ

ହିରମଲ୍ଲ ସେଟ୍ଟୀଙ୍କୁ 'ସମ୍ସେର୍ ଜଙ୍ଗ ବାହାଦୂର' ଉପାଧିରେ ବିଭୂଷିତ କରିଥିଲେ । ନିଜର ଶୌର୍ଯ୍ୟ ଓ ସେବାର ପ୍ରତିଫଳ ସ୍ୱରୂପ ସେମାନେ 1585 ମସିହାରେ ଆଦିଲ୍‌ସାହୀ ଶାସକଙ୍କଠାରୁ ହୁବଲୀ (ଧାରୱାଡ଼ ଜିଲ୍ଲାରେ) ନିକଟ ଅଞ୍ଚଳରେ, ଯାହାକୁ ସେ ସମୟରେ ହୁବଲୀ ପ୍ରଗଣା କୁହାଯାଉଥିଲା, ସରଦେଶମୁଖୀର ଅନୁଦାନ ପାଇଥିଲେ । ତାହା ପରେ ସେମାନେ ସମ୍ପାଗାଓଁ (ସଂପ୍ରତି ବେଲଗାଓଁ ଜିଲ୍ଲାରେ) ନାମକ ଏକ ସ୍ଥାନକୁ ଆସି ବସବାସ କଲେ ତଥା ନିଜ ରାଜଧାନୀ ସ୍ଥାପନ କଲେ ଏବଂ ସେହି ସମୟରେ କିତ୍ତୁର୍ ଅନ୍ତର୍ଗତ ଅଞ୍ଚଳରେ ଶାସନ କଲେ । ଏହି ରାଜବଂଶ 1585 ଠାରୁ 1824 ମସିହା ପର୍ଯ୍ୟନ୍ତ ସର୍ବମୋଟ୍ 239 ବର୍ଷ ପର୍ଯ୍ୟନ୍ତ ଶାସନ କରିଥିଲେ ।

## ପ୍ରାରମ୍ଭିକ ଶାସକଗଣ

ପ୍ରାରମ୍ଭିକ ଶାସକମାନଙ୍କର ଦୀର୍ଘ ଇତିହାସ ପରିପ୍ରେକ୍ଷୀରେ ସବୁଠାରୁ ଉଲ୍ଲେଖଯୋଗ୍ୟ ଶାସକ ଥିଲେ ଅଲପ୍ପଗୌଡ଼ ସରଦେସାଇ, ଯିଏ 1660 ଠାରୁ 1691 ମସିହା ପର୍ଯ୍ୟନ୍ତ କିତ୍ତୁର୍ ରାଜବଂଶର ପଞ୍ଚମ ଶାସକ । ତାଙ୍କର ଶାସନ କାଳରେ ହିଁ ଏହି ରାଜପରିବାର 1682 ମସିହାରେ କିତ୍ତୁରଠାରେ ବସବାସ ଆରମ୍ଭ କରିଥିଲେ, ଯାହାକୁ ସେ ଯାଏଁ ଗଜଗନା-ହଲ୍ଲୀ ବୋଲି କୁହାଯାଉଥିଲା । ତାଙ୍କ ଶାସନକାଳ ମଧ୍ୟରେ ଏହି ରାଜବଂଶର ସୀମା ବୃଦ୍ଧି ହୋଇ ସମ୍ପାଗାଓଁ ଓ ବିଦୀ ଜିଲ୍ଲା ମଧ୍ୟ ଏଥିରେ ମିଶିଥିଲା । ସେ ଥିଲେ ଜଣେ ବୀର ରାଜା । ସେ ନିଜ ଶାସନ ଜାରୀ ରଖିବା ନିମନ୍ତେ ବୀଜାପୁରର ରାଜାମାନଙ୍କ ସହିତ ମଧ୍ୟ ଯୁଦ୍ଧ ଲଢ଼ିଥିଲେ । କିତ୍ତୁର୍ କିଲ୍ଲା, ଯାହାର ଭଗ୍ନାବଶେଷ ଆଜି ମଧ୍ୟ ବିଦ୍ୟମାନ, ତାଙ୍କରି ଶାସନକାଳରେ ହିଁ ଗଢ଼ାଯାଇଥିଲା ।

ଆଜି ଭଗ୍ନସ୍ତୂପ ଭାବେ ବିଦ୍ୟମାନ ରାଜମହଲରୁ ତାହାର ଏକଦା ସୁନ୍ଦରତାର ଆଭାସ ମିଳେ । ମୂଳରୂପରେ ଏହାର ମୁଖ୍ୟ ତୋରଣ 100 ଫୁଟ ଲମ୍ବା ଓ 30 ଫୁଟ ଚୌଡ଼ା ଥିଲା । ଏହାର ଉପରେ ବଡ଼ ବଡ଼ ଶାଗୁଆନ୍ କାଠର ସ୍ତମ୍ଭ ଲାଗିଥିଲା । ଏହାର ବିଶାଳ ଛାତଟି ଶାଗୁଆନ କାଠ ଖୋଦେଇ ହୋଇ ଗଢ଼ାଯାଇଥିଲା । ରାଜମହଲ ଥିଲା ତ୍ରିତଳ ବିଶିଷ୍ଟ । ଏଥିରେ ଭୋଜନ କକ୍ଷ, ରୋଷେଇ ଘର ଓ ସ୍ନାନାଗାର ଥିଲା । ଭୋଜନ କକ୍ଷଟି ଏତେ ବିଶାଳ ଥିଲା ଯେ, ଏହା ଭିତରେ ଥରକେ 1000 ଲୋକ ଖାଦ୍ୟ ଖାଇ ପାରୁଥିଲେ । ଘୋଡ଼ା, ହାତୀ ଓ ଓଟମାନଙ୍କ ପାଇଁ ବ୍ୟାରାକ୍ ଓ ଅସ୍ତାବଲମାନ ଥିଲା । ମୁଖ୍ୟ ମହଲ ସାମ୍ନାରେ ଥିଲା 'ସଦର କକ୍ଷ' ଯେଉଁଠି ରାଜାଙ୍କୁ ଭେଟିବାକୁ ଆସୁଥିବା ଲୋକେ ବସୁଥିଲେ ଏବଂ ତାଙ୍କୁ ଭେଟିବା ନିମନ୍ତେ ନିଜ ପାଳିର ପ୍ରତୀକ୍ଷା କରୁଥିଲେ । ଅଲିପ୍ପଗୌଡ଼ ସରଦେସାଇଙ୍କ ପରେ ଉତ୍ତରାଧିକାର ତାଙ୍କର ପୁତ୍ର ମୁଦିଲପ୍ପଗୌଡ଼ ସରଦେସାଇଙ୍କ ଛଟେରାଜାଙ୍କୁ ମିଳିଲା । ସେ 1691 ରୁ 1696 ପର୍ଯ୍ୟନ୍ତ ଶାସନ କଲେ । ସେ ମଧ୍ୟ ନିଜର ବୀରତା ନିମନ୍ତେ ପ୍ରସିଦ୍ଧ ଥିଲେ । ଆଦିଲ୍‌ସାହୀ ରାଜାମାନେ ଯୁଦ୍ଧଭୂମିରେ ଅପୂର୍ବ ବୀରତ୍ୱ ନିମନ୍ତେ ତାଙ୍କୁ 'ସମ୍ସେର୍ ଜଙ୍ଗ ବାହାଦୂର', 'ଦିଲାବର ଖାଁ ବାହାଦୂର' ଓ 'ଦିଲାବର ଜଂଗ' ଉପାଧିମାନ ପ୍ରଦାନ କରିଥିଲେ । ଇତିମଧ୍ୟରେ ମୋଗଲ ସମ୍ରାଟ ଆଉରଙ୍ଗଜେବ୍, ଆଦିଲ୍‌ସାହୀ ରାଜାଙ୍କୁ ପରାସ୍ତ କରି ବୀଜାପୁର ରାଜ୍ୟକୁ ନିଜ ସାମ୍ରାଜ୍ୟରେ ମିଶାଇଦେଲେ । ସେ ରଉଫ୍ ଖାଁଙ୍କୁ ସେହି ଅଞ୍ଚଳର କାର୍ଯ୍ୟନିର୍ବାହୀ ଶାସକ, 'ସବନୂର କର ନବାବ' ନିଯୁକ୍ତ କଲେ । କିତ୍ତୁର ଏହି ଅଞ୍ଚଳ ମଧ୍ୟରେ ଆସୁଥିଲା । ମୁଦିମଲ୍ଲପ୍ପଗୌଡ଼ ସରଦେସାଇ ଶାସନ ଜାରୀ ରଖିବା ନିମନ୍ତେ ରଉଫ୍ ଖାଁଙ୍କ ସହ ବୁଝାମଣା କଲେ ।

ପରବର୍ତ୍ତୀ ମହତ୍ତ୍ୱପୂର୍ଣ୍ଣ ଶାସକ ଥିଲେ ଶିବନଗୌଡ଼ ସରଦେସାଇ, ଯିଏ 1717 ଠାରୁ 1734

ମସିହା ପର୍ଯ୍ୟନ୍ତ ଶାସନଭାର ବହନ କରିଥିଲେ । ତାଙ୍କୁ ଆଓରଙ୍ଗଜେବ୍‌ଙ୍କ ପକ୍ଷରୁ ଅନେକ ଉପାଧି ଓ ସନନ୍ଦ ମିଳିଥିଲା । ତାଙ୍କପରେ ମାଳବ ରୁଦ୍ରଗୌଡ଼ ଓରଫ୍ ଫକୀର ରୁଦ୍ରଗୌଡ଼ ସର୍ଜା ରାଜ୍ୟଭାର ସମ୍ଭାଳିଲେ ଏବଂ 1734 ଠାରୁ 1749 ମସିହା ପର୍ଯ୍ୟନ୍ତ ଶାସନ କଲେ । ତାଙ୍କ ପତ୍ନୀ, ରାଣୀ ମଲ୍ଲମ୍ମା ଜଣେ ସାହାସୀ ନାରୀ ଥିଲେ ଏବଂ ରାଜ୍ୟ ଶାସନ କାର୍ଯ୍ୟରେ ପତିଙ୍କୁ ସହାୟତା କରିଥିଲେ । ଯଦିଓ ରାଣୀ ମଲ୍ଲମ୍ମା ଖୁବ୍ ନିଷ୍ଠାବତୀ ଓ ଯୋଗ୍ୟା ପତ୍ନୀ ଥିଲେ, ତେବେବି ରୁଦ୍ରଗୌଡ଼ ନୀରଞ୍ଜନୀ ନାମକ ଜଣେ ମୋହିନୀ ମୁସ୍‌ଲିମ୍ ସୁନ୍ଦରୀଙ୍କର ପ୍ରେମଜାଲରେ ଆବଦ୍ଧ ହୋଇଗଲେ ଏବଂ ସେ ତାଙ୍କର ଧର୍ମ ପରିବର୍ତ୍ତନ କରି ତାଙ୍କୁ ବୀରଶୈବତ୍ୱ (ଲିଙ୍ଗାୟତ) ଭାବେ ଦୀକ୍ଷିତ କଲେ, ଯାହା ଥିଲା କିତ୍ତୁର୍ ରାଜବଂଶର ଧର୍ମ, ଏବଂ ତା'ପରେ ତାହାଙ୍କୁ ବିବାହ କରିନେଲେ । ତାଙ୍କର ପ୍ରେମଗାଥାକୁ କବିମାନେ ଅନେକ କାବ୍ୟ କବିତା ଓ ଲୋକଗୀତି ରୂପରେ ରଚନା କରିଛନ୍ତି । ତାଙ୍କର (ରୁଦ୍ରଗୌଡ଼) ଭାଇ ମଲ୍ଲପ୍ପା ରୁଦ୍ରଗୌଡ଼ଙ୍କ ନୀରଞ୍ଜନୀ ସହ ବିବାହକୁ ବିରୋଧ କଲେ । ନୀରଞ୍ଜନୀର ସୌନ୍ଦର୍ଯ୍ୟରେ ଆସକ୍ତ ରୁଦ୍ରଗୌଡ଼ କିତ୍ତୁର ରାଜ୍ୟର ଉତ୍ତର ଭାଗରେ ଅବସ୍ଥିତ ଦେସନୁର ଠାରେ ତାହାଙ୍କପାଇଁ ଏକ ସୁନ୍ଦର ପ୍ରାସାଦ ନିର୍ମାଣ କରାଇଲେ ଏବଂ ନିଜର ଅଧିକାଂଶ ସମୟ ତାହାଙ୍କ ସହିତ ବିତାଉଥିଲେ । ସେହି ମହଲ ନୀରଞ୍ଜନୀ ମହଲ ନାମରେ ପ୍ରସିଦ୍ଧ । ଏଥିପାଇଁ ରାଣୀ ମଲ୍ଲମ୍ମାଙ୍କୁ ଶାସନ ଡ଼ୋରୀ ନିଜ ହାତକୁ ନେବାକୁ ପଡ଼ିଲା । ଅବଶ୍ୟ ସେ ଏହି କାର୍ଯ୍ୟ ନିମନ୍ତେ ଯୋଗ୍ୟା ଥିଲେ ଏବଂ ସେ ରାଜକାର୍ଯ୍ୟ ବହୁତ୍ ଦକ୍ଷତା ସହକାରେ ଚଳାଇଲେ । ରୁଦ୍ରଗୌଡ଼ ନିଜ ନାମ ଅନୁସାରେ ମଧ୍ୟ ଦେସନୁରଠାରେ ଏକ କିଲ୍ଲା ଗଢ଼ାଇଲେ ଏବଂ ତାହାର ନାମ ରୁଦ୍ରଗଡ଼ ରଖିଲେ ।

ତାଙ୍କର ଶାସନକାଳରେ 1796ରେ 'ସବନୁର କେ ନବାବ'ଙ୍କୁ କିଛି ଅନ୍ୟ ଅଞ୍ଚଳ ସମେତ କିତ୍ତୁର ମଧ୍ୟ ମରାଠାଙ୍କୁ ହସ୍ତାନ୍ତର କରିବାକୁ ପଡ଼ିଲା ଏବଂ କିତ୍ତୁର ରାଜବଂଶକୁ ନିଜ ସମ୍ପର୍କ 'ସବନୁର କେ ନବାବ'ଙ୍କ ସ୍ଥାନରେ ପୁନାର ପେଶୱାଙ୍କ ଅଧିନକୁ ବଦଳାଇବାକୁ ପଡ଼ିଲା । ରୁଦ୍ରଗୌଡ଼ଙ୍କର କେହି ପୁଅ ନଥିଲେ, ତେବେ ତାଙ୍କର ସ୍ୱର୍ଗୀୟ ଭାଇ ମଲ୍ଲପ୍ପାଙ୍କର ଜଣେ ପୁଅ ଥିଲା, ଯାହାର ନାମ ଥିଲା ବୀରପ୍ପଗୌଡ଼ । ଯେତେବେଳେ ରୁଦ୍ରଗୌଡ଼ ବୃଦ୍ଧ ହୋଇଗଲେ, ସେତେବେଳେ ସେ କିତ୍ତୁର ଗାଦିରେ ବସିବା ପାଇଁ ଉତ୍ତରାଧିକାରୀ ବାଛିବା ନିମନ୍ତେ ଭାବିବାକୁ ବାଧ୍ୟ ହୋଇଗଲେ । ସେ ସିଂହାସନ ଭାର ନିଜ ପୁତୁରା ବୀରପ୍ପାଗୌଡ଼ ହାତରେ ଦେବାପାଇଁ ନିଷ୍ପତ୍ତି କଲେ । କିନ୍ତୁ ବୀରପ୍ପାଗୌଡ଼ଙ୍କ ମା'ଙ୍କର ବିଶ୍ୱାସ ଥିଲା ଯେ, ତାଙ୍କ ପତି ମଲ୍ଲପ୍ପାଙ୍କୁ ରୁଦ୍ରଗୌଡ଼ ହିଁ ହତ୍ୟା କରିଛନ୍ତି, ତେଣୁ ତାଙ୍କର ସନ୍ଦେହ ଥିଲା । ସେ ନିଜ ପୁତ୍ର ସହିତ କାଶି ପଳାଇଲେ ଏବଂ କିଛିକାଳ କିତ୍ତୁରର କଲମଠଠାରେ ଓ କିଛିକାଳ ଉପ୍ପିନ୍ କେଟ୍‌ଗୋରୀଠାରେ ଜଣେ ବ୍ୟବସାୟୀଙ୍କ ଘରେ ଅଜ୍ଞାତଭାବେ ରହିବାକୁ ଲାଗିଲେ । ସଂଯୋଗବଶତଃ କିତ୍ତୁର୍‌ରେ କଲମଠ ସ୍ୱାମୀଙ୍କ ପୀଠ ଅବସ୍ଥିତ ଥିଲା, ଯିଏ କିତ୍ତୁର ରାଜବଂଶର ଗୁରୁ ଥିଲେ । ସମୟକ୍ରମେ ବୀରପ୍ପାଗୌଡ଼ ଓ ତାଙ୍କ ମା'ଙ୍କର ଠିକଣା ମିଳିବା ପରେ ରୁଦ୍ରଗୌଡ଼ ସ୍ୱୟଂ ସେଠାକୁ ତାଙ୍କ ଭାଉଜଙ୍କ ପାଖକୁ ଆସିଲେ ଓ ତାଙ୍କୁ ତାଙ୍କ ପୁତ୍ର ସହିତ କିତ୍ତୁର ଫେରିଯିବା ପାଇଁ ରାଜି କରାଇଲେ, କାରଣ ସେ ତାଙ୍କ ପୁତ୍ରକୁ ସିଂହାସନର ଉତ୍ତରାଧିକାରୀ କରିବାକୁ ଚାହୁଁଥିଲେ । ବୀରପ୍ପାଗୌଡ଼ କିତ୍ତୁର ଆସିଲେ ଏବଂ ରୁଦ୍ରଗୌଡ଼ଙ୍କ ଉତ୍ତରାଧିକାରୀ ଭାବେ ତାଙ୍କର ରାଜ୍ୟାଭିଷେକ ହୋଇଗଲା । କିଛିକାଳ ପରେ ରୁଦ୍ରଗୌଡ଼ଙ୍କର ଶାନ୍ତିପୂର୍ବକ ଦେହାନ୍ତ ହେଲା ଏବଂ ତାଙ୍କ ଅର୍ଦ୍ଧାଙ୍ଗିନୀ ନୀରଞ୍ଜନୀଙ୍କର ମଧ୍ୟ କିଛିଦିନ ପରେ ମୃତ୍ୟୁ ଘଟିଲା । ରୁଦ୍ରଗୌଡ଼ ଓ ନୀରଞ୍ଜନୀ ଉଭୟଙ୍କ ସମାଧି ଦୁଇଟି କିତ୍ତୁରରେ କଲିମଠ ପ୍ରାଙ୍ଗଣରେ ଭଲଭାବେ ସଂରକ୍ଷିତ କରି ରଖାଯାଇଛି ଏବଂ ଆଜି ମଧ୍ୟ ଦେଖାଯାଇପାରେ ।

ବୀରପ୍ପଗୌଡ଼ 1749 ରୁ 1782 ପର୍ଯ୍ୟନ୍ତ ରାଜତ୍ୱ କଲେ । ଏହି ଶାସନକାଳ ଘଟଣାବହୁଳ ଏବଂ ଦୀର୍ଘ ଥିଲା । 1778 ମସିହାରେ ମହୀଶୂରର ହାଇଦର ଅଲ୍ଲୀ, ଯିଏ ବେଲଗାଓଁ ଜିଲ୍ଲାରେ ମଲପ୍ରଭା ନଦୀର ଦକ୍ଷିଣ ଦିଗ ତଥା ବୀଜାପୁର ଜିଲ୍ଲାରେ କୃଷ୍ଣା ନଦୀର ଦକ୍ଷିଣ ଦିଗର ସମ୍ପୂର୍ଣ୍ଣ ଅଞ୍ଚଳ ଅଧିକାର କରିନେଇଥିଲେ, କିତ୍ତୁର ରାଜ୍ୟରୁ ତାଙ୍କର 'ପେଶକିସ୍' ବା ଆନୁଗତ୍ୟ ଭେଟି ଗ୍ରହଣ କରିବାକୁ ଏବଂ କିତ୍ତୁର ରାଜ୍ୟର ସ୍ୱତନ୍ତ୍ର ସ୍ଥିତି ଜାରୀ ରଖିବାକୁ ରାଜି ହୋଇଯାଇଥିଲେ । ସେ ଥିଲେ ଜଣେ ବୀର ଶାସକ, 1778 ରେ ସେ ତାସଗାଓଁର ଶାସକ ପଟ୍ଟବର୍ଦ୍ଧନଙ୍କୁ ପରାଜିତ କରିଥିଲେ ଓ ଗୋବିକକ ତଥା ସବଦତ୍ତୀ ଅଧିକାର କରି ନିଜ ସାମ୍ରାଜ୍ୟରେ ମିଶାଇ ଦେଇଥିଲେ । ଏହାପୂର୍ବରୁ ତାଙ୍କ ଅଧିକାରରେ ପୂର୍ବରୁ 1756 ଠାରୁ ପାରସଗଡ଼, ସମ୍ପାଗାଓଁ ଓ ବୀଦୀ ଜିଲ୍ଲା ଥିଲା । ଏହି ସମୟ ମଧ୍ୟରେ ଏକପକ୍ଷରେ ପେଶୱାଗଣ ଓ ଅପରପକ୍ଷରେ ହାଇଦର ଅଲ୍ଲୀଙ୍କ ମଧ୍ୟରେ ବରାବର ଲଢ଼େଇ ଚାଲୁରହିଥିଲା ଏବଂ କିତ୍ତୁର ଭଳି ଛୋଟ ରାଜ୍ୟମାନଙ୍କୁ ଏହି ଶକ୍ତିଶାଳୀ ଯୁଦ୍ଧପ୍ରିୟ ଶାସକମାନଙ୍କ ହାତରେ ଖେଳଣା ହେବାକୁ ପଡ଼ିଲା । 1779 ମସିହାରେ ପରଶୁରାମ ଭାଉ ଗୋକକ୍ ଉପରେ ବିଜୟ ହାସଲ କଲେ ଏବଂ ବୀରପ୍ପାଗୌଡ଼ ସରଦେସାଇଙ୍କୁ ବନ୍ଦୀ କଲେ । ସେ ଜଣେ ବୀର ଯୋଦ୍ଧା ଓ ପେଶୱା ଶାସନ ନିମନ୍ତେ ବିପଜ୍ଜନକ ହୋଇପାରନ୍ତି ଜାଣି ମଧ୍ୟ ପରଶୁରାମ ଭାଉ ତାଙ୍କୁ ମୀରାଜ ଜେଲରେ ବନ୍ଦୀ କରି ରଖିଲେ । ଯେଉଁଠାରେ 1782ରେ ତାଙ୍କର ଦେହାନ୍ତ ହୋଇଗଲା । ତାଙ୍କ ମୃତଦେହ କିତ୍ତୁରକୁ ଅଣାଯାଇ, କଲମଠ ପ୍ରାଙ୍ଗଣରେ ସମାଧି ଦିଆଗଲା । ତାଙ୍କ ସମାଧି ସ୍ଥଳ ଖୁବ୍ ଯତ୍ନରେ ରଖାଯାଇଛି ଏବଂ ଏବେ ମଧ୍ୟ ଅନେକ ଆଗନ୍ତୁକ ଏହାକୁ ଦେଖିବା ନିମନ୍ତେ ଆସନ୍ତି । ତାଙ୍କ ମୃତ୍ୟୁର ତୁରନ୍ତ ପଶ୍ଚାତ୍ ପରିବାର ପକ୍ଷରୁ ମଲ୍ଲସର୍ଜାଙ୍କୁ ପୋଷ୍ୟପୁତ୍ର ଗ୍ରହଣ କରାଗଲା ଏବଂ ସେ 1782ରେ ରାଜ୍ୟର ଶାସକ ରୂପେ ଅଭିଷିକ୍ତ ହେଲେ । କିତ୍ତୁର ରାଜବଂଶର 12ଜଣ ଶାସକଙ୍କ ମଧ୍ୟରେ ତାଙ୍କୁ ସର୍ବାଧିକ ପ୍ରସିଦ୍ଧି ମିଳିଲା । ଏହ ଜୀବନୀର ନାୟିକା ଚେନମ୍ମା ତାଙ୍କର ଦ୍ୱିତୀୟା ପତ୍ନୀ ଥିଲେ । ଇଂରେଜମାନଙ୍କ ବିରୁଦ୍ଧରେ ଯେଉଁ ବୀରତାପୂର୍ଣ୍ଣ ଲଢ଼େଇ ଆରମ୍ଭ ହୋଇଥିଲା ଏବଂ ସେଥିରେ କିତ୍ତୁରର ରାଣି ଚେନମ୍ମା ଯେଉଁ ଭୂମିକା ନିର୍ବାହ କରିଥିଲେ, ତାହାକୁ ବୁଝିବା ତଥା ତାହାର ମୂଲ୍ୟାଙ୍କନ କରିବା ନିମନ୍ତେ 1816ରେ ମଲ୍ଲସର୍ଜାଙ୍କ ମୃତ୍ୟୁକାଳ ପର୍ଯ୍ୟନ୍ତ ତାଙ୍କ ଶାସନର ପୂର୍ବ ପୃଷ୍ଠଭୂମି ଏବଂ ଇତିହାସର ଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ । ସଲ୍ଲସର୍ଜାଙ୍କ ମୃତ୍ୟୁପରେ ରାଣୀ ଚେନମ୍ମା କିତ୍ତୁର୍ର ଶାସନଭାର ଗ୍ରହଣ କରିଥିଲେ ।

## ମଲ୍ଲସର୍ଜା

ମଲ୍ଲସର୍ଜା 1782 ଠାରୁ 1816 ପର୍ଯ୍ୟନ୍ତ କିତ୍ତୁର୍ ରଜ୍ୟ ଉପରେ ଶାସନ କରିଥିଲେ । ନିଃସନ୍ଦେହ ରୂପେ ଏହି ସମୟ ପ୍ରତି ଦିଗରୁ ଏକ ସ୍ୱର୍ଣ୍ଣଯୁଗ ଥିଲା, ଯାହାକି ଇତିହାସରୁ ଏବଂ ତାଙ୍କ ସମ୍ମାନରେ ରଚିତ କବିତା ତଥା ଗୀତମାନଙ୍କରୁ ଜଣାପଡ଼େ । ଏହା ସେହି ଯୁଗ ଥିଲା, ଯେଉଁ ସମୟରେ ଇଂରେଜ, ଫ୍ରେଞ୍ଚ ଓ ପର୍ତ୍ତୁଗୀଜମାନଙ୍କ ପରି ବିଦେଶୀ ଶକ୍ତିମାନେ ଭାରତୀୟ ଅଞ୍ଚଳ ଉପରେ ନିଜର ରାଜନୈତିକ ପ୍ରଭୁତ୍ୱ ସ୍ଥାପନ କରିବା ଏବଂ ଯାହାକିଛି ଅଞ୍ଚଳ ହାତକୁ ଆସିଲା, ତହାକୁ ଆତ୍ମସାତ୍ କରିବା ନିମନ୍ତେ ପରସ୍ପର ମଧ୍ୟରେ ସଂଘର୍ଷ କରୁଥିଲେ । ସମଗ୍ର ଦେଶ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ହୋଇ ଅଶାନ୍ତି ଓ ଈର୍ଷା ପରିପୂର୍ଣ୍ଣ ଥିଲା । ଏହି ରାଜ୍ୟଗୁଡ଼ିକ ବଡ଼ ବଡ଼ ବିଦେଶୀ ଶକ୍ତିମାନଙ୍କ ହାତରେ ଖେଳଣା ସଦୃଶ ଥିଲେ । ରାଜନୈତିକ ଷଡ଼ଯନ୍ତ୍ର ଶୀର୍ଷ ସ୍ଥାନରେ ପହଞ୍ଚିଥିଲା । ଭାରତର ଦକ୍ଷିଣ ଭାଗରେ ଶକ୍ତିଶାଳୀ ଶାସକ ମହୀଶୂରର ହାଇଦର ଅଲ୍ଲୀ ଓ ତାଙ୍କ ପରେ ଟିପୁ ସୁଲତାନ, ମହାରାଷ୍ଟ୍ରର ପେଶୱା, ବୀଜାପୁରର ଆଦିଲ୍

ସାହ ଓ ହାଇଦ୍ରାବାଦର ନିଜାମ ଥିଲେ । ଅନ୍ୟ ଅନେକ ଛୋଟ ଛୋଟ ସାମନ୍ତ, ସେନାଧ୍ୟକ୍ଷ ଓ ମୁଖିଆମାନଙ୍କର ଉଲ୍ଲେଖ କରିବା ଆବଶ୍ୟକ ନାହିଁ, ଯେଉଁମାନେ ସମସ୍ତେ ନିଜ ନିଜର ସ୍ୱାର୍ଥ ନିମନ୍ତେ ପରସ୍ପର ଲଢୁଥିଲେ ଏବଂ ସମଗ୍ର ଦେଶର ଭବିଷ୍ୟତ ସମ୍ପର୍କରେ ଯେଉଁମାନଙ୍କର କୌଣସି ଚିନ୍ତା ନଥିଲା । ଏପରି ଏକ ଉଦ୍‌ବେଗଜନକ ସମୟରେ ମଲ୍ଲସର୍ଜା ଗାଦିରେ ବସିଲେ ।

1785 ମସିହାରେ ଟିପୁ ସୁଲତାନ୍ କିତ୍ତୁର, ଧାରୱାଡ଼ ଜିଲ୍ଲାର ନରଗୁଣ୍ଡ ଓ ରାମଦୁର୍ଗ ଉପରେ ବଳପୂର୍ବକ କବ୍ଜା କରିନେଲେ ଓ କିତ୍ତୁରରେ ମହୀଶୂରର ଏକ ବିରାଟ ସୈନ୍ୟବାହିନୀ ମୁତୟନ କରିଦେଲେ । ମରାଠାମାନେ ଟିପୁଙ୍କ ବିରୁଦ୍ଧରେ ନିଜାମଙ୍କ ସହିତ ଦୂରଭିସନ୍ଧିର କୂଟ ରଚନା କଲେ । ଯେଉଁ ସମୟରେ ଜାଗୀରଦାର୍‌ମାନଙ୍କର ମୁଖ୍ୟ ସୈନ୍ୟବାହିନୀ ବୀଜାପୁରରେ ବାଦାମି ଦିଗକୁ ଓ ତାପରେ ଧାରୱାଡ଼ ଦିଗକୁ ଅଗ୍ରସର ହେଉଥିଲେ, ଟୁକାଦୀ ହୋଲ୍‌କର, ଗଣେଶ ପ୍ରସାଦ ବହରେ ଇତ୍ୟାଦି କିତ୍ତୁର ନିକଟରେ ବୁରହାନୁଦ୍ଦୀନଙ୍କ ନେତୃତ୍ୱରେ ଟିପୁଙ୍କ ସୈନ୍ୟଦଳ ଉପରେ ଆକ୍ରମଣ କରିବା ନିମନ୍ତେ ତଥା ସେମାନଙ୍କୁ ସେଇ ଜିଲ୍ଲା ବାହାରକୁ ତଡ଼ିଦେବାପାଇଁ 25000 ଘୋଡ଼ା ସମେତ ପ୍ରସ୍ତୁତ ରହିଲେ । ହୋଲ୍‌କରଙ୍କ ସୈନ୍ୟଦଳ କିଲ୍ଲା ବ୍ୟତୀତ କିତ୍ତୁରର ପ୍ରତ୍ୟେକ କୋଣରୁ ଟିପୁଙ୍କ ସୈନ୍ୟମାନଙ୍କୁ ତଡ଼ିବାରେ ସଫଳ ହେଲେ । କିଲ୍ଲା ଉପରେ ଏକମାସରୁ ଉର୍ଦ୍ଧ୍ୱକାଳ ଗୁଳିଗୋଳା ବିନିମୟ ଚାଲିଲା କିନ୍ତୁ, ସେମାନଙ୍କୁ କୌଣସି ସଫଳତା ମିଳିଲା ନାହିଁ । ଯଦିଓ ଯୁଦ୍ଧରେ ଅଧିକ ଲାଭ ଟିପୁଙ୍କୁ ମିଳିଥିଲା, ତଥାପି ଅପ୍ରେଲ 1787 ମସିହାରେ ଇଂରେଜମାନଙ୍କ ଆକ୍ରମଣ ଭୟରେ ସେ କିତ୍ତୁର ଓ ଅନ୍ୟ ଅଞ୍ଚଳ ମରାଠାମାନଙ୍କୁ ଫେରାଇଦେଲେ ।

1787 ମସିହା ଯାଏଁ ସମାପ୍ତ ହୋଇଥିବା ତିନିବର୍ଷରେ, ଯେତେବେଳେ କିତ୍ତୁର ଟିପୁଙ୍କ ଅଧୀନରେ ଥିଲା, ତାଙ୍କର ଜଣେକ ସେନାଧ୍ୟକ୍ଷ ବଦରୁଲ ଜମାନ ଖାଁ, ଦେସାଇଙ୍କ ସମ୍ପତ୍ତି ଓ ଜାଗୀର ଭୂମିର ପରିଚାଳନା ନିଜ ହାତକୁ ନେଇଗଲେ, ତାଙ୍କର ସମସ୍ତ ଶକ୍ତି ଛିନ୍ନ କଲେ ଏବଂ ତାଙ୍କର ଜୀବନ-ନିର୍ବାହ ନିମନ୍ତେ ଧନରାଶି ସ୍ଥିର କରିଦେଲେ । ପରେ 1792 ଫେବୃୟାରୀରେ ହୋଇଥିବା ଶ୍ରୀରଙ୍ଗପତ୍ତନ ସନ୍ଧି ଅନୁଯାୟୀ, ମରାଠାମାନଙ୍କର ସାମ୍ରାଜ୍ୟର ସୀମାରେଖା ବୃଦ୍ଧିପାଇ ତୁଙ୍ଗଭଦ୍ରା ଓ ପାରସଗଡ଼ ପର୍ଯ୍ୟନ୍ତ ହେଲା, ଏବଂ କିତ୍ତୁର ଦେସାଇଙ୍କର ଭୂ-ସମ୍ପତ୍ତି, ଯାହାକୁ ଟିପୁ ନେଇଯାଇଥିଲେ, ପୁନଶ୍ଚ ମରାଠାମାନଙ୍କର ଅଧୀନସ୍ଥ ହୋଇଗଲା । ଏହି ଜିଲ୍ଲା ପରଶୁରାମ ଭାଉଙ୍କୁ ଦେଇ ଦିଆଗଲା, ଯାହାଙ୍କୁ ଗତ ଯୁଦ୍ଧରେ ପଟ୍ଟବର୍ଦ୍ଧନଙ୍କୁ ଦିଆଯାଇଥିବା ସେନା ଅନୁଦାନ ବା 'ସର୍ ଅଞ୍ଜାମ୍' ଠାରୁ ଅଧିକ ସେନା ପ୍ରସ୍ତୁତ କରିବା ପାଇଁ ବାଧ୍ୟ କରାଯାଇଥିଲା । ସେ ଜଣେ 'ମାମଲାତଦାର୍'ଙ୍କୁ କିତ୍ତୁର୍‌ର କାର୍ଯ୍ୟନିର୍ବାହୀ ଶାସକ କରି ଦେସାଇଙ୍କ ଅଧୀନରେ ରଖିଲେ ।

1800 ମସିହା ଜୁନ୍‌ମାସ ଶେଷ ଭାଗରେ ଜଣେ ମରାଠା ଚୋରାବଜାରୀ ଧୋନ୍ଦୁ ବାଘ କିତ୍ତୁର୍ ରାଜ୍ୟକୁ ଆସିଗଲା । 30 ଜୁନ୍ 1800 ମସିହାରେ, ସେ ମରାଠା ଜେନେରାଲ ଧୋନ୍ଦୁପନ୍ତ ଗୋଖଲେଙ୍କ ସାମ୍ନାରେ କିତ୍ତୁର ନିକଟରେ ଆସିଗଲା ଏବଂ ନିକଟସ୍ଥ ରକ୍ଷାକାରୀ ଦଳ ଉପରେ ଆକ୍ରମଣ କରି ସମ୍ପୂର୍ଣ୍ଣ ସେନାକୁ ଲଢ଼ିବା ନିମନ୍ତେ ବାଧ୍ୟ କରିଦେଲା । ଲଢ଼େଇରେ ଗୋଖଲେ ମୃତ୍ୟୁବରଣ କଲେ ଏବଂ ଧୋନ୍ଦୁ ବାଘ 1791ରେ ପରାଜୟ ପରେ କରିଥିବା ପ୍ରତିଜ୍ଞା ଅନୁଯାୟୀ ଗୋଖଲେଙ୍କ ହୃଦୟର ରକ୍ତରେ ନିଜର ନିଶ ରଙ୍ଗୀନ କଲା । ଧୋନ୍ଦୁ ସେଯାଏଁ କିତ୍ତୁରରେ ଥିଲା, ଯେପର୍ଯ୍ୟନ୍ତ ଜେନେରାଲ ୱେଲସ୍‌ଲି ଧାରୱାଡ଼ରେ ପହଞ୍ଚି ତାକୁ ତଡ଼ି ଦେଇନଥିଲେ । 30 ଜୁଲାଇ 1800 ମସିହାରେ କିତ୍ତୁର୍‌ର 25 ମାଇଲ୍ ଉତ୍ତର-ପୂର୍ବ ସ୍ଥିତ ମନୋଲି ଠାରେ ଧୋନ୍ଦୁର ସେନାବାହିନୀର ଏକ ଅଂଶକୁ ଧ୍ୱସ୍ତ କରିଦିଆଗଲା, ଏବଂ ସେ ଭୟଭୀତ

ହୋଇ କିତ୍ତୁର ଦିଗରେ ପଳାଇଯାଇ ସେଠାରୁ ମଲପ୍ରଭା ନଦୀର ସ୍ରୋତଦେଇ ପାଖାପାଖି ବନାଞ୍ଚଳ ମଧ୍ୟରେ ଖସିଗଲା । ତା'ର ଅନ୍ୱେଷଣରେ ଜେନେରାଲ ୱେଲେସ୍‌ଲି ଅଗଷ୍ଟ 5 ତାରିଖରେ କିତ୍ତୁର ଗଲେ ଓ ତାଙ୍କୁ ସାତଦିନ ରହିବାକୁ ପଡ଼ିଲା, କାରଣ ମଲପ୍ରଭା ନଦୀର ବନ୍ୟା ଆସିଥିବାରୁ ନୌକାରେ ଯିବା ସମ୍ଭବ ହୋଇ ପାରିନଥିଲା ।

ଇଂରେଜ ଓ ପେଶୱାମାନଙ୍କ ମଧ୍ୟରେ 1972ରେ ଯେତେବେଳେ ଶ୍ରୀରଙ୍ଗପଟ୍ଟନ ସନ୍ଧି ଅନୁଯାୟୀ ପେଶୱାମାନଙ୍କ ଦ୍ୱାରା ବ୍ରିଟିଶ୍ ପ୍ରଭୁତ୍ୱ ସ୍ୱୀକାର କରି ଓ ସେମାନଙ୍କର ତୋଷାମଦ କରି ଯେଉଁ ସନ୍ଧି ହସ୍ତାକ୍ଷର କରାଯାଇଥିଲା, ତାହା ଅନୁଯାୟୀ ପ୍ରାୟ 25ବର୍ଷ ମୈତ୍ରୀପୂର୍ଣ୍ଣ ସମ୍ପର୍କ ରହିଲା । କିତ୍ତୁରର ଦେସାଇଙ୍କୁ ମଧ୍ୟ ପେଶୱାଙ୍କ ଅନୁରୂପ ଆଚରଣ କରିବାକୁ ପଡ଼ିଥିଲା ଓ ଇଂରେଜମାନଙ୍କ ପ୍ରତି ବିଶ୍ୱସ୍ତତା ଏବଂ ସମର୍ଥନ ପ୍ରଦର୍ଶନ କରିବାକୁ ପଡ଼ିଥିଲା । 1802 ମସିହାରେ, ଯେତେବେଳେ ଜେନେରାଲ ୱେଲେସ୍‌ଲି ବାଜୀରାଓ ପେଶୱାଙ୍କୁ ପୁନଃସ୍ଥାପିତ କରିବା ନିମନ୍ତେ ଶ୍ରୀରଙ୍ଗପଟ୍ଟନ ଠାରୁ ପୁଣେ ଯାଇଥିଲେ, ସେତେବେଳେ ସେହି ଅଞ୍ଚଳର ଅନେକ ଶାସକ ବ୍ରିଟିଶ ସୈନ୍ୟବାହିନୀର ସହାୟତା କରିଥିଲେ ଏବଂ ଅନ୍ୟମାନଙ୍କ ପରି କିତ୍ତୁର ଦେସାଇ ମଧ୍ୟ ଇଂରେଜଙ୍କ ପକ୍ଷରୁ ଲଢ଼ିବା ନିମନ୍ତେ 100 ଘୋଡ଼ା ଓ 100 ପଦାତିକ ସୈନ୍ୟ ଦେଇଥିଲେ । ମଲ୍ଲସର୍ଜା ସଙ୍ଗୋଲିଠାରେ ଏକ ଛୋଟ କିଲ୍ଲା ଦେବାପାଇଁ ମଧ୍ୟ ସମ୍ମତି ଦେଲେ, ଯଦ୍ଦ୍ୱାରା ସେହି ସ୍ଥାନ ଯୋଗାଯୋଗ ବ୍ୟବସ୍ଥା ଜାରି ରଖିବା ନିମନ୍ତେ ଏକ କେନ୍ଦ୍ର ହିସାବରେ କାମରେ ଲାଗିବ ଓ ଚିକିତ୍ସାଳୟ ତଥା ସେଠାରେ ଥିବା ନୌକା ଗୁଡ଼ିକର ରକ୍ଷା କରାଯାଇପାରିବ । ଯଦିଓ କିତ୍ତୁର ସୈନ୍ୟଦଳ ବହୁତ ନିଷ୍ଠା ସହକାରେ କାର୍ଯ୍ୟ କରିଥିଲେ, ତାହା ଥିଲା ନିରର୍ଥକ । ପେଶୱାଙ୍କ ପୁନଃସ୍ଥାପନ ନିମନ୍ତେ ଯାଇଥିବା ସେନାରେ ସାମିଲ୍ ହୋଇ କିତ୍ତୁର ଦେସାଇ ଯେଉଁ ବିଶ୍ୱସ୍ତତା ଦେଖାଇଥିଲେ, ତାହାର ପୁରସ୍କାର ସ୍ୱରୂପ ସେ ନିଜର ସମ୍ପତ୍ତିର ନିର୍ବିଘ୍ନ ଭାବେ ଉପଯୋଗ କରିବାର କ୍ଷମତା ପାଇଲେ । କିତ୍ତୁର ଓ ଆଖପାଖ ଅଞ୍ଚଳକୁ ନେଇ ସେ ସମୟରେ ଥିବା ତାଙ୍କର ରାଜ୍ୟର ବାର୍ଷିକ ଆୟ ଥିଲା 4 ଲକ୍ଷ ଟଙ୍କା, ଏବଂ ତାଙ୍କ ପାଖରେ 1000 ଘୋଡ଼ା 4000 ପଦାତିକ ସୈନ୍ୟ ଥିଲେ । ସେ ପେଶୱାଙ୍କୁ ବାର୍ଷିକ ପ୍ରାୟ 70,000ଟଙ୍କ ଭେଟି ସ୍ୱରୂପ ଦେଉଥିଲେ । ସବୁ କାମ ଠିକ୍ ଭାବରେ ଚାଲିଥିଲା । କିତ୍ତୁର ରାଜ୍ୟର ଆଭ୍ୟନ୍ତରୀଣ ବିଷୟ ଓ ପ୍ରଶାସନ ବ୍ୟାପାରରେ ରାଜାଙ୍କର ପୂର୍ଣ୍ଣ ସ୍ୱାଧିନତା ଥିଲା ।

କିତ୍ତୁରର ସମୃଦ୍ଧି ଓ ଶକ୍ତିରେ ଭୟଭୀତ ହୋଇ 1804 ମସିହାରେ ପେଶୱା ୱେଲେସ୍‌ଲିଙ୍କ ସମ୍ମୁଖରେ ପ୍ରସ୍ତାବ ରଖିଲେ ଯେ, କିତ୍ତୁର୍‌ର ରାଜାଙ୍କୁ ଗାଦୀରୁ ଉଚ୍ଛେଦ କରାଯାଉ ଏବଂ ତାଙ୍କର ସମ୍ପତ୍ତି ନେଇ ନିଆଯାଉ । ୱେଲେସ୍‌ଲି ତାଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ । ପେଶୱାଙ୍କ ପ୍ରସ୍ତାବକୁ ଗ୍ରହଣ ନକରି ଯେଉଁ କାରଣ ୱେଲେସ୍‌ଲି ଦର୍ଶାଇଥିଲେ, ତାହା ମଇ 6 ତାରିଖ, 1804ରେ ସେ ଲେଖିଥିବା ଏକ ପତ୍ରରେ ତାଙ୍କ ନିଜ ଭାଷାରେ ବର୍ଣ୍ଣିତ ହୋଇଛି । ଏହି ପତ୍ରରୁ କିତ୍ତୁରର ଜନସାଧାରଣଙ୍କ ପ୍ରକୃତି ଓ ଆଚରଣ ଉପରେ ଯଥେଷ୍ଟ ଆଲୋକପାତ ହୁଏ :

> ''...... ଏକ ପ୍ରଚଣ୍ଡ ଆବଶ୍ୟକତାର ସ୍ଥିତି ବ୍ୟତୀତ, ଯେଉଁଥିରେ ସମସ୍ତ ସେନାକୁ ବ୍ୟବହାର କରାଯିବ, ତାହାଙ୍କ (କିତ୍ତୁର ରାଜା) ବିରୋଧ କରିବା ଉଚିତ୍ ନୁହେଁ, ଏହା ମୁଁ ଜଣାଇବାକୁ ଚାହୁଁଛି । ବ୍ୟାନଦ, କୁର୍ଗ, ବଲ୍ଲମ, ବେଦ୍ନୁର ଓ ସୁଣ୍ଡା ପରି କିତ୍ତୁର ମଧ୍ୟ ପଶ୍ଚିମଘାଟ ଶ୍ରେଣୀଠାରୁ ପୂର୍ବ ପର୍ଯ୍ୟନ୍ତ ଏବଂ ତାହାର ଏକଦମ୍ ସମୀପରେ ଅବସ୍ଥିତ । ସେଗୁଡ଼ିକ ପରି ଏହା ମଧ୍ୟ ସୈନ୍ୟବାହିନୀ ନିମନ୍ତେ ଦୁର୍ଗମ । ଏହାର ଅଧିବାସୀମାନେ ମଧ୍ୟ ସେହିପରି ମୂଳବଂଶର ଅଟନ୍ତି

ଏବଂ ଏହା ସହିତ ଯୁଦ୍ଧକଲେ ସମ୍ଭବତଃ ସେହିପରି କ୍ଷତି ଓ ବିନାଶ ହେବ । ଏହି ରାଜ୍ୟ କମ୍ପାନୀ ସୀମାରେଖାର ଅସୁରକ୍ଷିତ ଅଞ୍ଚଳରେ ଅବସ୍ଥିତ । ହୁଲି ହଲ୍ଲୀ କିଲ୍ଲାରେ ଏବେ ଗ୍ୟାରିସନ୍ ନାହାନ୍ତି, କାରଣ ମୁଁ ଗୋଆରେ ସୈନ୍ୟ ଆବଶ୍ୟକତା ପୂରଣ କରିବା ପାଇଁ ସେଠାରୁ ଉକ୍ତ ସୈନ୍ୟଦଳଙ୍କୁ ଫେରସ୍ତ ଆଣିବାକୁ ବାଧ ହୋଇଥିଲି । ଏହି କିଲ୍ଲା ଉପରେ ଅଧିକାର ରଖି କିତ୍ତୁର ରାଜାଙ୍କୁ ସୁରକ୍ଷିତ ଯୋଗାଯୋଗ ବ୍ୟବସ୍ଥା ସହିତ କନାରା ତଥା ବିଦନୁର ପ୍ରବେଶ କରିବା ସହଜ ହେବ । ଏଇ ଦୁଇଟି ଅଞ୍ଚଳ ସମ୍ପୂର୍ଣ୍ଣଭାବେ ଅସୁରକ୍ଷିତ ଏବଂ ପୂର୍ବବର୍ତ୍ତୀ ଅଟେ, ଯାହାର ସାଧନ ଉପରେ ବମ୍ବେଇ ଓ ପୁନାର ସେନାବାହିନୀ ଚଳାଚଳ ପାଇଁ ସମ୍ପୂର୍ଣ୍ଣ ନିର୍ଭର କରନ୍ତି । ଏହି ତଥ୍ୟସମୂହର ଭିତ୍ତି ଶକ୍ତ ହେଉ ବା ନହେଉ, ଏହା ଅଜ୍ଞାତ ଏବଂ କିତ୍ତୁରର ରାଜାଙ୍କୁ ତାଙ୍କ ରାଜ୍ୟ ଶାସନରୁ ବଞ୍ଚିତ ନକରିବାର ସ୍ପଷ୍ଟ ସଙ୍କେତ ଦିଏ, ଯେ ପର୍ଯ୍ୟନ୍ତ ଆମେ ଲକ୍ଷ୍ୟ ସୁନିଶ୍ଚିତ କରିବା ଓ ସେ ଆମକୁ କ୍ଷୁବ୍ଧ କରିବାର କୌଶଳରୁ ଆମେ ନିଜକୁ ମୁକ୍ତ କରିବାର ପର୍ଯ୍ୟାପ୍ତ ସାଧନ ନପାଇଛେ ।''

ଇତି ମଧ୍ୟରେ 1809 ମସିହାରେ ମଲ୍ଲସର୍ଜା ଏକ ବୁଝାମଣା କଲେ, ଯଦ୍ୱାରା ସେ ପେଶୱାଙ୍କୁ 1,75.000 ଟଙ୍କାର ବାର୍ଷିକ ଭେଟି ଦେବାପାଇଁ ଅଙ୍ଗୀକାର କଲେ । ଏହି ବୁଝାମଣା ଅନୁଯାୟୀ ଦେସାଇ ନିଜର ସମ୍ପତ୍ତି ରଖିପାରିବେ ଓ ସେନା ଆଦି ରଖିବା ନିମନ୍ତେ କିଛି ଅନୁଦାନ ମଧ୍ୟ ପାଇପାରିବେ । ତାଙ୍କୁ 'ପ୍ରତାପ ରାଓ' ଉପାଧିରେ ମଧ୍ୟ ବିଭୂଷିତ କରାଗଲା । ଏହି ଉପାଧି ପ୍ରାପ୍ତିର ଉତ୍ସବ ପାଳନ କରିବା ଅବସରରେ ଦେସାଇ ନନ୍ଦଗଡ଼ ନିକଟରେ ଏକ କିଲ୍ଲା ତିଆରି କଲେ, ଯାହା 'ପ୍ରତାପ ଗଡ଼' ନାମରେ ପ୍ରସିଦ୍ଧ ।

କିତ୍ତୁର ଦେସାଇଙ୍କ ଦ୍ୱାରା ପେଶୱାଙ୍କ ସହାୟତା ଓ ନିଷ୍ଠା ସତ୍ତ୍ୱେ ମଧ୍ୟ ପେଶୱା କିତ୍ତୁର ରାଜବଂଶ ପ୍ରତି କୌଣସି ସହାନୁଭୂତି ରଖିନଥିଲେ । ମଲ୍ଲସର୍ଜାଙ୍କ ପରି ରାଜାଙ୍କୁ ଠିକ୍ ବ୍ୟବହାର କରାଗଲା ନାହିଁ । ପେଶୱା ତାଙ୍କୁ ନିର୍ମମତା ପୂର୍ବକ ଗିରଫ କରି ଦୀର୍ଘକାଳ ପର୍ଯ୍ୟନ୍ତ ବନ୍ଦୀ କରି ରଖିଲେ । ଜେଲରେ ସେ ଅସୁସ୍ଥ ହୋଇ ପଡ଼ିଲେ ଓ ତାଙ୍କ ସ୍ୱାସ୍ଥ୍ୟ ଏତେ ଭାଙ୍ଗିପଡ଼ିଲା ଯେ, ସେ ପୁଣେରୁ ଫେରିବା ପରେ ହିଁ ମୃତ୍ୟୁବରଣ କଲେ । ତାଙ୍କ ଇଚ୍ଛା ଅନୁସାରେ ଶିବଲିଙ୍ଗରୁଦ୍ର ସର୍ଜାଙ୍କୁ ପୂର୍ବରୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରାଯାଇଥିଲା, ଏବଂ ତାଙ୍କୁ 1816ରେ ମଲ୍ଲସର୍ଜାଙ୍କ ଉତ୍ତରାଧିକାରୀ ରୂପେ ଅଭିଷିକ୍ତ କରାଗଲା । ଏହି ପ୍ରକାରେ କିତ୍ତୁର ରାଜବଂଶର ଏକ ଅତ୍ୟନ୍ତ ଗୌରବଶାଳୀ ଶାସନର ଅନ୍ତ ହେଲା । ମଲ୍ଲସର୍ଜାଙ୍କ କୃତିତ୍ୱଗୁଡ଼ିକ ସମ୍ବନ୍ଧରେ ପରବର୍ତ୍ତୀ ଅଧ୍ୟାୟରେ ସଂକ୍ଷେପରେ ବର୍ଣ୍ଣନା କରାଯିବ ।

## ସହାୟକ ଗ୍ରନ୍ଥ

1 ଗେଜେଟିୟର ଅଫ୍ ବମ୍ବେ ପ୍ରେସିଡ଼େନ୍‌ସୀ, ଭାଗ xxi, ବେଲଗାଓଁ, ପୃ : 484 ।

2 'କିତ୍ତୁର କଲଗା ଏବଂ ଫାର୍‌ସୀ ଡ଼କ୍ୟୁମେଣ୍ଟସ୍', ସ୍ୱର୍ଗତ ଶ୍ରୀ ଭାବେପ୍ପା ଶୃଗୀଙ୍କ ଦ୍ୱାରା ସମ୍ପାଦିତ ।

# ମଲ୍ଲସର୍ଜାଙ୍କ ଶାସନକାଳ

ମଲ୍ଲସର୍ଜାଙ୍କ ଶାସନକାଳ କିତ୍ତୁରର ସମସ୍ତ ଶାସକମାନଙ୍କ ମଧ୍ୟରେ ସବୁଠାରୁ ଅଧିକ ଘଟଣାବହୁଳ ଓ ଗୌରବଶାଳୀ ଥିଲା । ଏହି ସମୟ କିତ୍ତୁରର ଇତିହାସରେ ସର୍ବାଧିକ କଠିନ ମଧ୍ୟ ଥିଲା । ସେ କିତ୍ତୁର ରାଜ୍ୟ ଉପରେ ପାଖାପାଖି 34 ବର୍ଷ ଶାସନ କରିଥିଲେ । କିତ୍ତୁରର ସମସ୍ତ ଶାସନ ମୁଖ୍ୟଙ୍କ ମଧ୍ୟରେ ସେ ସର୍ବାଧିକ ପ୍ରସିଦ୍ଧ ଓ ଖ୍ୟାତି ମଧ୍ୟ ପାଉଥିଲେ ।

ସେ ସମୟରେ କିତ୍ତୁର ରାଜ୍ୟ ମଧ୍ୟରେ ସମ୍ପଗାଓଁ, ବିଦୀ, କିତ୍ତୁର, ଖାନାପୁର, କଲଘଟଗୀ, ମନୋଲୀ ଓ ନରଗୁଣ୍ଡ ଇତ୍ୟାଦି ଥିଲା, ଯେଉଁଗୁଡ଼ିକ ଏବେ ଧାରୱାଡ଼, ବେଲଗାଓଁ ଓ ଉତ୍ତର କନରା ଜିଲ୍ଲାରେ ଅବସ୍ଥିତ । ଏଥିରେ ସର୍ବମୋଟ 286 ଟି ଗ୍ରାମ ଓ 72 ଟି ବସ୍ତି ଥିଲା, ଯେଉଁଗୁଡ଼ିକ 'କାର୍ଯ୍ୟାତ୍' ନାମକ ପ୍ରଶାସନିକ ଏକକ ଅଧିନରେ ଅବସ୍ଥିତ ହୋଇଥିଲା । ଏହିପରି 14ଟି 'କାର୍ଯ୍ୟାତ' ଥିଲା ଏବଂ ରାଜ୍ୟର ପ୍ରଶାସନ ଉତ୍ତମ ଥିଲା । ରାଜ୍ୟର ପଶ୍ଚିମ ଭାଗ ଅଧିକାଂଶତଃ ଘନ ଜଙ୍ଗଲ ଅଧ୍ୟୁଷିତ ପାହାଡ଼ିଆ ଅଞ୍ଚଳ ଥିଲା । କେତେକ ପାହାଡ଼ିଆ ଅଞ୍ଚଳ, ବିଶେଷ କରି ଖାନାପୁରର ଉତ୍ତର ଦିଗରେ, ବହୁତ ଅସମାନ ଥିଲା । କିତ୍ତୁରର ଉତ୍ତର ସୀମା ବେଲଗାଓଁ ଠାରୁ 20 କି.ମି. ଦକ୍ଷିଣ ପର୍ଯ୍ୟନ୍ତ ବ୍ୟାପୀଥିଲା ଏବଂ ଦକ୍ଷିଣ ସୀମା ଧାରୱାଡ଼ ଠାରୁ ପ୍ରାୟ 35 କି.ମି. ଉତ୍ତରାଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ପଶ୍ଚିମ ଦିଗରେ ଏହାର ବିସ୍ତାର ତାବରପଟୀ ଯାଏଁ ଥିଲା ଏବଂ ଏଥିରେ ଦେସନୁର, ସୁପା, ଦାଣ୍ଡେଲୀ ଓ ମଲନାଡ଼ ସମେତ ଉଲବୀ ପରି ମହତ୍ୱପୂର୍ଣ୍ଣ ଜନବସତି ମଧ୍ୟ ଅନ୍ତର୍ଗତ ଥିଲା । ପୂର୍ବ ଦିଗରେ, ଏହା ଯବକୁଣ୍ଡି ଯାଏଁ ଥିଲା ଓ ଏହା ମଧ୍ୟରେ ବୈଲହୋଙ୍ଗର, ମୁରଗୌଡ଼, ଦୋଡ଼ବାଡ଼, ତାଡ଼କୋଡ଼, ଗରଗ ଆଦି ଅନ୍ତର୍ଗତ ଥିଲା । ଏହି ପରିକ୍ଷେତ୍ରଟି ସମତଳ ଅଞ୍ଚଳରେ ଅବସ୍ଥିତ ଥିଲା । ଏଇ ସମସ୍ତ ଭୂ-ଭାଗରେ ବର୍ଷା ଋତୁରେ ଭୀଷଣ ବର୍ଷା ହେଉଥିଲା ଏବଂ ଗ୍ରୀଷ୍ମଋତୁରେ ସାଧାରଣ ଗରମ ଅନୁଭୂତ ହେଉଥିଲା ।

ସେ ସମୟରେ ଯୋଗାଯୋଗ ବ୍ୟବସ୍ଥାର ଅଭାବ ଥିଲା । ବର୍ଷାଋତୁ ସମୟରେ ଝରଣା ଓ ନଦୀରେ ବନ୍ୟାହେତୁ ଗ୍ରାମାଞ୍ଚଳ ସହ ସମ୍ପର୍କ ଛିନ୍ନ ହୋଇଯାଉଥିଲା । ଭୀଷଣ ବର୍ଷା ପରେ ମଲପ୍ରଭା ନଦୀରେ ପ୍ରାୟତଃ ବନ୍ୟା ଆସୁଥିଲା ଏବଂ ସେ ସମୟରେ ତାହାକୁ ପାରି ହେବା ଥିଲା କାଠିକର ପାଠ । କିତ୍ତୁର ମଧ୍ୟସ୍ଥ ସଡ଼କ ଉତ୍ତରରେ ପୁଣେ ଦିଗକୁ ଯାଇଥିଲା ଓ ଗୋଟିଏ ଉତ୍ତର-ପୂର୍ବରେ ଧାରୱାଡ଼ ଅଭିମୁଖେ ଯାଇଥିଲା ତଥା ଗୋଟିଏ ସଡ଼କ ପଶ୍ଚିମ ଦିଗରେ ଗୋଆ ଯାଇଥିଲା । ଯୋଗାଯୋଗ ବ୍ୟବସ୍ଥାର ଅଭାବ ସତ୍ତ୍ୱେ କିତ୍ତୁରରେ ବେପାର-ବଣିଜର ବିକାଶ ହୋଇଥିଲା । ପଶ୍ଚିମଘାଟ ଅଞ୍ଚଳରୁ ନିମ୍ନାଞ୍ଚଳ ଓ ପଠାର ମଧ୍ୟରେ ସୁ-ସ୍ଥାପିତ ବ୍ୟାପାରିକ ସମ୍ପର୍କ ସାଥିରେ କୃଷିଜାତ ଦ୍ରବ୍ୟକୁ ଭିତ୍ତି କରି ଏହି ଅଞ୍ଚଳ ଏକ ବିରାଟ ବ୍ୟବସାୟ କେନ୍ଦ୍ର ଓ ସମୃଦ୍ଧ ରାଜ୍ୟରେ ପରିଣତ ହୋଇଥିଲା ।

ମଲ୍ଲସର୍ଜାଙ୍କ ଶାସନକାଳରେ ଉଦ୍ୟୋଗ ଓ ବାଣିଜ୍ୟର ବିକାଶ ହୋଇଥିଲା ଓ ଲୋକେ ବେଶ୍ ସୁଖୀ ଥିଲେ । କଳା ଓ ଶିଳ୍ପ ତଥା ଅନ୍ୟ କୁଟୀର ଉଦ୍ୟୋଗକୁ ପ୍ରୋତ୍ସାହନ ମିଳିଥିଲା । ରାଜ୍ୟର ବିଭିନ୍ନ

ଭାଗରେ ସାଢ଼ୀ, ଧୋତି, ଅନ୍ୟାନ୍ୟ ଧରଣର ବସ୍ତ୍ର, ଚୁଡ଼ି ଆଦିର ନିର୍ମାଣ ମଧ୍ୟ ହୋଉଥିଲା । କୃଷି ଉପକରଣ ମଧ୍ୟ ତିଆରି ହେଉଥିଲା । ନନ୍ଦଗଡ଼, ଖାନାପୁର, ବେଲହୋଙ୍ଗେଲ, କିତ୍ତୁର, ସମ୍ପଗାଓଁ ଓ ଦେସନୁର ଆଦି ଥିଲେ ମହତ୍ତ୍ୱପୂର୍ଣ୍ଣ ବ୍ୟବସାୟ କେନ୍ଦ୍ର । ସହ୍ୟାଦ୍ରୀ ପର୍ବତମାଳା (ପଶ୍ଚିମ ଘାଟ) ଠାରୁ ପ୍ରାୟ 65 କି.ମି. ପୂର୍ବରେ ଅବସ୍ଥିତ କିତ୍ତୁରର ବାଣିଜ୍ୟ କ୍ଷେତ୍ରରେ ବିଶାଳ ମହତ୍ତ୍ୱ ଥିଲା । କୋଙ୍କଣ ଅଞ୍ଚଳରେ ନିର୍ମିତ ଓ ଉତ୍ପାଦିତ ସମସ୍ତ ବସ୍ତୁ ଓ ଉତ୍ପାଦନଗୁଡ଼ିକୁ ଅନ୍ୟସ୍ଥାନରେ ପହଞ୍ଚିବା ନିମନ୍ତେ ନନ୍ଦଗଡ଼ ଦେଇ ଯିବାକୁ ପଡୁଥିଲା । ବେଲହୋଙ୍ଗେଲ କାର୍ପାସ ଓ ଲୁଗାର ଏକ ବିରାଟ ଉତ୍ପାଦନ କେନ୍ଦ୍ର ଥିଲା । ସମ୍ପଗାଓଁ କାର୍ପାସ ଓ ବସ୍ତ୍ର ଉତ୍ପାଦନ ତଥା ବିପଣନର ଏକ ବଡ଼ ପେଣ୍ଠସ୍ଥଳୀ ଥିଲା । ଦେସନୁର ମଧ୍ୟ ବସ୍ତ୍ର ଉତ୍ପାଦନର ଏକ କେନ୍ଦ୍ର ଥିଲା ତଥା ତାହାର କୋଙ୍କଣ ଅଞ୍ଚଳ ସହିତ ଘନିଷ୍ଠ ବ୍ୟବସାୟିକ ସମ୍ବନ୍ଧ ଥିଲା । ଏହା ଥିଲା ଏକ ବିକାଶଶୀଳ ରାଜ୍ୟ, ଯେଉଁଠାରେ କୃଷି ଓ ଉଦ୍ୟୋଗ କ୍ଷେତ୍ରରେ ପ୍ରଗତି ସମ୍ଭବ ହୋଇଥିଲା । ରାଜ୍ୟର ବାର୍ଷିକ ରାଜସ୍ୱ ପ୍ରାୟ 3,50,000 ଟଙ୍କା ଥିଲା ଏବଂ ଏହାର ନିଜସ୍ୱ ଟଙ୍କାଶାଳ ଥିଲା ।

ମଲ୍ଲସର୍ଜା ଲଳିତ କଳା, ଅର୍ଥାତ୍ ନାଟକ, ଲୋକଗୀତ, ସାହିତ୍ୟ ଆଦିର ମହାନ୍ ଗୁଣଗ୍ରାହୀ ଥିଲେ । ସେ ଲେଖକ ଓ କବିଙ୍କୁ ପ୍ରୋତ୍ସାହନ ଦେଉଥିଲେ ତଥା ଅନେକ ବିଦ୍ୱାନ ବ୍ୟକ୍ତି ତାଙ୍କ ଦରବାରକୁ ଆସି ପ୍ରଚୁର ଆଦର, ସ୍ଥାନ ଓ ସମ୍ମାନ ପାଉଥିଲେ । କାବ୍ୟ ଓ ସାହିତ୍ୟର ଉନ୍ନତି ହୋଇଥିଲା । ସମୟେ ସମୟେ ବିଖ୍ୟାତ କବିଗଣ ଓ କଳାକାରଗଣ ତାଙ୍କ ଦରବାରରେ ନିଜ କବିତା ପାଠ ଓ କଳା-କୁଶଳତା ପ୍ରଦର୍ଶନ କରୁଥିଲେ । ରାଜାଙ୍କ ଅନୁଗ୍ରହ ପ୍ରାପ୍ତକରିଥିବା କବି ଓ ପଣ୍ଡିତମାନଙ୍କର ନାମ ସମ୍ପର୍କରେ ପ୍ରମାଣ ମଧ୍ୟ ମିଳିଛି । ସେମାନଙ୍କ ମଧ୍ୟରେ ଉଲ୍ଲେଖନୀୟ ଅଟନ୍ତି : ଦର୍ଶନ ଶାସ୍ତ୍ରର ନ୍ୟାୟିକ ବିଚାର ଧାରାର କୋଲ୍‌ସୀ ରଙ୍ଗାଚାର୍ଯ୍ୟ ନାମକ ପଣ୍ଡିତ ଏବଂ ବେଙ୍ଗୀ ଚେନ୍ନବସପ୍ପା, ମୁଲଗୁଣ୍ଡ ଜବଲୀ ଶୈଟର ଚେନ୍ନବସପ୍ପା, କାଶୀରାଜ, ବର ରୁଦ୍ରକବି, ମନି ପୁରାଡ଼ ନୀଲକଣ୍ଠାୟା, ମୁଗୁଣ୍ଡୀ ବାମକ, ଶିବଲିଙ୍ଗ ଶାସ୍ତ୍ରୀ, ଦେବରସିଖୀ ହଲ୍ଲୀ, ରୁଦ୍ରଗୌଡ଼ ଇତ୍ୟାଦି କବିଗଣ । ଏମାନଙ୍କ ସହ ବେଟିଗିରି ଶିବଲିଙ୍ଗ ଶାସ୍ତ୍ରୀ ଓ ଅଣ୍ଣୁତେଶ୍ୱର ମଧ୍ୟ ଅନ୍ତର୍ଗତ, ଯିଏ ମଲେନ୍ଦ୍ର ମନେସୋଲ୍ଲାସ ବା 'ମାଲାତରଙ୍ଗିନୀ' ନାମକ ଚାଟୁକ୍ତିପୂର୍ଣ୍ଣ ଦୀର୍ଘ କାବ୍ୟ ରଚନା କରିଥିଲେ । ଉତ୍ସାହୀ କବିମାନେ କାବ୍ୟରେ ନୂତନ ଶୈଳୀମାନ ପ୍ରୟୋଗ କଲେ ଏବଂ ଏହି କାଳରେ 'ଦୁମ୍‌ଦୁମୀ' ରୂପେ ଜ୍ଞାତ ଏକ ନୂତନ ଧରଣର ଲୋକକାବ୍ୟର ଉଦ୍‌ଭବ ହୋଇଥିଲା । ଏପରି ଅନେକ କବିତା ଆଜି ମଧ୍ୟ ପ୍ରଚଳିତ । ଏଗୁଡ଼ିକ ମଧ୍ୟରୁ ଅଧିକାଂଶ ମଲ୍ଲସର୍ଜାଙ୍କ ସମୟର କବିମାନେ ରଚନା କରିଥିଲେ । 'ଦୁମ୍‌ଦୁମୀ' କନ୍ନଡ଼ ସାହିତ୍ୟକୁ କିତ୍ତୁରର ଦାନ ଅଟେ ।

ଜୀବନର ଭଲ ଭଲ ବସ୍ତୁଗୁଡ଼ିକ ଜାଣିବା ଓ ବ୍ୟବହାର କରିବାରେ ମଲ୍ଲସର୍ଜା ବେଶ୍ ପଟୁ ଥିଲେ । ସେ ସୁନ୍ଦର ବସ୍ତ୍ର ଖୁବ୍ ପସନ୍ଦ କରୁଥିଲେ ଓ ତାଙ୍କ ବସ୍ତ୍ର ଆଲମାରୀରେ ଚମତ୍କାର ବେଶଭୂଷା ଟଙ୍ଗା ହୋଇ ରହୁଥିଲା, ଯେଉଁଗୁଡ଼ିକ ଦେଶର ବିଭିନ୍ନ ଭାଗରୁ ତିଆରି ହୋଇଆସୁଥିଲା । ସେ ଉତ୍ତମ ଭୋଜନ ପ୍ରିୟ ଥିଲେ । ଲୋକମାନଙ୍କୁ ସ୍ୱାଦିଷ୍ଟ ଭୋଜନ ଖୁଆଇବାରେ ମଧ୍ୟ ତାଙ୍କୁ ବେଶ୍ ଆନନ୍ଦ ମିଳୁଥିଲା । ଏଥିମଧ୍ୟରୁ କେତେକ ଥିଲା କିତ୍ତୁରର 'ବିଶେଷ ବ୍ୟଞ୍ଜନ' । ସେ ଗଛପତ୍ର ଓ ଫୁଲ ପ୍ରିୟ ମଧ୍ୟ ଥିଲେ । ଦେବର ସିଗି-ହଲ୍ଲୀ ଗ୍ରାମରେ ତାଙ୍କର ଏକ ଉଦ୍ୟାନ ଥିଲା । ଏହି ପ୍ରକାରେ ସମସ୍ତ ସୂତ୍ରରୁ ଜଣାପଡ଼େ ଯେ ମଲ୍ଲସର୍ଜା ଲଳିତକଳା, ହସ୍ତଶିଳ୍ପ ଓ ସାହିତ୍ୟ, ଦର୍ଶନ ତଥା ଜୀବନର ଅନ୍ୟ ସମସ୍ତ ସୁନ୍ଦର ଦ୍ରବ୍ୟର ମହାନ୍ ଗୁଣଗ୍ରାହୀ ଥିଲେ । ତାଙ୍କ ଶାସନ କାଳରେ ଲୋକେ ସ୍ୱଚ୍ଛଳ ଓ ସୁଖୀ ଜୀବନ ଅତିବାହିତ କରୁଥିଲେ । ସେ ନାଟକ, ନୃତ୍ୟ ଓ ଲୋକଗୀତ ତଥା ଅନ୍ୟ ସାମୁଦାୟିକ ଏବଂ ସାଂସ୍କୃତିକ କାର୍ଯ୍ୟକ୍ରମରେ ସକ୍ରିୟଭାବେ ଭାଗନେବାରେ ଅନେକ ସୁଯୋଗ ଗ୍ରହଣ କରିଛନ୍ତି ।

ମଲ୍ଲସର୍ଜା ବଡ଼ ଭକ୍ତ ଏବଂ ଧାର୍ମିକ ବ୍ୟକ୍ତି ଥିଲେ । ସେ ସମସ୍ତ ଧାର୍ମିକ ସଂସ୍ଥା, ଯଥା ମନ୍ଦିର, ମଠ ଓ ମସ୍‌ଜିଦ୍‌କୁ ସହାୟତା ପ୍ରଦାନ କରିଥିଲେ । କୁହାଯାଏ ଯେ, ତାଙ୍କ ରାଜ୍ୟରେ 1,000 ମଠ ଥିଲା । ବୀରଶୈବ ମଠର ମୁଖ୍ୟ କେନ୍ଦ୍ର ଥିଲା 'କଲ୍‌ମଣ', ଯାହାକୁ ସବିରା 'ସଂସ୍ଥାନ ମଠ' ବୋଲି କୁହାଯାଉଥିଲା । ପୂର୍ବରୁ କୁହାଯାଇଛି ଯେ, ଏହି ମଠର ସ୍ୱାମିଜୀ ଅନେକ ପୁରୁଷ ପର୍ଯ୍ୟନ୍ତ କିତ୍ତୁର ରାଜବଂଶର ଗୁରୁ ଥିଲେ ।

ସ୍ୱାମିଜୀ ଥିଲେ ବିଦ୍ୱାନ୍ । ନିଜର ଗହନ ଅଧ୍ୟୟନ ଓ ଜ୍ଞାନ, ନିଷ୍ଠାଙ୍କ ନୈତିକ ଆଚରଣ ଏବଂ ଏସବୁର ଉର୍ଦ୍ଧ୍ୱରେ ମାନବିକ ସମସ୍ୟାକୁ ସମାଧାନ କରିବାରେ ନିଜର ଆଧ୍ୟାତ୍ମିକ ଓ ବୌଦ୍ଧିକ ସ୍ତର ଭିତ୍ତିରେ ତାଙ୍କୁ ଦରବାରରେ ଏକ ବିଶିଷ୍ଟ ସ୍ଥାନ ଦିଆଯାଇଥିଲା । କଲିମଠର ସ୍ୱାମିଜୀ କିତ୍ତୁର ଶାସକମାନଙ୍କର ବିଶ୍ୱସ୍ତ ପରାମର୍ଶଦାତା ଥିଲେ । ସେମାନେ ଅନେକ ବିଷୟ ଉପରେ ପରାମର୍ଶ ଦେବାପାଇଁ ମନ୍ତ୍ରୀମଣ୍ଡଳର ଗୁରୁତ୍ୱପୂର୍ଣ୍ଣ ବୈଠକମାନଙ୍କରେ ସଭାପତିତ୍ୱ କରୁଥିଲେ । ସଙ୍କଟ ସମୟରେ କିତ୍ତୁରର ଶାସକମାନେ ଦିଗ୍‌ଦର୍ଶନ ନିମନ୍ତେ କଲିମଠର ସ୍ୱାମିଜୀମାନଙ୍କ ପାଖକୁ ଯାଉଥିଲେ । ଯୁଦ୍ଧ ଓ ଶାନ୍ତିକାଳରେ ସ୍ୱାମିଜୀ ରାଜ୍ୟର କାର୍ଯ୍ୟକଳାପରେ ପ୍ରମୁଖ ଭୂମିକା ଗ୍ରହଣ କରୁଥିଲେ । ଯଦିଓ ସେମାନେ ନିଜର ଧାର୍ମିକ, ଦାର୍ଶନିକ ଓ ଶାସ୍ତ୍ରୀୟ ଅଧ୍ୟୟନରେ ବ୍ୟାପୃତ ରହୁଥିଲେ, ତେବେବି ସେମାନେ କୂଟନୀତି ଓ ରାଜନୀତି କଳାରେ ନିପୁଣ ଥିଲେ, ଏବଂ ରାଜନୈତିକ ବ୍ୟାପାରରେ ସେମାନଙ୍କର ପରାମର୍ଶକୁ ସର୍ବଦା ମୂଲ୍ୟବାନ ମନେକରାଯାଉଥିଲା । ଶାସକ ଓ ତାଙ୍କ ପରିବାର ଯେପରି ପବିତ୍ର ଜୀବନ ଅତିବାହିତ କରିବେ ଓ ପାପଠାରୁ ଦୂରରେ ରହିବେ, ସେଦିଗରେ ଦୃଷ୍ଟି ରଖିବା ପାଇଁ ମଧ୍ୟ ସେମାନେ ନିଜର ପ୍ରଭାବ ପ୍ରୟୋଗ କରୁଥିଲେ । ସମଗ୍ର ରାଜପରିବାର ସ୍ୱାମିଜୀଙ୍କୁ ଶ୍ରଦ୍ଧା ପ୍ରଦାନ କରୁଥିଲେ । ଏହି କାରଣରୁ ସମସ୍ତ ଶାସକମାନଙ୍କର ସମାଧି କଲିମଠ ପ୍ରାଙ୍ଗଣରେ ବିଦ୍ୟମାନ, ଯେଉଁଠାରେ ସେଗୁଡ଼ିକ ଭଲରୂପେ ସଂରକ୍ଷିତ କରି ରଖାଯାଇଛି । ସୁତରାଂ, କିତ୍ତୁର ଜନପଦର ମଧ୍ୟସ୍ଥଳରେ ଅବସ୍ଥିତ କଲିମଠ, କିତ୍ତୁର ଇତିହାସ ସମ୍ବନ୍ଧରେ ରୁଚି ରଖୁଥିବା ବ୍ୟକ୍ତିମାନଙ୍କ ପାଇଁ ଆଜି ମଧ୍ୟ ଏକ ତୀର୍ଥସ୍ଥଳୀ ସ୍ୱରୂପ । କିତ୍ତୁର କଲିମଠର ସ୍ୱାମିଜୀମାନଙ୍କର ପରମ୍ପରାର ପ୍ରଭାବ ସମୟଗତିରେ କ୍ଷୀଣ ହୋଇନାହିଁ ।

କିତ୍ତୁର ଜନପଦଠାରୁ କିଛି ଦୂରରେ ଚୌକୀମଠ ଅବସ୍ଥିତ, ଯାହା କଲିମଠ ସମୀପସ୍ଥ । ଚୌକୀମଠର ଚତୁର୍ଦ୍ଦିଗରେ ବନ୍ଦଥିବା ବଡ଼ ବଡ଼ କକ୍ଷମାନ ଅଛି, ଯେଉଁଗୁଡ଼ିକୁ ସବୁଦିଗରୁ ରକ୍ଷା କରାଯାଇପାରିବ । ଏଥିରେ ସଙ୍କଟ ସମୟରେ ରାଜ୍ୟର ଗୁରୁତ୍ୱପୂର୍ଣ୍ଣ ସମସ୍ୟାଗୁଡ଼ିକ ସମ୍ପର୍କରେ ବିଚାର ବିମର୍ଶ କରିବା ନିମନ୍ତେ ଗୁପ୍ତ ବୈଠକମାନ ଆୟୋଜନ କରାଯାଉଥିଲା । କିତ୍ତୁର ଇତିହାସରେ ଏପରି ଅନେକ ଉଦାହରଣ ମିଳେ, ଯେଉଁଥିରେ ଶାସକମାନେ ମହତ୍ୱପୂର୍ଣ୍ଣ କୂଟନୈତିକ ପଦକ୍ଷେପ, ଯୁଦ୍ଧନୀତି ଓ ରାଜନୈତିକ ରଣକୌଶଳ ସମ୍ବନ୍ଧରେ ସ୍ୱାମୀଜୀଙ୍କ ସହ ଚୌକୀମଠର ଗୁପ୍ତକକ୍ଷରେ ବିଚାର ବିମର୍ଶ କରିଛନ୍ତି ।

ଯେଉଁ ସମୟରେ ମଲ୍ଲସର୍ଜା ରାଜ୍ୟ ଦାୟିତ୍ୱ ସମ୍ଭାଳି ଥିଲେ, ସେ ସମୟରେ ସେ ସମ୍ପୂର୍ଣ୍ଣ 17ବର୍ଷ ବୟସର ମଧ୍ୟ ହୋଇନଥିଲେ । ତାଙ୍କ ଯୁବାକାଳ ତେଜ ଓ ସାହସ ଭରପୂର ଥିଲା ଓ ତାଙ୍କ ବ୍ୟକ୍ତିତ୍ୱ ମଧ୍ୟ ଆକର୍ଷକ ଥିଲା । ସେ ନିଜେ ମଧ୍ୟ ଜଣେ ବୀର ଯୋଦ୍ଧା ଥିଲେ, ଏବଂ ଘୋଡ଼ାସୱାରୀ, ଖଣ୍ଡା ଚାଳନା, ଧନୁର୍ବିଦ୍ୟା ଓ ସୈନ୍ୟ କଳାସମୂହରେ ସୁଶିକ୍ଷିତ ଥିଲେ ।

ସିଂହାସନ ଆରୋହଣ କରିବା ସମୟରେ ତାଙ୍କୁ ଦୁଇଟି ବିରାଟ ଶକ୍ତି, ଯଥା- ମୈସୁରର ମୁସଲିମ୍ ଶାସକ ଅର୍ଥାତ୍ ଟିପୁ ସୁଲତାନ୍ ଏବଂ ଉତ୍ତର ଭାଗରେ ପେଶୱାଙ୍କ ସହ ଯୁଦ୍ଧ ଲଢ଼ିବାକୁ

ପଡ଼ିଥିଲା । ସେଇକାଳରେ ଇଂରେଜମାନେ ଭାରତର ଦକ୍ଷିଣ ପଶ୍ଚିମଭାଗରେ ନିଜର ସୈନ୍ୟ ବିସ୍ତାର କରୁଥିଲେ । ପେଶୱା ଓ ମୈସୁରର ଟିପୁଙ୍କ ମଧ୍ୟରେ ନିରନ୍ତର ସଂଘର୍ଷ ଜାରୀ ରହିଥିଲା ଏବଂ ମଲ୍ଲସର୍ଜାଙ୍କୁ ଅନେକଥର କେବେ ପେଶୱା ବା ସେମାନଙ୍କର ଅଧିନସ୍ଥମାନଙ୍କ ସହ, କେବେ ଟିପୁସୁଲତାନ୍ ଓ ତାଙ୍କର ଜାଗୀରଦାରମାନଙ୍କ ସହିତ ଲଢ଼ିବାକୁ ପଡୁଥିଲା । ଟିପୁ ବା ପେଶୱାଙ୍କର କିତ୍ତୁର ଓ ତାହାର ଉନ୍ନତି ସମ୍ବନ୍ଧରେ କୌଣସି ଆଗ୍ରହ ନଥିଲା । ସେମାନଙ୍କର ଏକମାତ୍ର ଲକ୍ଷ୍ୟଥିଲା ଲୁଟ୍ କରିବା ତଥା ଏଇ ଛୋଟ ସମୃଦ୍ଧ ରାଜ୍ୟରୁ ଯାହା ମିଳିଲା, ତାହା ନେଇଯିବା । ପରିସ୍ଥିତିବଶତଃ କିତ୍ତୁରର ଶାସକମାନଙ୍କୁ ନିଜ ରାଜ୍ୟକୁ ସୁରକ୍ଷିତ ରଖିବା ନିମନ୍ତେ ଅନେକଥର ବ୍ରିଟିଶ ସହାୟତା ନେବାକୁ ପଡ଼ିଥିଲା । ଛୋଟ ରାଜ୍ୟର ସମୃଦ୍ଧି ଏହା ପାଇଁ ଅଭିଶାପ ସ୍ୱରୂପ ହୋଇଯାଇଥିଲା, କାରଣ ଏଇ ବଡ଼ ଶକ୍ତିମାନଙ୍କର ଦୃଷ୍ଟି ସର୍ବଦା ଏଇ ଅଞ୍ଚଳ ଉପରେ ରହିଥିଲା, ଯେହେତୁ ସେମାନଙ୍କର ବିଚାର ଅନୁଯାୟୀ, ନିଜ ରାଜକୋଷ ପରିପୂର୍ଣ୍ଣ କରିବା ପାଇଁ ଏଇ ଅଞ୍ଚଳକୁ ଇଚ୍ଛା ଅନୁଯାୟୀ ଲୁଣ୍ଠନ କରାଯାଇପାରେ । ଏପରି ଏକ ସଙ୍କଟକାଳ ମଧ୍ୟରେ ହିଁ ମଲ୍ଲସର୍ଜା ସିଂହାସନ ଉପରେ ବସିଥିଲେ ।

ଗାଦିରେ ବସିବାର ତିନିବର୍ଷ ନହେଉଣୁ, ଟିପୁ ସୁଲତାନ୍ ନିଜର ସହାୟକ ବଦରୁଲ ଜମାଁ ଖାଁଙ୍କ ମାଧ୍ୟମରେ ଦେସନୁର କିଲ୍ଲା ଅଧିକାର କରିବାର ପ୍ରୟାସ କଲେ । ଏହି କିଲ୍ଲା କିତ୍ତୁରର ଉତ୍ତର ଭାଗରେ ଅବସ୍ଥିତ । ମଲ୍ଲସର୍ଜା ଓ ତାଙ୍କ ସୈନ୍ୟମାନେ ତାଙ୍କୁ ପରାସ୍ତ କରି ତଡ଼ିଦେଲେ । କୁହାଯାଏ ଯେ, ମଲ୍ଲସର୍ଜାଙ୍କର ପ୍ରଥମ ପତ୍ନୀ ରାଣୀ ରୁଦ୍ରମ୍ମା ଏହି ଯୁଦ୍ଧରେ ଲଢ଼ିଥିଲେ । ଟିପୁ ସୁଲତାନ୍ କିଛିମାସ ପରେ ପୁନଶ୍ଚ ବୁହାର୍ନୁଦ୍ଦୀନ୍‌ଙ୍କୁ ସାଥିରେ ନେଇ ଦ୍ୱିତୀୟଥର ଆକ୍ରମଣ କରିବା ନିମନ୍ତେ ଆସିଲେ । ଏଇ ଛୋଟ ରାଜ୍ୟର ସୈନ୍ୟବାହିନୀ ଟିପୁଙ୍କ ବିଶାଳ ସୁଶିକ୍ଷିତ ସେନାର ମୁକାବିଲା କରିପାରିଲେ ନାହିଁ । ମଲ୍ଲସର୍ଜାଙ୍କୁ ବନ୍ଦୀ କରାଗଲା ଓ ତାଙ୍କୁ ପ୍ରାୟ ତିନିବର୍ଷ ପର୍ଯ୍ୟନ୍ତ ପେରିୟା-ସଟ୍ଟଣ ନିକଟସ୍ଥ କପାଳ ଦୁର୍ଗଠାରେ ବନ୍ଦୀ ରଖାଗଲା । ସେ ସମୟରେ ତାଙ୍କର ବୟସ ଥିଲା କୋଡ଼ିଏ ବର୍ଷ । ମଲ୍ଲସର୍ଜା ବହୁତ ଚତୁରତା ସହକାରେ ଜେଲ୍‌ରୁ ଖସିଆସିଲେ ଓ କୋୟମ୍ବଟୁର ନିକଟରେ ଉକ୍ତ ଅଞ୍ଚଳରେ ପହଞ୍ଚିଗଲେ, ଯାହା ଇଂରେଜମାନଙ୍କ ଅଧିକାରରେ ଥିଲା ଏବଂ ତା'ପରେ ବୀଜାପୁର ଚାଲିଗଲେ, ଯାହା ସେହି ସମୟରେ ମୋଗଲମାନଙ୍କ ଅଧିନରେ ଥିଲା । ତାପରେ ସେ ଅନେକ ସ୍ଥାନ ଦେଇ, ଅନେକ କଷ୍ଟ ସହି, ବେଶ ବଦଳାଇ ଅଗ୍ରସର ହେଲେ ଏବଂ ଶେଷରେ ବାବାଲେଶ୍ୱରଠାରେ ପହଞ୍ଚିଗଲେ, ଯେଉଁଠି ତାଙ୍କ ପତ୍ନୀ ରୁଦ୍ରମ୍ମାଙ୍କର ନିକଟ ସମ୍ପର୍କୀୟମାନେ ରହୁଥିଲେ । ସେମାନେ ରାଜା ମଲ୍ଲସର୍ଜାଙ୍କୁ ଆଶ୍ରୟ ଦେଲେ । ଏଠାରେ ତାଙ୍କୁ କିତ୍ତୁରର ଗତିବିଧିର ଖବର ମିଳିଲା । ଯେମିତି କିତ୍ତୁରର ଲୋକେ ତାଙ୍କର ଜେଲ୍‌ରୁ ଖସି ପଳାଇବାର ଖବର ପାଇଲେ, ସେମାନେ ବାବାଲେଶ୍ୱର ଆସି ତାଙ୍କୁ କିତ୍ତୁରକୁ ନେଇଗଲେ । ସେମାନେ ତାଙ୍କର ସ୍ୱଦେଶ ଫେରିଆସିବାର ଖୁସିରେ ଭବ୍ୟ ସ୍ୱାଗତ ଉତ୍ସବର ଆୟୋଜନ କଲେ । ମଲ୍ଲସର୍ଜା ପ୍ରାୟ ତିନିବର୍ଷ ପରେ ରାଜ୍ୟର ଶାସନ ଭାର ପୁଣି ସମ୍ଭାଳିଲେ ।

୧୭୮୭ରେ ଟିପୁଙ୍କୁ ମରାଠାମାନଙ୍କୁ କିତ୍ତୁର ଦେଇଦେବାକୁ ପଡ଼ିଲା, କାରଣ ଥିଲା ଇଂରେଜମାନଙ୍କର ଭୟ, ଯେଉଁମାନେ ସେ ସମୟରେ ଦେଶର ସେହି ଅଞ୍ଚଳରେ ଶକ୍ତିଶାଳୀ ହୋଇସାରିଥିଲେ । ଏହି ପ୍ରକାରେ କିତ୍ତୁର ପୁନଶ୍ଚ ପେଶୱାଙ୍କ ଅଧିନକୁ ଆସିଲା, ଯିଏ ପରଶୁରାମ ଭାଉଙ୍କୁ ତାଙ୍କର ନାଏବ୍ ରୂପେ ଦକ୍ଷିଣ ଭାଗର ଶାସନକର୍ତ୍ତା କରିଦେଲେ । କିତ୍ତୁର ମଧ୍ୟ ଏହି ଭାଗରେ ଆସୁଥିଲା । ଭାଉ, କିତ୍ତୁରକୁ ଧାରୱାଡ଼ ଅନ୍ତର୍ଗତ କରିଦେଲେ ଏବଂ ତାହାର ପ୍ରଶାସନ ଦେଖାରଖା କରିବା ପାଇଁ କିତ୍ତୁରରେ ଜଣେ ମାମଲତ୍‌ଦାର୍ ନିଯୁକ୍ତ କଲେ । ଏହାର କିଛିକାଳ ପରେ, ପରଶୁରାମ

ଭାଉ, 1788 ମସିହାରେ ପଟ୍ଟନକୋଡ୍ଡୀ ଠାରେ କୋହ୍ଲାପୁର ରାଜାଙ୍କ ସହିତ ଏକ ଯୁଦ୍ଧରେ ମୃତ୍ୟୁବରଣ କଲେ ଏବଂ ଏହାପରେ କିତ୍ତୁରକୁ ସ୍ୱାଧୀନତା ମିଳିଗଲା । ତାହା କେବଳ ପେଶୱାଙ୍କ ଅଧୀନରେ ଥିଲା, ଯାହାଙ୍କୁ ପ୍ରାୟ 70,000ଙ୍କା ବାର୍ଷିକ ଭେଟି ଦେବାକୁ ପଡୁଥିଲା । ସେହି ସମୟରେ ମଲ୍ଲସର୍ଜାଙ୍କ ପାଖରେ 1,000 ଅଶ୍ୱାରୋହୀ ତଥା 4,000 ପଦାତିକ ସୈନ୍ୟ ଥିଲେ । ରାଜ୍ୟର ବାର୍ଷିକ ଆୟ ଥିଲା ପ୍ରାୟ 5ଲକ୍ଷ ଟଙ୍କା ।

ଶ୍ରୀରଙ୍ଗପଟ୍ଟନ ସନ୍ଧି ଅନୁଯାୟୀ 1972ରେ ତୁଙ୍ଗଭଦ୍ରାର ଉତ୍ତରଭାଗର ସମସ୍ତ ଅଞ୍ଚଳ ପେଶୱାଙ୍କୁ ଦିଆଗଲା । ଯଦିଓ କିତ୍ତୁର ଅଞ୍ଚଳ ପେଶୱାଙ୍କ ଅଧୀନରେ ଥିଲା, ତଥାପି ରାଜ୍ୟର ଦକ୍ଷିଣ ଭାଗରେ ଶକ୍ତିଶାଳୀ ଲୋକମାନେ ଥିଲେ, ଯେଉଁମାନେ ମାହାସୁଲ ନଦେଇ ମାଦକଦ୍ରବ୍ୟ ବ୍ୟବସାୟ କରୁଥିଲେ ଓ ପେଶୱାଙ୍କୁ ଅବଜ୍ଞା କରି ଦକ୍ଷିଣର ଛୋଟ ଛୋଟ ରାଜ୍ୟମାନଙ୍କୁ ଲୁଣ୍ଠନ କରୁଥିଲେ ତଥା ଆତଙ୍କ ସୃଷ୍ଟି କରୁଥିଲେ । ମାହାସୁଲ ନଦେଇ ମାଦକଦ୍ରବ୍ୟ ବ୍ୟବସାୟ କରୁଥିବା ଏପରି ଏକ ବ୍ୟକ୍ତି ଥିଲା ଧୋନ୍ଦୁବାଘ, ଯିଏ ସେହି ଅଞ୍ଚଳରେ ଲୁଟ୍‌ପାଟ୍ ମଧ୍ୟ କରୁଥିଲା । ସୁତରାଂ, ମଲ୍ଲସର୍ଜାଙ୍କୁ ବ୍ରିଟିଶ୍ ସହାୟତା ନେବାକୁ ପଡ଼ିଲା ଏବଂ ସେ ଜେନେରାଲ ୱେଲସ୍‌ଲିଙ୍କ ସହ ଏକ ବୁଝାମଣା କଲେ, ଯିଏ ଧୋନ୍ଦୁବାଘକୁ କାବୁ କରିବା ଦିଗରେ ତାଙ୍କର ସହାୟତା କଲେ । 1802 ମସିହାରେ, ଜେନେରାଲ ୱେଲସ୍‌ଲି ବାଜୀରାଓଙ୍କୁ ଗାଦିରେ ପୁନଃସ୍ଥାପିତ କରିବା ନିମନ୍ତେ ଶ୍ରୀରଙ୍ଗପଟ୍ଟନରୁ ପୁଣେ ଯାଉଥିବା ସମୟରେ ମଲ୍ଲସର୍ଜା ଓ ଏହି ଅଞ୍ଚଳର ଅନ୍ୟ ଦେସାଇମାନେ ଇଂରେଜମାନଙ୍କର ସହାୟତା କରିବା ନିମନ୍ତେ ଯଥେଷ୍ଟ ଧନଜନ ଯୋଗାଇଥିଲେ । ସହାୟତା ଓ ସଦ୍‌ଭାବନାର ପ୍ରତିଦାନରେ, ଇଂରେଜମାନେ ମଲ୍ଲସର୍ଜାଙ୍କୁ ତାଙ୍କର ରାଜ୍ୟଶାସନ କାଏମ୍ ରଖିବାର ଅନୁମତି ଦେଇଦେଲେ । 1805 ମସିହାରେ ମଲ୍ଲସର୍ଜା ଟିପୁଙ୍କ ବିରୁଦ୍ଧରେ ହୋଇଥିବା ଯୁଦ୍ଧରେ ପେଶୱାଙ୍କୁ ସକ୍ରିୟ ଭାବେ ସହାୟତା କରିଥିଲେ, ଯାହାର ପ୍ରତିଦାନରେ 1809ରେ କିତ୍ତୁରର ଦେସାଇ ଓ ପେଶୱାଙ୍କ ମଧ୍ୟରେ ବୁଝାମଣା ହେଲା ଯେ, 1.75ଲକ୍ଷ ଟଙ୍କାର ଭେଟି ଦେଇ ସେ ତାଙ୍କର ରାଜ୍ୟାଧିକାର ବଜାୟ ରଖିପାରିବେ, ନିଜର ସେନା ରଖିପାରିବେ ଏବଂ ତାଙ୍କର ତାଙ୍କ ରାଜ୍ୟରେ ସ୍ୱ-ଶାସନ ଅଧିକାର ରହିବ ବୋଲି କଥା ଦିଆଗଲା । ମଲ୍ଲସର୍ଜାଙ୍କ ରଣନୀତି, ଶାସନ କୁଶଳତା ତଥା କପାଳଦୁର୍ଗରୁ ଖସି ଆସିବା ସମୟରେ ସେ ପ୍ରଦର୍ଶନ କରିଥିବା ଚତୁରତା ଓ ଟିପୁଙ୍କ ସହ ଯୁଦ୍ଧ କରିବା ସମୟରେ ତାଙ୍କର ବୀରତାକୁ ଦୃଷ୍ଟିରେ ରଖି ତାଙ୍କୁ 'ପ୍ରତାପ ରାଓ' ଉପାଧି ପ୍ରଦାନ କରାଗଲା । ଏହି ଘଟଣାର ସ୍ମୃତିରେ ସେ ନନ୍ଦଗଡ଼ଠାରେ କିଲ୍ଲା ନିର୍ମାଣ କଲେ ଏବଂ ତାହାର ନାମ 'ପ୍ରତାପଗଡ଼' ଦେଲେ ।

କିତ୍ତୁରର ଶାସକମାନେ ରାଜ୍ୟର ଅଖଣ୍ଡତା ଓ ପ୍ରଶାସନରେ ସ୍ୱାଧୀନତା ନିମନ୍ତେ ପେଶୱାଙ୍କ ସହ ଯେଉଁ ଯୁଦ୍ଧ ଲଢ଼ିଥିଲେ, ତାହା ଉଲ୍ଲେଖନୀୟ ଅଟେ । ପେଶୱା ଓ ପଟ୍ଟବର୍ଦ୍ଧନମାନେ ତାଙ୍କ ଉପରେ ବିଜୟ ହାସଲ କରିବା ଓ ନିଜ ଅଧୀନ କରିବା ନିମନ୍ତେ ଅନେକବାର ନିରର୍ଥକ ପ୍ରୟାସ କଲେ, କିନ୍ତୁ ସଫଳ ହେଲେ ନାହିଁ । 1809ର ଏକ ଲିଖିତ ପ୍ରମାଣରେ ନିମ୍ନଲିଖିତ ମରାଠୀ ଅଂଶ କିତ୍ତୁରର ଶାସକଙ୍କ ଆଚରଣର ପ୍ରମାଣ ବହନ କରେ[1]:

କର୍ଣ୍ଣାଟକରେ କିତ୍ତୁର ଦେସାଇ ଜଣେ ଶକ୍ତିଶାଳୀ ବିଦ୍ରୋହୀ ଥିଲେ । ଯଦିଓ ପେଶୱା କିତ୍ତୁରକୁ

---

1 ଖରେ, ଜି. ଜି., 19: ହିଷ୍ଟୋରିକାଲ ମରାଠୀ ରେକର୍ଡ୍‌ସ, ଭାଗ XV ପୃ. 8054 ସମ୍ପା: ଜି. ଜି. ଖରେ, ଭାରତୀୟ ଇତିହାସ ମଣ୍ଡଳ, ପୁଣେ

ନିଜ ଅଧିନ ଓ ନିୟନ୍ତ୍ରଣରେ ରଖିବା ନିମନ୍ତେ ଚାଳିଶବର୍ଷ ପର୍ଯ୍ୟନ୍ତ ପ୍ରୟାସ କରିଥିଲେ, କିନ୍ତୁ ଯେହେତୁ ବ୍ରିଟିଶ୍ ଶାସକ ଓ ପେଶୱାଙ୍କ ମଧ୍ୟରେ ଶକ୍ତିର ସଂଘର୍ଷ ଚାଲୁ ରହିଥିଲା, ସେହେତୁ କିତ୍ତୁରକୁ ପୂର୍ଣ୍ଣ ଆତ୍ମଶାସନର ଅଧିକାର ମିଳିଥିଲା । ମଲ୍ଲସର୍ଜାଙ୍କ କଲ୍ୟାଣକାରୀ ଶାସନ ଫଳରେ କିତ୍ତୁର ଏକ ସ୍ୱଚ୍ଛଳ ରାଜ୍ୟରେ ପରିଣତ ହୋଇଥିଲା ଏବଂ ଜନତା ସୁଖୀ ଥିଲେ । 1821 ପର୍ଯ୍ୟନ୍ତ କିତ୍ତୁରରେ ଅବସ୍ଥା ସୁଚାରୁରୂପେ ଚାଲିଲା । ତା'ପରେ ଘଟଣାଚକ୍ର ବଦଳିଗଲା । ବାଜୀରାଓଙ୍କୁ କିତ୍ତୁର ରାଜ୍ୟର ସ୍ୱଚ୍ଛଳତା ଓ ବୃଦ୍ଧିପ୍ରାପ୍ତ ସମ୍ପଦର ନିୟମିତ ଖବର ମିଳୁଥିଲା । ମଲ୍ଲସର୍ଜାଙ୍କ ଲୋକପ୍ରିୟତା ହେତୁ ସେ ଲୋଲୁପୀ ଓ ଈର୍ଷାଳୁ ହୋଇପଡ଼ିଥିଲେ । କିତ୍ତୁରରେ କେତେକ ଚାଲାକ ଓ ସ୍ୱାର୍ଥପର ଲୋକ ମଧ୍ୟ ଥିଲେ, ଯେଉଁମାନେ ବାଜୀରାଓଙ୍କ ପାଖରେ ଖବର ପହଞ୍ଚାଇଲେ ଯେ, ମଲ୍ଲସର୍ଜା ବହୁତ ଶକ୍ତିଶାଳୀ ଓ ଉଦ୍ଧତ ହୋଇଯାଇଛନ୍ତି ଏବଂ ଯେକୌଣସି ସମୟରେ ପେଶୱାଙ୍କୁ ଅବଜ୍ଞା କରିବାର ଦୁଃସାହସ କରିପାରନ୍ତି । ବାଜୀରାଓଙ୍କୁ ସେମାନଙ୍କ କଥାରେ ବିଶ୍ୱାସ ଆସିଗଲା । ସେ ମଲ୍ଲସର୍ଜାଙ୍କ ଶକ୍ତି ହ୍ରାସ କରିବା ଓ ପଦାନତ କରି ରଖିବାକୁ ଚାହୁଁଥିଲେ । ନିଜ ପରିବାରର ପୂଜ୍ୟ ଦେବତା ଭଗବାନ କାର୍ତ୍ତିକେୟଙ୍କ ପୂଜା କରିବା ନିମନ୍ତେ ସଣ୍ଡୁରୁଠାକୁ ତୀର୍ଥଯାତ୍ରା ବାହାନାରେ ବାଜୀରାଓ ଦକ୍ଷିଣରେ ଡ଼େରା ପକାଇଲେ । ତାଙ୍କ ସହିତ ପଦାତିକ ସୈନ୍ୟ ଓ ଅଶ୍ୱାରୋହୀ ସୈନ୍ୟ ଆଦିର ଏକ ବିରାଟ ଦଳ ଥିଲା । ସେ ସ୍ଥାନେ ସ୍ଥାନେ ରହି ରହି ଗଲେ ଓ ଅଧିନସ୍ଥ ମୁଖିଆ ତଥା ଅଧିନସ୍ଥ ଦେସାଇମାନଙ୍କୁ ଡ଼କାଇ ପଠାଇଲେ, ଯେଉଁମାନଙ୍କଠାରୁ ଆଶା କରାଯାଉଥିଲା ଯେ, ସେମାନେ ଡ଼କରା ପାଇ ଆସିବେ ଏବଂ ଆସିବା ସମୟରେ ନିଜ ସାଧ୍ୟମତେ ଯଥେଷ୍ଟ ପରିମାଣର ଉପହାର ଆଣିବେ । ମଲ୍ଲସର୍ଜାଙ୍କୁ ଖବର ଦିଆଗଲା ଯେ, ସେ ହୋଙ୍ଗେଲଠାରେ ବାଜୀରାଓଙ୍କୁ ଭେଟିବେ, ମଲ୍ଲସର୍ଜା ଏଥିପାଇଁ ପ୍ରସ୍ତୁତ ନଥିଲେ । ଶିଗୁଣାସୀର ଅଲିପୁଗୌଡ଼ ନାମକ ଜଣେ ଅତି ଚାଲାକ ବ୍ୟକ୍ତି ମଲ୍ଲସର୍ଜାଙ୍କୁ ପେଶୱାଙ୍କୁ ଭେଟିବା ପାଇଁ ବୁଝାଇଦେଲେ । ବାଜୀରାଓ ମଲ୍ଲସର୍ଜାଙ୍କ ପହଞ୍ଚିବା ପୂର୍ବରୁ ହିଁ ସେଠାରେ ଜାଣିଶୁଣି ଆଗୁଆ ପହଞ୍ଚିଗଲେ ଓ ସେଠାରେ ସୂଚନା ଛାଡ଼ିଗଲେ ଯେ ସେ ତାଙ୍କ ପଛେପଛେ ପୁଣେ ଚାଲି ଆସନ୍ତୁ । ଯେମିତି ମଲ୍ଲସର୍ଜା ସେଠାରେ ପହଞ୍ଚିଲେ, ତାଙ୍କୁ ମୁଘୋଲକର ବାଡ଼ାରେ ବନ୍ଦୀ କରିନିଆଗଲା ଏବଂ ସେଠାରେ କଡ଼ା ପହରାର ବନ୍ଦୋବସ୍ତ କରିଦିଆଗଲା । ତାଙ୍କୁ ତିନିବର୍ଷ ଧରି ଦୀର୍ଘ ସମୟ ପର୍ଯ୍ୟନ୍ତ ବନ୍ଦୀ ରଖାଗଲା ଏବଂ ତାଙ୍କ ସହିତ ଖୁବ୍ ଦୁର୍ବ୍ୟବହାର କରାଗଲା । ଏହି କାଳ ମଧ୍ୟରେ ମଲ୍ଲସର୍ଜାଙ୍କ ସ୍ୱାସ୍ଥ୍ୟ ବହୁତ ଭାଙ୍ଗିପଡ଼ିଲା । ସେ ଥିଲେ ଜଣେ ଆତ୍ମାଭିମାନୀ ବ୍ୟକ୍ତି । ସେ ବାଜୀରାଓଙ୍କର ସମସ୍ତ ପ୍ରସ୍ତାବ ଆଡ଼େଇଦେଲେ । ସେ କେବଳ ଉପଯୁକ୍ତ ବ୍ୟବହାର ଓ ନିଜ ରାଜ୍ୟର ପୂର୍ଣ୍ଣ ସ୍ୱାଧୀନତା ଚାହୁଁଥିଲେ । ସେ ଏହାଠାରୁ କମ୍ କିଛି ଦ୍ରବ୍ୟ ବାଜୀରାଓଙ୍କଠାରୁ ସ୍ୱୀକାର କଲେ ନାହିଁ, ଯିଏ ତାଙ୍କୁ ନିମ୍ନ ବୋଲି ଦର୍ଶାଇବା ନିମନ୍ତେ ଚାହୁଁଥିଲେ ଏବଂ ଏପରି ସର୍ତ୍ତରେ ରାଜି କରାଇବାକୁ ଚାହୁଁଥିଲେ, ଯଦ୍ୱାରା କିତ୍ତୁର ରାଜ୍ୟର ସ୍ୱାଧୀନତାର ବିଲୋପ ହେବ । ମଲ୍ଲସର୍ଜା ଏପରି ଅପମାନଜନକ ସର୍ତ୍ତ ନିମନ୍ତେ ରାଜି ହେବା ବଦଳରେ କ୍ଷୁଧାର୍ତ୍ତ ରହି ମରିଯିବାକୁ ଶ୍ରେୟସ୍କର ମଣିଲେ । ତାଙ୍କର ସ୍ୱାସ୍ଥ୍ୟ ଏତେ ଭାଙ୍ଗିଗଲା ଯେ, ମନେହେଉଥିଲା, ଯେପରି ସେ ଖୁବ୍ ଶୀଘ୍ର ମୃତ୍ୟୁବରଣ କରିବେ । ସୁତରାଂ ବାଜୀରାଓ ଏହାର ପରିଣାମକୁ ଡ଼ରି ତାଙ୍କୁ ଖଲାସ୍ କରିଦେବାକୁ ନିଷ୍ପତ୍ତି କଲେ । ଶେଷରେ ତାଙ୍କୁ ଖଲାସ କରାଗଲା ଏବଂ ଗୋଟିଏ ବନ୍ଦ ରଥରେ ପଠାଇବାର ବ୍ୟବସ୍ଥା କରାଗଲା । ପୁଣେଠାରୁ ତାଙ୍କର ଯିବାର ଖବର ତାଙ୍କ ପରିବାର ସଦସ୍ୟଙ୍କ ପାଖକୁ ପଠାଇଦିଆଗଲା । ସେମାନେ ଜାଣିଥିଲେ ଯେ, ମଲ୍ଲସର୍ଜା ବହୁତ ଦୁର୍ବଳ ହୋଇଯାଇଛନ୍ତି । ସ୍ୱାଭାବିକ ଭାବେ ସେମାନେ ତାଙ୍କର ସ୍ୱାସ୍ଥ୍ୟ ସମ୍ବନ୍ଧରେ ଚିନ୍ତିତ ଥିଲେ । ସାରା ପରିବାର ଓ ଦରବାରର ବିଶ୍ୱାସପାତ୍ର ସମର୍ଥକମାନେ ଦୂରଦୁନ୍ଦୀସ୍ଥିତ ଆରଭାବୀ ମଠକୁ ଆସିଲେ,

ଯେଉଁଠାରେ ସେମାନେ ରୁଗ୍ଣ ଓ ଅସ୍ଥିକଙ୍କାଳସାର ମଲ୍ଲସର୍ଜାଙ୍କୁ ସ୍ୱାଗତ କଲେ । ସେଠାରୁ ସେମାନେ ତାଙ୍କୁ ଅର୍ଦ୍ଧଚେତନ ଅବସ୍ଥାରେ ସାବଧାନତା ସହକାରେ କିତ୍ତୁର ଆଣିଲେ । ଯେମିତି ଉକ୍ତ ଦଳ କିତ୍ତୁରରେ ପ୍ରବେଶ କଲେ, ମଲ୍ଲସର୍ଜାଙ୍କ ଶାସନର 34 ବର୍ଷ ପୂରଣ ଉପଲକ୍ଷେ 34ଟି ତୋପ ଫୁଟାଗଲା । ମଲ୍ଲସର୍ଜା ନିଜର ଲୋକମାନଙ୍କୁ ପଚାରିଲେ ଯେ, ଏସବୁ କ'ଣ ? ତାଙ୍କୁ ଜଣାଇ ଦିଆଗଲା ଯେ, ତାଙ୍କର ସ୍ୱଦେଶ ଫେରିଆସିବାର ଆନନ୍ଦ ପାଳନ କରାଯାଉଛି । ସେ ଉଠିବା ଅବସ୍ଥାରେ ନଥିଲେ । ତାହାର ତିନି ଚାରିଦିନ ପରେ ସେ ମୃତ୍ୟୁବରଣ କଲେ । ସେ ସମୟରେ ତାଙ୍କ ପରିବାରରେ ଦୁଇଜଣ ପତ୍ନୀ - ରୁଦ୍ରାମ୍ମା ତଥା ଚେନ୍ନମ୍ମା ତଥା ତିନିଜଣ ଛୋଟପୁଅ ଥିଲେ । ଏହି ପ୍ରକାର ମଲ୍ଲସର୍ଜାଙ୍କ ଅତ୍ୟନ୍ତ ଗୌରବଶାଳୀ ଶାସନର ଅନ୍ତ ହୋଇଗଲା । ତାଙ୍କ ବଡ଼ପୁଅ ଶିବଲିଂଗ ରୁଦ୍ରସର୍ଜା, ଯାହାକୁ ସମସ୍ତେ ବାପୁ ସାହେବ ନାମରେ ଜାଣିଥିଲେ, ତାଙ୍କ ସ୍ଥାନରେ ଗାଦିରେ ଅଭିଷିକ୍ତ ହେଲେ ।

# ପତନ କାଳ

ଶିବଲିଙ୍ଗ ରୁଦ୍ରସର୍ଜା ଓରଫ୍ ବାପୁ ସାହେବ ମଲ୍ଲସର୍ଜାଙ୍କର ଅଯୋଗ୍ୟ ଉତ୍ତରାଧିକାରୀ ଥିଲେ । ତାଙ୍କର ସ୍ୱାସ୍ଥ୍ୟ ଭଲ ନଥିଲା । ପୁଣି ସାହିତ୍ୟ ଆଲୋଚନା, ଅନୁସନ୍ଧାନ ପ୍ରଭୃତି ତାଙ୍କୁ ଅଧିକ ରୁଚିପୂର୍ଣ୍ଣ ମନେହେଉଥିଲା । କନ୍ନଡ଼ ଭାଷାରେ ସେ ତିନୋଟି ପୁସ୍ତକ ମଧ୍ୟ ରଚନା କରିଥିଲେ । ତାଙ୍କ ପତ୍ନୀ ବୀରମ୍ମା ଶିବଗୁଟ୍ଟୀର ସମ୍ଭ୍ରାନ୍ତ ଦେଶାଇ ପରିବାରର ଥିଲେ । ମହୀଶୂରର ଜଣେ ନୈୟାୟିକ ବିଦ୍ୱାନ୍ ଗନିଗା ଚେନ୍ନବସପ୍ପାଙ୍କୁ ନିମନ୍ତ୍ରଣକରି ଆଣି ରୁଦ୍ରସର୍ଜା ତାଙ୍କଠାରୁ ଦର୍ଶନ ଶାସ୍ତ୍ର ଅଧ୍ୟୟନ ତଥା ଦର୍ଶନ ସମ୍ପର୍କରେ ବିଶେଷ ଜ୍ଞାନ ଲାଭକରିଥିଲେ ବୋଲି କୁହାଯାଏ । କିଶୋର ବୟସରୁ ସେ ବହୁ ଚାଟୁକାରମାନଙ୍କଦ୍ୱାରା ପରିବୃତ ହୋଇ ରହୁଥିଲେ । ରାଜଦରବାର ଦଳୀୟ ରାଜନୀତିଦ୍ୱାରା କଳୁଷିତ ଥିଲା । ଗୋଟିଏ ଗୋଷ୍ଠୀର ମୁଖ୍ୟ ଗୁରୁ ସିଦ୍ଧପ୍ପା ରାଣୀ ଚେନ୍ନାମ୍ମାଙ୍କ ପ୍ରତି ଅଧିକ ଅନୁଗତ ଥିଲେ । ଅପର ଗୋଷ୍ଠୀର ପ୍ରଧାନ ଭେଙ୍କଟରାଓ ଏବଂ ମଲ୍ଲପ୍ପଶେଟ୍ଟୀ ନିଜ ସ୍ୱାର୍ଥ ନିମନ୍ତେ ସରକାରଙ୍କୁ ଦୁର୍ବଳ କରିଦେବାକୁ ଚାହୁଁଥିଲେ ଏବଂ ଏ ବ୍ୟାପାରରେ ସେମାନଙ୍କର ବିଶେଷ କୌଣସି ଅସୁବିଧା ମଧ ନଥିଲା । ପୁଣି ସେମାନଙ୍କର ବ୍ରିଟିଶ ଶାସକମାନଙ୍କ ସହିତ ଗୋପନ ସମ୍ପର୍କ ରହିଥିଲା ଏବଂ ଶାସନ ସଂକ୍ରାନ୍ତ ସମସ୍ତ ଗୁପ୍ତ ସମ୍ବାଦ ସେମାନେ ତାଙ୍କୁ ଦେଉଥିଲେ । ଅବଶ୍ୟ ଇଂରେଜମାନେ କିତ୍ତୁରର କାର୍ଯ୍ୟକଳାପ ସମ୍ପର୍କରେ ଜାଣିବା ନିମନ୍ତେ ତିଳେମାତ୍ର ଉତ୍ସୁକ ନଥିଲେ । କାରଣ କୌଣସି ଉପାୟରେ ତାକୁ ଗ୍ରାସ କରିବା ହିଁ ଥିଲା ସେମାନଙ୍କର ପ୍ରଧାନ ଉଦ୍ଦେଶ୍ୟ । ଅବୋଧ ଶିବଲିଙ୍ଗ ରୁଦ୍ରସର୍ଜା ଅନାୟାସରେ ଭେଙ୍କଟରାଓ ତଥା ମଲ୍ଲପ୍ପଶେଟ୍ଟୀଙ୍କ ଫାନ୍ଦରେ ପଡ଼ିଗଲେ । ସେମାନେ ଥିଲେ ଇଂରେଜମାନଙ୍କର ଦଲାଲ ଏବଂ ନିଜ ସ୍ୱାର୍ଥ ନିମନ୍ତେ କିତ୍ତୁରକୁ ବଳିଦେବା ନିମନ୍ତେ ପଶ୍ଚାତ୍‌ପଦ ନଥିଲେ ।

ରୁଦ୍ରସର୍ଜା 1816 ରେ ସିଂହାସନରେ ବସିଥିଲେ । 1817 ଏବଂ 1818 ବେଳକୁ ଇଂରେଜ ତଥା ପେଶବା ବାଜୀରାଓଙ୍କ ମଧ୍ୟରେ ସମ୍ପର୍କ ତିକ୍ତ ହୋଇଉଠିଲା । ଉଭୟ ପକ୍ଷର ଶତ୍ରୁତା ମଧରେ କୌଣସି ଗୋପନୀୟତା ନଥିଲା, ଇଂରେଜମାନେ ଚିରଦିନ ଲାଗି ପେଶବାଙ୍କୁ ପରାଜିତ କରିବା ନିମନ୍ତେ ଚାହୁଁଥିଲେ, କାରଣ ପେଶବା ଥିଲେ ଇଂରେଜ ସାମ୍ରାଜ୍ୟ ବିସ୍ତାର ନୀତିର ବାଧକ ସ୍ୱରୂପ । ତେଣୁ ସେମାନେ ଦକ୍ଷିଣ ଦିଗରୁ ପେଶବାଙ୍କ ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ନଭେମ୍ବର 1817ରେ ଦକ୍ଷିଣର ଶାସକ ଏଲଫିନ୍‌ଷ୍ଟନ୍ କିତ୍ତୁରର ଦେଶାଇଙ୍କୁ ପତ୍ର ଲେଖି ପେଶବାଙ୍କ ବିରୁଦ୍ଧରେ ତାଙ୍କଠାରୁ ସାହାଯ୍ୟ ମାଗିଲେ । 1818 ମସିହାରେ ଇଂରେଜମାନେ ପେଶବାଙ୍କ ଅଧୀନ ବେଲଗାଁଓ ଦୁର୍ଗ ଆକ୍ରମଣ କଲେ । 21 ମାର୍ଚ୍ଚରୁ 12 ଏପ୍ରିଲ୍ ମଧ୍ୟରେ ଦୁର୍ଗ ଅବରୋଧ ସମୟରେ ରୁଦ୍ରସର୍ଜା ଏଥିନିମନ୍ତେ ସୈନ୍ୟସାମନ୍ତ ତଥା ସାଜସରଞ୍ଜାମ ଯୋଗାଇଦେଇ ଇଂରେଜମାନଙ୍କୁ ସାହାଯ୍ୟ କଲେ । ପେଶବା ପରାଜିତ ହେଲେ ଏବଂ ଦୁର୍ଗ ଇଂରେଜମାନଙ୍କ ଅଧିକାରକୁ ଆସିଗଲା । ଏହିଭଳି ପେଶବା ସାମ୍ରାଜ୍ୟର ଦକ୍ଷିଣାଞ୍ଚଳ ଇଂରେଜମାନଙ୍କ ଶାସନଭୁକ୍ତ ହୋଇଗଲା ।

ଏହା ପରେ ଧାରବାରର ଶାସକ ଥମାସ୍ ମୁନ୍‌ରୋ ରୁଦ୍ରସର୍ଜାଙ୍କୁ ଡକାଇ ତାଙ୍କ ସହିତ 28 ଜୁଲାଇ 1818ରେ ଗୋଟିଏ ରାଜିନାମା କଲେ । ଏହାର ସର୍ତ୍ତ ଥିଲା କିତ୍ତୁର ରାଜା 1,75,000 ଟଙ୍କାର ବାର୍ଷିକ କର ଦେଇ ସେହି ଅଞ୍ଚଳକୁ ନିଜ ଅଧିକାରରେ ରଖିପାରନ୍ତି । ମାତ୍ର ପରିଣାମରେ କିତ୍ତୁର ରାଜାଙ୍କୁ ଖାନାପୁର ତାଲୁକ ଇଂରେଜମାନଙ୍କୁ ଛାଡ଼ିଦେବାକୁ ପଡ଼ିବ । ଇଂରେଜମାନେ ସେଠାରେ ନିଜର ସୈନ୍ୟ ରଖିବେ ଏବଂ ତା'ର ଆୟରେ ସେମାନଙ୍କ ଖର୍ଚ୍ଚ ଚଳାଇବେ । ମୁନ୍‌ରୋ ରୁଦ୍ରସର୍ଜାଙ୍କ ସହିତ ସର୍ବଦା ସମ୍ମାନଜନକ ବ୍ୟବହାର କରାଯିବ ବୋଲି ଆଶ୍ୱାସନା ଦେଲେ ତଥା ଇଂରେଜ ସ୍ୱାର୍ଥବିରୋଧୀ କୌଣସି କାର୍ଯ୍ୟ ନକଲା ପର୍ଯ୍ୟନ୍ତ କିତ୍ତୁରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରାଯିବ ନାହିଁ ବୋଲି ମଧ୍ୟ ପ୍ରତିଶ୍ରୁତି ଦେଲେ ।

ଇଂରେଜମାନଙ୍କ ଖାନାପୁର ସମର୍ପଣ ଏକ ହୀନ ସର୍ତ୍ତ ଥିଲା । କାରଣ ସେହି ଅଞ୍ଚଳ ସାମରିକ ଦୃଷ୍ଟିରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା ତଥା ତାହାର ଆୟ ମଧ୍ୟ ଉପେକ୍ଷଣୀୟ ନଥିଲା । ରାଣୀ ଚେନ୍ନାମ୍ମା ଏଥି ନିମନ୍ତେ ଅତ୍ୟନ୍ତ ଚିନ୍ତିତ ଥିଲେ, ମାତ୍ର ତାଙ୍କର କିଛି କରିବାର ମଧ୍ୟ ନଥିଲା । ସେ କଲମଠର ପୂଜ୍ୟପାଦ ସ୍ୱାମୀଜୀଙ୍କ ସହିତ ଏ ବିଷୟରେ ବିସ୍ତୃତ ଆଲୋଚନା କରି ଏହି ସିଦ୍ଧାନ୍ତରେ ପହଞ୍ଚିଲେ ଯେ ବର୍ତ୍ତମାନ ପାଇଁ ଇଂରେଜମାନଙ୍କ ଉପରେ ସତର୍କ ଦୃଷ୍ଟି ରଖାଯାଉ ଏବଂ ସେମାନଙ୍କୁ ପରାଭବ ଦେବା ନିମନ୍ତେ ଉପଯୁକ୍ତ ଅବସରର ପ୍ରତୀକ୍ଷା କରାଯାଉ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା, ବିବେକ ହିଁ ହେଉଛି ଶୌର୍ଯ୍ୟର ଅପରିହାର୍ଯ୍ୟ ଅଙ୍ଗ । ଚେନ୍ନାମ୍ମା ଅସହାୟ ଥିଲେ, ମାତ୍ର ଉଦ୍ୟମହୀନ ନଥିଲେ । ଏହି ସମୟରେ ସେ ଦରବାରରୁ ଗୋଷ୍ଠୀ ବିବାଦ ଦୂର କରିବା ନିମନ୍ତେ ଚେଷ୍ଟା କରିଥିଲେ । ଶାସନ ସଂକ୍ରାନ୍ତରେ ରୁଦ୍ରସର୍ଜାଙ୍କୁ ନାନା ପରାମର୍ଶ ଦେଉଥିଲେ; ପୁଣି ତାଙ୍କ ମଧ୍ୟରେ ଦେଶପ୍ରୀତି, ସାହସ ଏବଂ ଆତ୍ମବିଶ୍ୱାସ ସୃଷ୍ଟି କରିବା ନିମନ୍ତେ ପ୍ରଯତ୍ନଶୀଳ ମଧ୍ୟ ଥିଲେ । ଅପର ପକ୍ଷରେ ଇଂରେଜମାନେ ସତର୍କ ଦୃଷ୍ଟିରେ କିତ୍ତୁର ପ୍ରତି ଲକ୍ଷ୍ୟ ରଖି ହସ୍ତକ୍ଷେପ ନିମନ୍ତେ ଉପଯୁକ୍ତ ଅବସରର ପ୍ରତୀକ୍ଷା କରୁଥିଲେ । ମାତ୍ର ରାଣୀ ଚେନ୍ନାମ୍ମାଙ୍କ ଚତୁର ବ୍ୟବସ୍ଥା ଏହାକୁ ଫଳବତୀ ହେବାକୁ ଦେଇ ନଥିଲା ।

ସମୟ ଗଡ଼ିଚାଲିବା ସଙ୍ଗେସଙ୍ଗେ ରାଣୀ କ୍ରମଶଃ ଶାସନ କାର୍ଯ୍ୟର ଅଧିକାଂଶ ଦାୟିତ୍ୱ ନିଜ ନିୟନ୍ତ୍ରଣକୁ ନେଇଗଲେ । ତାଙ୍କଠାରେ ଯୌବନ ସହିତ ସାହସ ତଥା ବୁଦ୍ଧିମତ୍ତାର ଏକ ଅପୂର୍ବ ସମନ୍ୱୟ ହୋଇଥିଲା । ଦେଖିବାକୁ ସେ ବେଶ୍ ଆକର୍ଷଣୀୟା ଥିଲେ । ଏହା ସହିତ ଅସୀଚାଳନା, ଅଶ୍ୱାରୋହଣ, ଧନୁର୍ବିଦ୍ୟା ତଥା ରାଜନୀତିରେ ମଧ୍ୟ ସେ ବେଶ୍ ପଟୁ ଥିଲେ । ଶାସନ ସଂକ୍ରାନ୍ତ ଆଲୋଚନା-ସଭା ପରିଚାଳନାରେ ତାଙ୍କର ଦକ୍ଷତା ଥିଲା ଅତୁଳନୀୟ । ରାଜ୍ୟ ନିମନ୍ତେ ହିତକାରୀ ତାତ୍କାଳିକ ନିଷ୍ପତ୍ତି ଗ୍ରହଣ ତାଙ୍କର ଅନ୍ୟ ଏକ ଯୋଗ୍ୟତା ଥିଲା । ତେଣୁ ଅତି ଅଳ୍ପ କାଳ ମଧ୍ୟରେ କିତ୍ତୁର ପୁନର୍ବାର ବିକାଶ ପଥରେ ଆଗେଇ ଚାଲିଲା । ରାଣୀ ଚେନ୍ନାମ୍ମାଙ୍କ ଖ୍ୟାତି ଚାରିଆଡ଼େ ବ୍ୟାପିଗଲା । ସେ ନିଜର ସୈନ୍ୟବାହିନୀକୁ ସର୍ବଦା ଯୁଦ୍ଧ ନିମନ୍ତେ ପ୍ରସ୍ତୁତ କରି ରଖିଲେ ।

ଏଥିରେ ଇଂରେଜମାନେ ଅସ୍ୱସ୍ତି ବୋଧକରିବା ସ୍ୱାଭାବିକ । ଗୋଟିଏ କ୍ଷୁଦ୍ର ଦେଶୀୟ ରାଜ୍ୟର ଏହି ଅଭାବିତ ସମୃଦ୍ଧି ସେମାନଙ୍କୁ ଆତଙ୍କିତ କରିପକାଇଥିଲା । ଦକ୍ଷିଣାଞ୍ଚଳରେ ଏହା ହିଁ ଥିଲା ସର୍ବାଧିକ ସମ୍ପନ୍ନ ରାଜ୍ୟ । ଇଂରେଜମାନଙ୍କର ଆହୁରି ଆଶଙ୍କା ଥିଲା ଯେ, ଅଚିରେ ଯଦି ଏହି ରାଜ୍ୟକୁ ପଦାନତ କରାନଯାଏ, ତେବେ କିତ୍ତୁର ହୁଏତ ଅଦୂର ଭବିଷ୍ୟତ୍‌ରେ ଦକ୍ଷିଣାଞ୍ଚଳ ରାଜ୍ୟ ସମୂହର ଏକ ଶକ୍ତିଶାଳୀ ଗୋଷ୍ଠୀ ପ୍ରସ୍ତୁତକରି ଇଂରେଜମାନଙ୍କ ନିମନ୍ତେ ଭୟଙ୍କର ବିପଦ ସୃଷ୍ଟି କରିପାରେ ।

1822ରେ ଧାରବାରର ଶାସନ ମୁଖ୍ୟ କଲେକ୍ଟର ଥାକ୍‌ରେ କିତ୍ତୁର ରାଜାଙ୍କୁ ଖଣ୍ଡିଏ ପତ୍ର ଲେଖି

ଅଭିଯୋଗ କଲେ ଯେ, କିତ୍ତୁରରେ ଚୋର ଡକାୟତମାନଙ୍କୁ ଆଶ୍ରୟ ଦିଆଯାଉଛି ତଥା ଏହି କାରଣରୁ ସେ ଅଞ୍ଚଳର ଶାନ୍ତି ବ୍ୟାହତ ହେଉଛି । ଏହାର ପରିଣାମ ଭୟଙ୍କର ହୋଇପାରେ ବୋଲି ସେ ପ୍ରକାରାନ୍ତରେ ଧମକ ଦେଇଥିଲେ । ଏହି କାଳ୍ପନିକ ଅଭିଯୋଗର କୌଣସି ସତ୍ୟତା ନଥିଲା ଏବଂ ଇଂରେଜମାନେ ଯେ କଳେବଳେ କୌଶଳେ କିତ୍ତୁର ଗ୍ରାସ କରିବାକୁ ଚାହୁଁଛନ୍ତି, ଏହା ସ୍ପଷ୍ଟ ଜଣାପଡ଼ିଯାଇଥିଲା । ଯାହାହେଉ, ଏହି ହସ୍ତକ୍ଷେପ ସାମୟିକ ବନ୍ଦ ହୋଇଯାଇଥିଲା । ହୁଏତ ଇଂରେଜମାନଙ୍କର ଆଶଙ୍କା ହୋଇଥିଲା ଯେ, ଏହି ପଦକ୍ଷେପ ଦକ୍ଷିଣାଞ୍ଚଳ ରାଜ୍ୟ ସମୂହର ଏକ ଶକ୍ତିଶାଳୀ ଗୋଷ୍ଠୀ ନିର୍ମାଣରେ ଅଧିକ ସହାୟକ ହେବ । ତେଣୁ ସେମାନେ ଏହି ହସ୍ତକ୍ଷେପ ନିମନ୍ତେ ଉପଯୁକ୍ତ ଅବସରର ପ୍ରତୀକ୍ଷା କରିବାକୁ ଲାଗିଲେ ।

କିଛି ଦିନ ପର୍ଯ୍ୟନ୍ତ କିତ୍ତୁରର ଜୀବନଯାତ୍ରା ଶାନ୍ତିପୂର୍ଣ୍ଣ ରହିଲା । ବାଣିଜ୍ୟ ବ୍ୟବସାୟର ଉନ୍ନତି ଘଟିଲା । ଯେକୌଣସି ପରିସ୍ଥିତିର ମୁକାବିଲା ପାଇଁ ସେନାବାହିନୀକୁ ପ୍ରସ୍ତୁତ କରି ରଖାଗଲା । ପ୍ରତିଦ୍ୱନ୍ଦ୍ୱୀ ଗୋଷ୍ଠୀମାନଙ୍କ ମତପାର୍ଥକ୍ୟ ପ୍ରାୟ ଦୂର ହୋଇଗଲା ଏବଂ ରାଣୀ ଚେନ୍ନମ୍ମା ରାଜକାର୍ଯ୍ୟ ଉପରେ ଅଖଣ୍ଡ ପ୍ରଭୁତ୍ୱ ବିସ୍ତାର କଲେ । ରୁଦ୍ରସର୍ଜା ଯକ୍ଷ୍ମାପୀଡ଼ିତ ଥିବାରୁ ତାଙ୍କ ସ୍ୱାସ୍ଥ୍ୟରେ ଦ୍ରୁତ ଅବନତି ହେଉଥିଲା । ସେ କେବଳ ନାମକୁ ମାତ୍ର ଶାସନମୁଖ୍ୟ ଥିବା ଅବସ୍ଥାରେ 1824 ମସିହାରେ ତାଙ୍କର ମୃତ୍ୟୁ ହେଲା । ରାଣୀ ଚେନ୍ନମ୍ମା ଏହା ପରେ ହେଲେ କିତ୍ତୁରର ସମ୍ରାଜ୍ଞୀ ।

# ରାଣୀ ଚେନ୍ନମ୍ମା

ପୂର୍ବ ଅଧ୍ୟାୟରେ ସୂଚିତ ମଲ୍ଲସର୍ଜାଙ୍କର ଥିଲେ ଦୁଇ ରାଣୀ - ରୁଦ୍ରମ୍ମା ଏବଂ ଚେନ୍ନାମ୍ମା । ରୁଦ୍ରମ୍ମା ଥିଲେ ତଲ୍ଲୁରର ପ୍ରସିଦ୍ଧ ଦେଶାଇ ପରିବାରର କନ୍ୟା । ଏହି ବଂଶ ଏବେ ମଧ୍ୟ ସେଠାରେ ରହିଛି । ରୁଦ୍ରମ୍ମା ସ୍ୱୟଂ ଜଣେ ଯୁଦ୍ଧବିଦ୍ୟା ବିଶାରଦ ମହିଳା ଥିଲେ । କେତେକ ଅଭିଲେଖରୁ ପ୍ରମାଣ ମିଳେ ଯେ ସେ ଦେଶନୂର ଯୁଦ୍ଧରେ ଟିପୁ ସୁଲତାନ୍‌ଙ୍କ ବିରୁଦ୍ଧରେ ଯୁଦ୍ଧକରି ଟିପୁଙ୍କ ସେନାବାହିନୀକୁ ଅସ୍ତବ୍ୟସ୍ତ କରିଦେଇଥିଲେ । ଦେଶାଇ ପରିବାରର ପରମ୍ପରାନୁସାରେ ତାଙ୍କର ଶିକ୍ଷାଦୀକ୍ଷା ହୋଇଥିଲା । ସେ ଉର୍ଦ୍ଦୁ ଏବଂ ପାରସୀ ଜାଣିଥିଲେ ଏବଂ ଶାସନ ସଂକ୍ରାନ୍ତ ପତ୍ର ଲେଖନରେ ମଲ୍ଲସର୍ଜାଙ୍କୁ ସାହାଯ୍ୟ କରୁଥିଲେ । ମଲ୍ଲସର୍ଜା ଏବଂ ଟିପୁଙ୍କ ମଧ୍ୟରେ ଯେଉଁ ପତ୍ର ବିନିମୟ ହୋଇଥିଲା, ତନ୍ମଧ୍ୟରୁ ଅଧିକାଂଶ ଥିଲା ରୁଦ୍ରମ୍ମାଙ୍କ ରଚନା । ଚେନ୍ନମ୍ମା ଥିଲେ ମଲ୍ଲସର୍ଜାଙ୍କର ଦ୍ୱିତୀୟ ପତ୍ନୀ । ପ୍ରଶ୍ନ ହୋଇପାରେ, ରୁଦ୍ରମ୍ମାଙ୍କ ଭଳି ଏକ ଗୁଣବତୀ ପତ୍ନୀ ଥାଉଁ ଥାଉଁ ମଲ୍ଲସର୍ଜା ଦ୍ୱିତୀୟ ବିବାହ କାହିଁକି କରିଥିଲେ ? ଚେନ୍ନାମ୍ମାଙ୍କ ସହିତ ମଲ୍ଲସର୍ଜାଙ୍କର ପ୍ରଥମ ମିଳନର କାହାଣୀ ଅନେକ ଲୋକଗୀତରେ ବର୍ଣ୍ଣିତ ହୋଇଛି ।

ଲୋକକଥାରୁ ଜଣାଯାଏ, ବେଶ୍ ଏକ ନାଟକୀୟ ପରିସ୍ଥିତିରେ ଉଭୟଙ୍କର ସାକ୍ଷାତ୍ ହୋଇଥିଲା । ମଲ୍ଲସର୍ଜା ଥିଲେ ଦକ୍ଷିଣାଞ୍ଚଳର କେତେକ ଜମିଦାରଙ୍କ ଅସ୍ୱୀକୃତ ନେତା । ଟିପୁ ଏବଂ ପେଶବାଙ୍କ ସହିତ ନିରନ୍ତର ସଂଗ୍ରାମ ତାଙ୍କୁ ସର୍ବଦା ଚିନ୍ତିତ କରୁଥିଲା ଏବଂ ପରିଣାମରେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟଗୁଡ଼ିକର ସ୍ଥିତି ଅତ୍ୟନ୍ତ ଦୟନୀୟ ହୋଇପଡ଼ିଥିଲା । ଏହା ବ୍ୟତୀତ, ଦୁଇ ଶକ୍ତିଶାଳୀ ପ୍ରତିଦ୍ୱନ୍ଦ୍ୱୀ ଗୋଷ୍ଠୀଙ୍କର ନିରନ୍ତର ସଂଗ୍ରାମ ବିଦେଶୀ ଆକ୍ରମଣକାରୀ, ବିଶେଷକରି ଇଂରେଜମାନଙ୍କୁ ଏହି ଦୁର୍ଭାଗ୍ୟପୂର୍ଣ୍ଣ ପରିସ୍ଥିତିର ପୂର୍ଣ୍ଣ ସୁଯୋଗ ନେଇ ଉଭୟ ପକ୍ଷକୁ ଦୁର୍ବଳ କରିଦେବାର ଅନୁକୂଳ ପରିବେଶ ସୃଷ୍ଟି କରିଥିଲା । ମଲ୍ଲସର୍ଜା ଥିଲେ ଜଣେ ମହାନ୍ ଦେଶଭକ୍ତ । ଇଂରେଜମାନଙ୍କ ଶକ୍ତିବୃଦ୍ଧି ତାଙ୍କ ନିମନ୍ତେ ରୁଚିକର ନଥିଲା । ଟିପୁ ତଥା ପେଶବାଙ୍କ ଭଳି ବୃହତ୍ ଶକ୍ତି ଇଂରେଜମାନଙ୍କ ପାଲରେ ପଡ଼ିବା ଦେଖି ସେ ଅତ୍ୟନ୍ତ ଦୁଃଖିତ ହୋଇଥିଲେ । କୋହ୍ଲାପୁର ସମେତ ଅନ୍ୟ ସମସ୍ତ ରାଜ୍ୟମାନଙ୍କୁ ନେଇ ଏକ ଶକ୍ତିଶାଳୀ ଗୋଷ୍ଠୀ ନିର୍ମାଣ କରିବାକୁ ସେ ଚାହୁଁଥିଲେ । ଏହି ମିଳିତ ଶକ୍ତିକୁ ଇଂରେଜମାନଙ୍କ ବିରୁଦ୍ଧରେ ଠିଆ କରିବାର କାମନା ତାଙ୍କର ଥିଲା । ଇଂରେଜମାନଙ୍କୁ କୌଣସି ସୁରାକ ନଦେଇ ଚୁପ୍‌ଚାପ୍ ଏହି କାର୍ଯ୍ୟଟିକୁ କରିବା ନିମନ୍ତେ ସେ ଚାହୁଁଥିଲେ । ତେଣୁ ସେ ଦକ୍ଷିଣାଞ୍ଚଳର କେତେକ ଦେଶାଇ ତଥା ରାଜ-ପ୍ରମୁଖମାନଙ୍କ ସହିତ ଯୋଗାଯୋଗ ଆରମ୍ଭ କଲେ । ଏହିଭଳି ଏକ ଯାତ୍ରାରେ ସେ ବେଲଗାଁଓ ଜିଲ୍ଲାର ଏକ କ୍ଷୁଦ୍ର ଜମିଦାରି କାକତିଠାରେ ଉପସ୍ଥିତ ହେଲେ । ଘୁଲ୍ଲପ୍ପା ଗୌଡ଼ ଦେଶାଇ ଥିଲେ ଏହାର ଶାସକ ଏବଂ ସେ କର୍ଣ୍ଣାଟକର ଉତ୍ତରାଞ୍ଚଳର ଜଣେ ଶକ୍ତିଶାଳୀ ବ୍ୟକ୍ତି ଥିଲେ । ସେହି ସମୟରେ କାକତି ସାଙ୍ଗ୍‌ଲି ସହିତ ସାମିଲ ଥିଲା । ମଲ୍ଲସର୍ଜା କାକତି ନିକଟବର୍ତ୍ତୀ ଏକ ସ୍ଥାନରେ ଘୁଲ୍ଲପ୍ପାଙ୍କ ସହିତ ସାକ୍ଷାତ୍ କରିବା ନିମନ୍ତେ ତାଙ୍କୁ ସମ୍ବାଦ ପ୍ରେରଣ କରି ଉତ୍ତର ପ୍ରତୀକ୍ଷାରେ ଗୋଟିଏ ଦିନ ରହିଲେ ।

ଗ୍ରାମବାସୀମାନେ ସମ୍ବାଦ ଦେଲେ ଯେ, ସେହି ଅଞ୍ଚଳ ଏକ ନରଭକ୍ଷୀ ବ୍ୟାଘ୍ରର କ୍ରୀଡ଼ାକ୍ଷେତ୍ର ହୋଇଛି । ଫଳରେ କୃଷକମାନେ ନିତାନ୍ତ ଆତଙ୍କିତ ହୋଇପଡ଼ିଛନ୍ତି । ଏହି ନରଖାଦକକୁ ହତ୍ୟାକରି ସେମାନଙ୍କୁ ଆତଙ୍କମୁକ୍ତ କରିବା ନିମନ୍ତେ ସେମାନେ ମଲ୍ଲସର୍ଜାଙ୍କୁ ନିବେଦନ କଲେ । ମଲ୍ଲସର୍ଜା ଏକ କ୍ଷୁଦ୍ର ବାହିନୀ ନେଇ ବ୍ୟାଘ୍ର ଅନ୍ୱେଷଣରେ ନିର୍ଗତ ହେଲେ । ଗୋଟିଏ ମାତ୍ର ଶରାଘାତରେ ବୀର ମଲ୍ଲସର୍ଜା ସେହି ଦୁର୍ଦ୍ଦାନ୍ତ ବ୍ୟାଘ୍ରକୁ ହତ୍ୟା କରିବାରେ ସମର୍ଥ ହୋଇଥିଲେ । ଆହତ ବ୍ୟାଘ୍ର ନିକଟରେ ଏକ ସଶସ୍ତ୍ର ରମଣୀଙ୍କୁ ଦେଖି ତାଙ୍କର ବିସ୍ମୟର ଠିକଣା ରହିଲା ନାହିଁ । ଅପରିଚିତା ସେହି ମୃତ ବ୍ୟାଘ୍ର ଉପରେ ନିଜର ନାମ ଘୋଷଣା କରି ତାଙ୍କ ଶିକାର କ୍ରୀଡ଼ାରେ ଅଯଥା ହସ୍ତକ୍ଷେପ କରିଥିବାରୁ ମଲ୍ଲସର୍ଜାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ । ମଲ୍ଲସର୍ଜା ଏହି ରୂପବତୀ, ସୁଗଠିତା, ସୁଲକ୍ଷଣା କନ୍ୟା ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ସେତେବେଳେ ଚେନ୍ନାମ୍ମାଙ୍କର ପୂର୍ଣ୍ଣ ଯୌବନ । ବୟସ 22 । ଘୁଲ୍ଲପା ଗୌଡ଼ ଏବଂ ପଦ୍ମାବତୀଙ୍କର ଏହି ସୁନ୍ଦରୀ କନ୍ୟା 1778ରେ ଜନ୍ମ ହୋଇଥିଲେ ।

ମୁଗ୍ଧ ମଲ୍ଲସର୍ଜା ବାରମ୍ବାର ସ୍ତବ୍ଧଚକିତ ଦୃଷ୍ଟିରେ ତାଙ୍କ ଆଡ଼କୁ ଅନାଇବାକୁ ଲାଗିଲେ । ବ୍ୟାଘ୍ର ଦେହରେ ଦୁଇଟି ତୀର ଲାଗିରହିଥିଲା । ତରୁଣୀଙ୍କର ଦାବି ଥିଲା ଯେ ତାଙ୍କରି ଶରାଘାତରେ ବ୍ୟାଘ୍ରର ମୃତ୍ୟୁ ହୋଇଛି । ତାଙ୍କ ପ୍ରଭାବଶାଳୀ ସୌନ୍ଦର୍ଯ୍ୟ ଯେ ରାଜାଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲା ଏହା ନକହିଲେ ଚଳିବ । ମଲ୍ଲସର୍ଜା ତାଙ୍କୁ ଆପଣାର ହୃଦୟ ଦେଇବସିଲେ । ତରୁଣୀ ଘୁଲ୍ଲପ୍ପାଙ୍କର କନ୍ୟା - ଏହା ଜାଣି ସେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ମୃତ ବ୍ୟାଘ୍ରକୁ ଚେନ୍ନମ୍ମାଙ୍କୁ ଅର୍ପଣ କରିଦେଇ ମଲ୍ଲସର୍ଜା ତାଙ୍କ ସାହସ ଓ ବୀରତ୍ୱର ପ୍ରଚୁର ପ୍ରଶଂସା କଲେ । ଉତ୍‌ଫୁଲ୍ଲିତ ହୃଦୟରେ ଚେନ୍ନମ୍ମା ଏହି ପ୍ରଶଂସା ଗ୍ରହଣ କଲେ ଏବଂ ମଲ୍ଲସର୍ଜା ପରଦିନ ତାଙ୍କ ଗୃହକୁ ଆସୁଛନ୍ତି ଜାଣି ଆନନ୍ଦିତା ହେଲେ । ମଲ୍ଲସର୍ଜାଙ୍କ ପୌରୁଷବ୍ୟଞ୍ଜକ ସୌନ୍ଦର୍ଯ୍ୟ ତଥା ପ୍ରଭାବଶାଳୀ ବ୍ୟକ୍ତିତ୍ୱ ମଧ୍ୟ ଚେନ୍ନାମ୍ମାଙ୍କୁ କମ୍ ଆକୃଷ୍ଟ କରିନଥିଲା । ବିଦାୟ ନେବା ପୂର୍ବରୁ ଚେନ୍ନମ୍ମା ଘୋଷଣା କଲେ ଯେ, ସେ ନିଜ ଘରେ ମଲ୍ଲସର୍ଜାଙ୍କୁ ସ୍ୱାଗତ ଜଣାଇବା ନିମନ୍ତେ ଉତ୍ସୁକ ହୃଦୟରେ ଅପେକ୍ଷା କରିବେ ।

ଦ୍ୱିତୀୟ ଦିନ ମଲ୍ଲସର୍ଜା ଘୁଲ୍ଲପ୍ପାଙ୍କ ଗୃହରେ ପହଞ୍ଚି ବିଦେଶୀ ଶକ୍ତି ବିରୁଦ୍ଧରେ ଏକ ମିଳିତ ଗୋଷ୍ଠୀ ଗଠନ ସମ୍ପର୍କରେ ବିସ୍ତୃତ ଆଲୋଚନା କଲେ । ଦକ୍ଷିଣାଞ୍ଚଳର ଏକ ଶକ୍ତି ଇଂରେଜ, ଫରାସୀ ତଥା ପର୍ତ୍ତୁଗାଲ ପ୍ରଭୃତି ବୈଦେଶିକ ଶକ୍ତି ବିରୁଦ୍ଧରେ କିଭଳି ଏକ ହୋଇ ଠିଆ ହୋଇପାରିବ, ଏ ବିଷୟରେ ନିଜ ଯୋଜନାର ଟିକିନିଖି ବ୍ୟାପାର ତାଙ୍କୁ ବୁଝାଇଦେଲେ । ଏହାପରେ ସେ ଚେନ୍ନମ୍ମାଙ୍କ ସହିତ ତାଙ୍କର ଆକସ୍ମିକ ସାକ୍ଷାତ୍ ବିଷୟରେ ଉଲ୍ଲେଖ କରି ତାଙ୍କୁ ବିବାହ କରିବାର ଇଚ୍ଛା ପ୍ରକାଶ କଲେ । ଏହି ଅଭାବିତ ସୌଭାଗ୍ୟ ଘୁଲ୍ଲପ୍ପାଙ୍କୁ ଯଥେଷ୍ଟ ସନ୍ତୋଷ ପ୍ରଦାନ କରିଥିଲା । ଚେନ୍ନମ୍ମାଙ୍କ ସହିତ ପୁନର୍ବାର ମଲ୍ଲସର୍ଜାଙ୍କର ସାକ୍ଷାତ ହେଲା । ସେତେବେଳେ ମଲ୍ଲସର୍ଜା ନିଜର ପ୍ରଥମ ବୀରାପତ୍ନୀ ରୁଦ୍ରମ୍ମାଙ୍କ ସମ୍ପର୍କରେ ତାଙ୍କୁ ସୂଚନା ଦେଇଥିଲେ । ଚେନ୍ନାମ୍ମା ଏଥିରେ ଅସନ୍ତୁଷ୍ଟ ନହୋଇ ତାଙ୍କର ଦ୍ୱିତୀୟା ପତ୍ନୀ ହେବା ନିମନ୍ତେ ପ୍ରସ୍ତୁତ ହୋଇଗଲେ । ସେତେବେଳେ ରାଜ ପରିବାରରେ ବହୁବିବାହ ନିନ୍ଦନୀୟ ନଥିଲା । ଚେନ୍ନମ୍ମା ଜ୍ୟେଷ୍ଠା ରାଣୀଙ୍କୁ ଅଗ୍ରଜାର ସମ୍ମାନ ଦେବେ ବୋଲି ସୂଚନା ଦେଇ କହିଲେ ଯେ, ଆଜୀବନ ସେ ରୁଦ୍ରମ୍ମାଙ୍କ ନିକଟରେ ବିନୀତା ହୋଇ ରହିବେ । ଏହା ପରେ ଯଥାଶୀଘ୍ର କାକତିରେ ବିବାହ ଉତ୍ସବ ପରିସମାପ୍ତ ହେଲା ଏବଂ ମଲ୍ଲସର୍ଜା ନିଜର ଅନନ୍ୟା ଦ୍ୱିତୀୟା ପତ୍ନୀଙ୍କୁ ନେଇ କିତ୍ତୁର ପ୍ରତ୍ୟାବର୍ତ୍ତନ କଲେ ।

ପରବର୍ତ୍ତୀ ବର୍ଷମାନଙ୍କରେ ଚେନ୍ନମ୍ମା ଏକନିଷ୍ଠ ହୋଇ ନିଜର ପ୍ରତିଶ୍ରୁତିଗୁଡ଼ିକୁ ପାଳନ କରିଥିଲେ । ରୁଦ୍ରମ୍ମା ଯଥାର୍ଥରେ ତାଙ୍କଠାରୁ ଅଗ୍ରଜାର ସ୍ନେହ ସମ୍ମାନ ଲାଭ କରିଥିଲେ । ରୁଦ୍ରମ୍ମା ପୁତ୍ର ଶିବଲିଙ୍ଗ

ରୁଦ୍ରସର୍ଜା (ବାପୁ ସାହେବ) ଓ ବୀର ରୁଦ୍ରସର୍ଜା (ବାବା ସାହେବ) ତଥା ନିଜର ପୁତ୍ର ଶିବ ବାସବରାଜ (ବାଲା ସାହେବ)ଙ୍କ ମଧ୍ୟରେ ସେ କୌଣସି ପାର୍ଥକ୍ୟ ଦେଖୁନଥିଲେ । ଶିବଲିଙ୍ଗ ରୁଦ୍ରସର୍ଜା ମଲ୍ଲସର୍ଜାଙ୍କର ଉତ୍ତରାଧିକାରୀ ହୁଅନ୍ତୁ, ଏହା ହିଁ ଥିଲା ଚେନ୍ନାମ୍ମାଙ୍କର ଏକାନ୍ତ କାମନା । ଦୁର୍ଭାଗ୍ୟକୁ ଏହି ସମୟରେ ସାମାନ୍ୟ ଅସୁସ୍ଥତାରେ ଶିବ ବାସବରାଜଙ୍କର ମୃତ୍ୟୁ ହେଲା । ଏହାର ଅଳ୍ପଦିନ ପରେ ବୀର ରୁଦ୍ରସର୍ଜା ମଧ୍ୟ ମୃତ୍ୟୁ ବରଣ କଲେ । ତେଣୁ ଶିବଲିଙ୍ଗ ରୁଦ୍ରସର୍ଜା ହିଁ ମଲ୍ଲସର୍ଜାଙ୍କର ଉତ୍ତରାଧିକାରୀ ହେଲେ ।

ରୁଦ୍ରମ୍ମା ଜଣେ ବିଦୁଷୀ ମହିଳା ଥିବାର ପୂର୍ବରୁ ସୂଚିତ ହୋଇଛି । କ୍ରମଶଃ ସେ ଧର୍ମ ଏବଂ ଦର୍ଶନ ମଧରେ ବୁଡ଼ିରହିଲେ । ଏହିଭଳି ଭାବରେ ସାଂସାରିକ ଜୀବନରୁ ଅବ୍ୟାହତି ନେଇ ସେ ପୂଜାପାଠରେ ଅଧିକ ସମୟ ଦେବାକୁ ଲାଗିଲେ । କଲମଠର ମହନ୍ତ ତାଙ୍କୁ ପ୍ରବଚନ, ମହାକାବ୍ୟ ତଥା ଅନ୍ୟାନ୍ୟ ଧର୍ମଶାସ୍ତ୍ର ଆଦି ଶୁଣାଉଥିଲେ । ରୁଦ୍ରମ୍ମା ଏଥର ରାଜଭବନ ପରିତ୍ୟାଗ କରି ସଙ୍ଗୋଲ୍ଲୀର ମଳପ୍ରଭା ନଦୀ କୂଳରେ ନିଜ ପାଇଁ ଗୋଟିଏ ଆଶ୍ରମ ନିର୍ମାଣ କରି ସେଠାରେ ଧ୍ୟାନ ଧାରଣାରେ ସମୟ କଟାଇବାକୁ ଲାଗିଲେ । ପାରିବାରିକ ତଥା ଶାସନ ସଂକ୍ରାନ୍ତ କେତେକ ଦାୟିତ୍ୱ ସ୍ୱାଭାବିକ ଭାବରେ ଚେନ୍ନମ୍ମାଙ୍କ ଉପରେ ନ୍ୟସ୍ତ ହେଲା ଏବଂ ସେ ମଧ୍ୟ ସ୍ୱଚ୍ଛନ୍ଦରେ ଏହାକୁ ତୁଲାଇବାକୁ ଲାଗିଲେ ।

ରାଜକାର୍ଯ୍ୟ ପରିଚାଳନାରେ ଚେନ୍ନମ୍ମାଙ୍କର ଗଭୀର ରୁଚି ଥିଲା । ସେ ଅନ୍ୟାୟ ଏବଂ ନିଷ୍ଠୁରତାକୁ ଆଦୌ ସହ୍ୟ କରିପାରୁନଥିଲେ । ଏହି ଗୁଣ ତାଙ୍କୁ ଖୁବ୍ ଶୀଘ୍ର ରାଜା ତଥା ପ୍ରଜା ଉଭୟଙ୍କ ନିକଟରେ ପ୍ରିୟ କରାଇଥିଲା । ରାଜ୍ୟ ଶାସନରେ ସେ ନିଜର ପତିଙ୍କୁ ସାହାଯ୍ୟ କରୁଥିଲେ । ଏହି ସମୟରେ ଦୁଇ ଶକ୍ତିଶାଳୀ ଶତ୍ରୁ ଇଂରେଜ ତଥା ମରହଟ୍ଟାମାନେ ମଲ୍ଲସର୍ଜାଙ୍କର ଗଭୀର ଉଦ୍‌ବେଗର କାରଣ ହୋଇପଡ଼ିଥିଲେ । ସେହି ଅଞ୍ଚଳରେ ରାଜନୈତିକ ଦାୟିତ୍ୱ ବହନ କରି ଚେନ୍ନାମ୍ମା ମଲ୍ଲସର୍ଜାଙ୍କୁ ଯଥେଷ୍ଟ ଉତ୍ସାହିତ କରିଥିଲେ । ସମସ୍ତ ପ୍ରକାର ଯୁଦ୍ଧାଭିଯାନରେ ସେ ମଲ୍ଲସର୍ଜାଙ୍କର ସଙ୍ଗିନୀ ଥିଲେ । ରାଜନୈତିକ ବିଚାର-ବିମର୍ଶ ସମୟରେ ରାଣୀ ଚେନ୍ନମ୍ମା ଦରବାରରେ ରାଜାଙ୍କ ନିକଟରେ ଉପସ୍ଥିତ ରହୁଥିଲେ । ଏହିଭଳି ସେ ଥିଲେ ଯଥାର୍ଥରେ ନିଜ ପତିଙ୍କର 'ବନ୍ଧୁ, ଦାର୍ଶନିକ ଏବଂ ଦିଗ୍‌ଦର୍ଶକ' । ଏହି କାରଣରୁ ହିଁ ମଲ୍ଲସର୍ଜାଙ୍କର ମୃତ୍ୟୁ ପରେ ରାଜନୈତିକ ଶକ୍ତି ସ୍ୱଚ୍ଛନ୍ଦ ଭାବରେ ତାଙ୍କ ନିକଟକୁ ଆସିଥିଲା ଏବଂ ଅନାୟାସରେ ମଧ ସେ ଶାସନ ଦାୟିତ୍ୱ ବହନ କରିଥିଲେ । ଯେକୌଣସି ରାଜନୈତିକ ସମସ୍ୟାକୁ ସେ ଗଭୀର ଭାବରେ ଅନୁଧ୍ୟାନ କରୁଥିଲେ । ବୁଦ୍ଧିମତୀ ଥିବାରୁ ସେସବୁକୁ ସେ ଭଲ ଭାବରେ ବୁଝିପାରୁଥିଲେ । ତତ୍କାଳୀନ ରାଜନୀତିରେ ତାଙ୍କର ଯଥେଷ୍ଟ ପ୍ରବେଶ ଥିଲା । ସେ ପ୍ରଜାମାନଙ୍କୁ ପୁତ୍ରବତ୍ ସ୍ନେହ କରୁଥିଲେ ତଥା ଘନିଷ୍ଠ ଭାବରେ ସେମାନଙ୍କ ସହ ମିଳାମିଶା କରୁଥିଲେ । ସେମାନଙ୍କ ସୁଖ ଦୁଃଖ, ସମସ୍ୟାଦି ସହିତ ସେ ଅପରିଚିତା ନଥିଲେ । ତୁରନ୍ତ ନିଷ୍ପତ୍ତି ଗ୍ରହଣ କରିବାରେ ସେ ଅତୁଳନୀୟା ଥିଲେ । ଦୀନ ଦରିଦ୍ରଙ୍କ ସହାୟତା ନିମନ୍ତେ ସେ ନିଜକୁ ସମ୍ପୂର୍ଣ୍ଣ ଭାବରେ ଉତ୍ସର୍ଗ କରିଦେଇଥିଲେ । ନିଜର ସେନାବାହିନୀ ତଥା ସେନାପତିଙ୍କ ସହିତ ତାଙ୍କର ନିବିଡ଼ ସମ୍ପର୍କ ରହିଥିଲା ।

# ଦତ୍ତକ ଗ୍ରହଣର ପ୍ରସ୍ତାବ

ଇଂରେଜମାନେ କିତ୍ତୁରକୁ ଅଧୀନସ୍ଥ କରିବା ନିମନ୍ତେ, ଅନ୍ତତଃ ତାହାର କାର୍ଯ୍ୟକଳାପରେ ହସ୍ତକ୍ଷେପ କରିବା ନିମନ୍ତେ ଉପଯୁକ୍ତ ସୁଯୋଗ ପ୍ରତୀକ୍ଷାରେ ରହିଥିଲେ । ତେଣୁ ଶାସନ ସଂକ୍ରାନ୍ତ ସମସ୍ତ ଗତିବିଧି ଉପରେ ସେମାନଙ୍କର ଶ୍ୟେନଦୃଷ୍ଟି ରହିଥିଲା । ଏଣେ ନାମକୁମାତ୍ର ଶାସନମୁଖ୍ୟ ଥିବା ଶିବଲିଙ୍ଗ ଦୀର୍ଘ ସମୟ ଧରି ଅସୁସ୍ଥ ରହୁଥିଲେ । ରାଣୀ ଚେନ୍ନାମ୍ମା ଅବଶ୍ୟ ଦୃଢ଼ ହସ୍ତରେ ଶାସନ ପରିଚାଳନା କରିଚାଲିଥିଲେ । ଧାରବାରର ଚିଫ୍ ପଲିଟିକାଲ୍ ଏଜେଣ୍ଟ ତଥା କଲେକ୍ଟର ଥାକ୍‌ରେ ଅସୁସ୍ଥ ଶିବଲିଙ୍ଗଙ୍କୁ ଦେଖିବା ବାହାନାରେ 14 ମେ 1824 ରେ କିତ୍ତୁର ଗସ୍ତକଲେ । ସାଥିରେ ସେ କିଛି ଔଷଧପତ୍ର ଆଣିଥିଲେ ଏବଂ ଶିବଲିଙ୍ଗଙ୍କ ସହିତ କିଛି ସମୟ କଟାଇଲେ । ସେତେବେଳେ ଉଭୟଙ୍କ ମଧ୍ୟରେ କିତ୍ତୁରର ଶାସନ ସଂକ୍ରାନ୍ତରେ କେତେକ କଥାବାର୍ତ୍ତା ହୋଇଥିଲା । ଶିବଲିଙ୍ଗ ସେ ସମୟରେ ପୋଷ୍ୟପୁତ୍ର ଗ୍ରହଣର ବାସନା ସମ୍ପର୍କରେ କୌଣସି ସୂଚନା ଦେଇ ନଥିଲେ, ଯଦିଓ ସେତେବେଳକୁ ସେ ଏ ବିଷୟରେ ଗଭୀର ଭାବରେ ଚିନ୍ତା କରୁଥିଲେ । କାରଣ ତାଙ୍କର ଦୁଇ ଭ୍ରାତା ମୃତ୍ୟୁବରଣ କରିସାରିଥିଲେ ତଥା ସେ ସ୍ୱୟଂ ଥିଲେ ନିଃସନ୍ତାନ । ତେଣୁ ତାଙ୍କ ମୃତ୍ୟୁ ପରେ କିତ୍ତୁରର ଦୁରବସ୍ଥାର କଳ୍ପନା ତାଙ୍କୁ ଦୁଶ୍ଚିନ୍ତାଗ୍ରସ୍ତକରି ରଖିଥିଲା । ବିବେକବନ୍ତ ହୋଇଥିବାରୁ ସେ ଥାକ୍‌ରେଙ୍କୁ ଏ ସମ୍ପର୍କରେ ସାମାନ୍ୟତମ ସୂଚନା ମଧ୍ୟ ଦେଲେନାହିଁ ।

କ୍ରମଶଃ ଶିବଲିଙ୍ଗଙ୍କ ସ୍ୱାସ୍ଥ୍ୟର ଦ୍ରୁତ ଅବନତି ହେବାକୁ ଲାଗିଲା ଏବଂ ଜୁନ୍ ମାସ ବେଳକୁ ତାଙ୍କର ଅବସ୍ଥା ଏପରି ଖରାପ ହୋଇଗଲା ଯେ, ସେ ନିଜର କେତେକ ବିଶ୍ୱାସପାତ୍ରଙ୍କୁ ଡକାଇ ସେମାନଙ୍କ ସମ୍ମୁଖରେ ପୋଷ୍ୟପୁତ୍ର ଗ୍ରହଣର ସିଦ୍ଧାନ୍ତ ଘୋଷଣା କଲେ । ସେହି ବୈଠକରେ ଭାଗନେଇଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଥିଲେ କନୂର ମଲ୍ଲପ୍ପା, କନୂର ବୀରପ୍ପା, ସୁବେଦାର ମଲ୍ଲପ୍ପା ତଥା ସର୍ଦ୍ଦାର ଗୁରୁ ସିଦ୍ଧପ୍ପା । ଶିବଲିଙ୍ଗ ଗୁରୁ ସିଦ୍ଧପ୍ପାଙ୍କୁ ଶାହପୁର ତାଲୁକର ସିନ୍ଧୋଲୀ, ମରିକଟୀ, ଖୋଡ଼ଣପୁର ତଥା ମସ୍ତମରଡ୍ଡୀ ଏବଂ ସୁବେଦାର ମଲ୍ଲପ୍ପାଙ୍କୁ ମରକୋଡ଼ ତାଲୁକର ଚିଲ୍‌କୋସ୍ ଯିବା ନିମନ୍ତେ ଆଦେଶ ଦେଲେ । ଉଦ୍ଦିଷ୍ଟ ରାଜପରିବାରମାନଙ୍କ ମଧ୍ୟରୁ କୌଣସି ଚାରି ପାଞ୍ଚ ବର୍ଷ ବୟସର ଏକ ବାଳକର ଅନ୍ୱେଷଣ ହିଁ ତାଙ୍କର ଆଶୟ ଥିଲା । ଏହିଭଳି ଏକ ବାଳକକୁ ସେ ନିଜର ଉତ୍ତରାଧିକାରୀ କରିବେ ବୋଲି ଠିକ୍ କରିଥିଲେ । ଗୁରୁ ସିଦ୍ଧପ୍ପା ସିଂନ୍ଧୋଲୀ ତଥା ମସ୍ତମରଡୀରୁ ଚାରୋଟି ବାଳକଙ୍କୁ ନେଇ କିତ୍ତୁରରେ ପହଞ୍ଚିଲେ । ସୁବେଦାର ମଲ୍ଲପ୍ପା କିନ୍ତୁ ଗୋଟିଏ ହେଲେ ଶିଶୁ ପାଇଲେ ନାହିଁ, କାରଣ ତତ୍ରତ୍ୟ ରାଜପରିବାରରେ ଏହି ବୟସର କୌଣସି ଶିଶୁ ନଥିଲେ । ଶିବଲିଙ୍ଗ ସିଦ୍ଧପ୍ପାଙ୍କ ଆନୀତ ବାଳକମାନଙ୍କ ମଧ୍ୟରୁ ମସ୍ତମରଡ୍ଡୀର ବଲ୍ଲପ୍ପାଗୌଡ଼ଙ୍କ ପୁତ୍ର ଶିବଲିଙ୍ଗପ୍ପାଙ୍କୁ ଏଥିନିମନ୍ତେ ନିର୍ବାଚନ କଲେ । ଅନୁମାନ କରାଯାଏ ଯେ, ନିର୍ବାଚିତ ବାଳକଟି ତେଜସ୍ୱୀ, ସୁସ୍ଥ ତଥା ବଳିଷ୍ଠ ଥିଲା । ଶିବଲିଙ୍ଗ କହିଲେ, ଯେତେବେଳେ ଅନ୍ତିମ ସମୟ ଆସିଯାଇଛି ବୋଲି ତାଙ୍କର ଦୃଢ଼

ବିଶ୍ୱାସ ହେବ, ସେତେବେଳେ ସେ ପୋଷ୍ୟପୁତ୍ର ଗ୍ରହଣର ସିଦ୍ଧାନ୍ତ ଘୋଷଣା କରିବେ । ଏହାପରେ ସେ ନିଜର ସିଦ୍ଧାନ୍ତ ସମ୍ପର୍କରେ ବାଳକର ପିତା ବଲ୍ଲପ୍ପାଗୌଡ଼ଙ୍କୁ ଏକ ପତ୍ର ଲେଖିଲେ । ମରାଠୀ ଭାଷାରେ ଲିଖିତ ସେହି ପତ୍ରର ଅନୁବାଦ ନିମ୍ନଭଳି :

> "ମୋର ନିଜର କୌଣସି ସନ୍ତାନ ନାହାନ୍ତି । ଆପଣଙ୍କ ପୁତ୍ର ଶିବଲିଙ୍ଗପ୍ପାଙ୍କୁ ଏଠାରେ ରଖି ଦତ୍ତକ ନେବାର ସିଦ୍ଧାନ୍ତ ମୁଁ ଗ୍ରହଣ କରିଛି । ମୋର ସ୍ୱାସ୍ଥ୍ୟ ଭଲ ନୁହେଁ । ତେଣୁ ପତ୍ର ପାଇବାମାତ୍ରେ ପୁଅକୁ ନେଇ ଆପଣ ଏଠାକୁ ଚାଲିଆସନ୍ତୁ ବୋଲି ଅନୁରୋଧ କରୁଛି । ରାଜକୀୟ ମର୍ଯ୍ୟାଦାରେ ମୁଁ ତାକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି, ରାଜ୍ୟଭାର ସମର୍ପଣ କରିବି । ମୋର ଭାଇମାନଙ୍କ ତରଫରୁ ଆପଣ ହେଉଛନ୍ତି ଆମର ନିକଟ ଆତ୍ମୀୟ ।"[1]

ଏହା ପରେ ସେ ନିଜର କେତେକ ନିକଟ ସମ୍ପର୍କୀୟଙ୍କର ଏକ ବୈଠକ ଡକାଇଲେ, କାରଣ ଏବେ ମଧ୍ୟ ସେ ନିଜର ସିଦ୍ଧାନ୍ତକୁ ବାହାରେ ପ୍ରକାଶ କରିବାକୁ ଚାହୁଁ ନଥିଲେ । ରାଜଦରବାର ଗୋଷ୍ଠୀବିବାଦମୁକ୍ତ ନଥିବାର ତାଙ୍କୁ ଜଣାଥିଲା । ପ୍ରତ୍ୟେକ ଦରବାରୀ ନିଜର ସନ୍ତାନକୁ ରାଜାଙ୍କ ପୋଷ୍ୟପୁତ୍ର ରୂପେ ଦେଖିବା ନିମନ୍ତେ ବ୍ୟଗ୍ର ଥିଲେ । ଦରବାରୀ ଷଡ଼ଯନ୍ତ୍ର ରାଜାଙ୍କ ଆତଙ୍କର କାରଣ ହୋଇଥିଲା । ପ୍ରୋକ୍ତ ବାଳକର ହସ୍ତ ଧାରଣକରି ରାଜା ବୈଠକରେ ଉପସ୍ଥିତ ହେଲେ ଏବଂ କହିଲେ, "ମୋ ବିଚାରରେ ଏହି ବାଳକ ମୋର ଉତ୍ତରାଧିକାରୀ ହେବା ନିମନ୍ତେ ସର୍ବଥା ଉପଯୁକ୍ତ । ଏହାକୁ ମୁଁ ଦତ୍ତକ ନେବାକୁ ସିଦ୍ଧାନ୍ତ କରିଛି । ଆପଣମାନେ ଏହାକୁ ଅନୁମୋଦନ କଲେ ସନ୍ତୁଷ୍ଟ ହେବି ।" ଉପସ୍ଥିତ ସମସ୍ତ ସମ୍ପର୍କୀୟ ବ୍ୟକ୍ତି ଏଥିରେ ସମ୍ମତ ହେଲେ । ଉଦ୍ଦିଷ୍ଟ ବାଳକ ଏଥର ରାଜପରିବାରରେ ସ୍ଥାନ ପାଇଲା ତଥା ରାଜକାର୍ଯ୍ୟରେ ଅଭ୍ୟସ୍ତ ହେବା ନିମନ୍ତେ ତାକୁ ସୁଯୋଗ ଦିଆଗଲା । ଜୁଲାଇ ପ୍ରଥମ ସପ୍ତାହରେ ଶିବଲିଙ୍ଗଙ୍କ ସ୍ୱାସ୍ଥ୍ୟ ଗୁରୁତର ହୋଇଉଠିଲା । 10 ଜୁଲାଇ 1824 ରେ ଶିବଲିଙ୍ଗ ଥାକରେଙ୍କୁ ଏକ ବିସ୍ତୃତ ପତ୍ର ଲେଖି ସେଥିରେ ନିଜର ପୋଷ୍ୟପୁତ୍ର ସଂକ୍ରାନ୍ତ ସିଦ୍ଧାନ୍ତ ସ୍ପଷ୍ଟ ଭାଷାରେ ବ୍ୟକ୍ତ କଲେ । ପତ୍ରର ସାରମର୍ମ ହେଉଛି :

> "ରୁଗ୍ଣ ତଥା ଦୁର୍ବଳ ହୋଇପଡ଼ିଥିବାରୁ ମୁଁ ମୋର ଉତ୍ତରାଧିକାରୀ ନିଯୁକ୍ତ କରିଯିବାକୁ ଚାହେଁ । ଏହି କାରଣରୁ ମୁଁ ମଲ୍ଲସର୍ଜା (ମୂଳ ନାମ ଦତ୍ତକପୁତ୍ର)କୁ ଦୁବ୍‌ଲିର ସରଦେଶାଇ, ସର ଦେଶପାଣ୍ଡେ ତଥା ନାଡ଼ଗୌଡ଼ ପ୍ରଭୃତି ଉପାଧିରେ ବିଧିବଦ୍ଧ ଭାବରେ ଭୂଷିତ କରିବାକୁ ଚାହେଁ । ରାଜ୍ୟର ଆଜମ ନଗର ସରୁପ୍, ଖାନାପୁର, ସରୁପ ଚାନ୍ଦଗଡ଼, ସରୁପ ସୂପା ଇତ୍ୟାଦିର ସରଦେଶାଇ ଏବଂ ସର ଦେଶପାଣ୍ଡେଭାବେ ମଲ୍ଲସର୍ଜା (ଦତ୍ତକପୁତ୍ର)କୁ ମୁଁ ଅଭିସିକ୍ତ କରିବି ।
>
> ଏହି ରାଜ୍ୟ ଆପଣଙ୍କ ଉଦାରତାରୁ ମୁଁ ଏବଂ ମୋର ପୂର୍ବଜ ବୃନ୍ଦ ନିଷ୍କଣ୍ଟକ ରୂପେ ଭୋଗ କରିଆସିଛୁଁ । ବର୍ତ୍ତମାନ ମୋର ଉତ୍ତରାଧିକାରୀ ସେଥିପାଇଁ ଆପଣଙ୍କ କୃପାପ୍ରାର୍ଥୀ ।"

ମାତ୍ର, ଇତିମଧ୍ୟରେ ଶିବଲିଙ୍ଗଙ୍କ ସ୍ୱାସ୍ଥ୍ୟରେ କିଛି ଉନ୍ନତି ଘଟିବାରୁ ପତ୍ରଟି ସେତେବେଳେ ଥାକରେଙ୍କୁ ପ୍ରେରିତ ହେଲାନାହିଁ । ଏହାପରେ ଦୁଇମାସ ପର୍ଯ୍ୟନ୍ତ ତାଙ୍କର ସ୍ୱାସ୍ଥ୍ୟ ପ୍ରାୟ ଭଲ ରହିଲା, କିନ୍ତୁ ସେପ୍ଟେମ୍ବର ପ୍ରଥମ ସପ୍ତାହକୁ ତାଙ୍କ ଦେହ ପୁଣି ଖରାପ ହେଲା । 11 ସେପ୍ଟେମ୍ବର 1824

---

1 ମରାଠୀ ଭାଷାରେ ରଚିତ ଏହି ପତ୍ରର ପଟୋଷ୍ଟାଟ୍ କର୍ଣ୍ଣାଟକ ସରକାର କର୍ତ୍ତୃକ 1962ରେ ପ୍ରକାଶିତ 'ହିଷ୍ଟ୍ରି ଅଫ୍ ଫ୍ରିଡମ୍ ମୁଭମେଣ୍ଟ୍ ଇନ୍ କର୍ଣ୍ଣାଟକ'ରେ ପ୍ରକାଶିତ ।

ବେଳକୁ ତାଙ୍କ ଅବସ୍ଥା ଅତ୍ୟନ୍ତ ଉଦବେଗଜନକ ହୋଇପଡ଼ିଲା ଏବଂ ତାଙ୍କର ସମୟ ଯେ ଶେଷ ହୋଇଆସୁଛି ଏଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । ସେଇଦିନ ଦିନ ଦୁଇଟା ବେଳକୁ ରାଜା ନିଜର ସର୍ଦ୍ଦାର ତଥା ଅନ୍ୟ ସହାୟକଙ୍କୁ ରୋଗଶଯ୍ୟା ନିକଟକୁ ଡକାଇ ପଠାଇ ଯଥାଶୀଘ୍ର ପୋଷ୍ୟପୁତ୍ର ଗ୍ରହଣ ଉତ୍ସବର ବ୍ୟବସ୍ଥା କରିବା ନିମନ୍ତେ ଆଦେଶ ଦେଲେ । ବାଳକଟିକୁ ଅଣାଗଲା ତଥା ପବିତ୍ର ସ୍ନାନାଦି ଔପଚାରିକ କ୍ରିୟା ପରେ ତାକୁ ସୁନା ମୋହର ଦ୍ୱାରା ସୁଶୋଭିତ କରାଯାଇ ଦେଶାଇ ବଂଶର ଅଧିକାର ଦିଆଗଲା । ତାହାର ନାମ ରଖାଗଲା ସବାଇ ମଲ୍ଲସର୍ଜା ତଥା କିତ୍ତୁରର ସର୍ବମୟ କର୍ତ୍ତୃତ୍ୱ ତାହାଠାରେ ଅର୍ପିତ ହେଲା ।[2]

ରାଣୀ ଚେନ୍ନମ୍ମା କିତ୍ତୁରର ଭବିଷ୍ୟତ୍ ନିମନ୍ତେ ଚିନ୍ତିତା ଥିଲେ । ଥାକରେ ତଥା କନ୍ନୁର ମଲ୍ଲପାଙ୍କ ଭଳି କତିପୟ ଦରବାରୀଙ୍କର ଷଡ଼ଯନ୍ତ୍ର ନିପୁଣତା ହିଁ ତାଙ୍କର ପ୍ରଧାନ ଚିନ୍ତାର କାରଣ ହୋଇଥିଲା । ଥାକରେଙ୍କୁ କିତ୍ତୁରର ଶାସନ ସଂକ୍ରାନ୍ତୀୟ କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରିବାର ସୁଯୋଗ ଦେବାକୁ ସେ ଆଦୌ ଚାହୁଁନଥିଲେ । ସେ କନ୍ନୁରମଲ୍ଲପା, ସର୍ଦ୍ଦାର ମଲ୍ଲପ୍ପ ଶେଟ୍ଟୀ, ଗୁରୁ ସିଦ୍ଧପ୍ପା, ହିମ୍ମତ ସିଂ, ନରସିଂ ରାଓ, ଗୁରୁପୁତ୍ର ବୀରପ୍ପା ଆଦି ପ୍ରଭାବଶାଳୀ ବ୍ୟକ୍ତିମାନଙ୍କୁ ଆହ୍ୱାନ କରି, ସମସ୍ତ ମତପାର୍ଥକ୍ୟ ବିସ୍ମୃତ ହୋଇ, ଏକ ମନ ଏକ ପ୍ରାଣରେ ରାଜ୍ୟର ଏହି ସଙ୍କଟପୂର୍ଣ୍ଣ ମୁହୂର୍ତ୍ତରେ ଦୃଢ଼ଭାବେ ରାଜାଙ୍କ ନିକଟରେ ଠିଆହେବା ନିମନ୍ତେ କରୁଣ ଅନୁରୋଧ ଜଣାଇଲେ । ତାଙ୍କର କରୁଣ ଗମ୍ଭୀର ବାକ୍ୟ ପ୍ରାୟ ସମସ୍ତଙ୍କୁ ପ୍ରଭାବିତ କଲା । ସମସ୍ତେ ରାଜ୍ୟ ପ୍ରତି ନିଜ ନିଜର ଦୃଢ଼ ଆନୁଗତ୍ୟ ଘୋଷଣା କରି ପୋଷ୍ୟପୁତ୍ର ଗ୍ରହଣ ଉତ୍ସବରେ ଅଂଶଗ୍ରହଣ କଲେ । ମାତ୍ର କନ୍ନୁର ମଲ୍ଲପ୍ପା ଓ ବେଙ୍କଟ ରାଓ ବାଚିକ ସମର୍ଥନ ମାତ୍ର ଜଣାଇଥିଲେ ହେଁ ଉଭୟଙ୍କ ମନରେ କପଟ ପୂରି ରହିଥିଲା । ରାଣୀ ଚେନ୍ନମ୍ମା ବିଶ୍ୱାସର ପ୍ରତୀକ ସ୍ୱରୂପ ଶିବଲିଙ୍ଗ ଲିଖିତ ପତ୍ର କନ୍ନୁର ମଲ୍ଲପ୍ପାଙ୍କୁ ଦେଲେ ଏବଂ ଯଥାଶୀଘ୍ର ସର୍ଦ୍ଦାର ମଲ୍ଲପ୍ପାଙ୍କୁ ସାଙ୍ଗରେ ନେଇ ଧାରବାର ଯାଇ ଥାକରେଙ୍କୁ ପତ୍ରଟି ଦେବା ନିମନ୍ତେ ଆଦେଶ ଜଣାଇଲେ । ତାଙ୍କର ଆଶା ଥିଲା ଯେ କିତ୍ତୁରର ଏହି ବିପଦରେ ସେ ନିଶ୍ଚୟ ରାଜାଙ୍କ ପ୍ରତି ଅନୁଗତ ରହିବେ ଏବଂ ପୋଷ୍ୟପୁତ୍ର ଗ୍ରହଣ ବ୍ୟାପାରକୁ ମାନସିକ ସମର୍ଥନ ମଧ୍ୟ ଦେବେ । ଶିବଲିଙ୍ଗ ଏହି ଘଟଣା ପରେ ପ୍ରାୟ ବାର ଘଣ୍ଟା ଜୀବିତ ରହିଲେ । 12 ସେପ୍ଟେମ୍ବର 1824 ମସିହା ରବିବାର ସକାଳ 4ଟାରେ ତାଙ୍କର ମୃତ୍ୟୁ ହେଲା । କନ୍ନୁର ମଲ୍ଲପ୍ପା ତଥା ସର୍ଦ୍ଦାର ମଲ୍ଲପ୍ପା ସେହିଦିନ ସକାଳେ ହିଁ ପୂର୍ବୋକ୍ତ ପତ୍ରଟିକୁ ଥାକରେଙ୍କୁ ଦେଲେ । ଥାକରେଙ୍କର ପତ୍ରଟିର ବାସ୍ତବତା ସମ୍ପର୍କରେ ସନ୍ଦେହ ହେଲା, କାରଣ ତା'ଉପରେ 10 ଜୁଲାଇ 1824ର ତାରିଖ ଦିଆଯାଇଥିଲା । ତାଙ୍କର ଧାରଣା ହେଲା ହୁଏତ ଏହି ପତ୍ରଟି ଜାଲ୍ କିମ୍ବା ଶିବଲିଙ୍ଗ ଅଚେତ ହୋଇଯିବା ପରେ ରାଜ୍ୟ ପରିଚାଳନା ନିଜ ହାତରେ ରଖିବା ନିମନ୍ତେ ଇଚ୍ଛୁକ କତିପୟ ଦରବାରୀଙ୍କର ଏହା ଏକ ହୀନ ଷଡ଼ଯନ୍ତ୍ର ମାତ୍ର । ସେ ଶୀଘ୍ର ଧାରବାରର ସିଭିଲ୍ ସର୍ଜନ ଡଃ ଜି. ଏଚ୍. ବେଲ୍‌କୁ ଡକାଇ ପଠାଇଲେ ଏବଂ ଶୀଘ୍ର କିତ୍ତୁର ଯାଇ ସେଠାରେ ରାଜାଙ୍କର ସ୍ୱାସ୍ଥ୍ୟ ସମ୍ପର୍କରେ ଅନୁସନ୍ଧାନ କରିବା ନିମନ୍ତେ ତାଙ୍କୁ ଆଦେଶ ଦେଲେ । ତଦନୁସାରେ ବେଲ୍ କିତ୍ତୁର ଗଲେ ଏବଂ ସେଠାରୁ ଫେରି, ସେଠାକାର ହାଲ ସମ୍ପର୍କରେ ଥାକରେଙ୍କୁ ଏକ ରିପୋର୍ଟ ଦେଲେ । ରିପୋର୍ଟଟି 12 ସେପ୍ଟେମ୍ବର 1824ର ଏବଂ ପରବର୍ତ୍ତୀ ପୃଷ୍ଠାରେ ପ୍ରଦତ୍ତ ।

---

2 ସମାରୋହର ବିବରଣୀ ଶ୍ରୀ ଭାବେପ୍ପା ଭୂଗୀ, ବେଲ୍ ହୋଙ୍ଗେଲଙ୍କର ବ୍ୟକ୍ତିଗତ ପୁରାତତ୍ତ୍ୱ ସଂଗ୍ରହାଳୟରେ. ମରାଠୀରେ ଲିଖିତ ଗୋଟିଏ ପତ୍ରରୁ ମିଳେ ।

ପ୍ରେରକ : 17 ସେପ୍ଟେମ୍ବର 1824

ଜି. ଏଚ୍. ବେଲ୍

ପ୍ରଥମ ସର୍ଜନ, ଧାରବାର

ପ୍ରାପ୍ତେଷୁ :

ମାନନୀୟ ଥାକରେ,

ରାଜନୀତିକ ଏଜେଣ୍ଟ, ଧାରବାର

ମହୋଦୟ,

ନିବେଦନର ଅଭିପ୍ରାୟ ଏହି ଯେ, ଆପଣଙ୍କ ନିର୍ଦ୍ଦେଶାନୁସାରେ ମୁଁ ଚଳିତ ମାସ 12 ତାରିଖ ଦିନ ରାଜାଙ୍କ ସହିତ ସାକ୍ଷାତ୍ କରିବା ନିମନ୍ତେ କିତ୍ତୁର୍ ଯାଇଥିଲି । କିତ୍ତୁରଠାରୁ ପ୍ରାୟ ଦୁଇ ମାଇଲ ଦୂରରେ ଜଣେ ଘୋଡ଼ା ସବାର ସହିତ ମୋର ସାକ୍ଷାତ୍ ହେଲା ଏବଂ ରାଜାଙ୍କ ମୃତ୍ୟୁ ସମ୍ବାଦ ମୁଁ ତାହାଠାରୁ ପାଇଲି । ନିଜ ଆଖିରେ ଶବଟିକୁ ଦେଖିବା ନିମନ୍ତେ ମୁଁ କିତ୍ତୁର୍ ଗଲି । ଅପରାହ୍ଣ ତିନିଟାରେ ମୁଁ ସେଠାରେ ପହଞ୍ଚି ରାଜାଙ୍କର ପାର୍ଥିବ ଶରୀରକୁ ମୋତେ ଦେଖାଇବା ନିମନ୍ତେ ପ୍ରାର୍ଥନା କଲି । ଉକ୍ତ 'ଦିବାନ୍ ଖାତେର'ରେ ରାଜକୀୟ ମର୍ଯ୍ୟାଦା ସହିତ ରାଜାଙ୍କର ସୁସଜ୍ଜିତ ମୃତଦେହ ରକ୍ଷିତ ଥିଲା । ଶବରୁ କୌଣସି ଦୁର୍ଗନ୍ଧ ବାହାରୁ ନଥିଲା, କିନ୍ତୁ ଶବର ଆକୃତି, ତାହାର ବେଶଭୂଷା, ଶାୟିତ ଅବସ୍ଥାରୁ ମୋର ବିଶ୍ୱାସ ହୋଇଛି ଯେ, ମୁଁ ସେଠାରେ ପହଞ୍ଚିବାର କିଛି ସମୟ ପୂର୍ବରୁ ହିଁ ରାଜାଙ୍କର ମୃତ୍ୟୁ ହୋଇଛି । ରାଜମହଲର ପ୍ରାଙ୍ଗଣ ରାଜପରିବାରର ସଦସ୍ୟ ଓ ପ୍ରଜାମାନଙ୍କ ଦ୍ୱାରା ପୂର୍ଣ୍ଣ ଥିଲା ଏବଂ ଜଣାଯାଉଥିଲା ଯେ, ଅନ୍ତିମ ଦର୍ଶନ ପାଇଁ ପ୍ରଜାମାନଙ୍କ ନିମନ୍ତେ ସେଠାରେ କୌଣସି ପ୍ରତିବନ୍ଧକ ନଥିଲା ।

ଆପଣଙ୍କର

ଧାରବାର ସ୍ୱା. ଜୀ. ଏଚ୍. ବେଲ୍

17 ସେପ୍ଟେମ୍ବର, 1824 ପ୍ରଥମ ସର୍ଜନ, ଧାରବାର ।

ଶିବଲିଙ୍ଗଙ୍କର ପତ୍ରରେ ତାରିଖ ସମ୍ପର୍କୀୟ ଯେଉଁ ତ୍ରୁଟି ପରିଲକ୍ଷିତ ହୋଇଥିଲା, ତାହା ହିଁ ବ୍ୟାପାରଟିର ସତ୍ୟତା ସମ୍ପର୍କରେ ଯାଞ୍ଚ କରାଇବା ନିମନ୍ତେ ଥାକରେଙ୍କୁ ପ୍ରେରିତ କରିଥିଲା । ଏଜେଣ୍ଟ ଏହି ଅବସରର ସଦୁପଯୋଗ କଲେ । ଶିବଲିଙ୍ଗଙ୍କ ମୃତ୍ୟୁର ଦୁଇ ଦିନ ପରେ ଅର୍ଥାତ୍ 14 ତାରିଖ ଦିନ ସେ କିତ୍ତୁର ଗଲେ । ସେଠାରେ ସମଗ୍ର ରାଜମହଲକୁ ତନ୍ନ ତନ୍ନ ପର୍ଯ୍ୟବେକ୍ଷଣ କରି ତଥା ରାଜପରିବାରର ସଦସ୍ୟମାନଙ୍କ ମନରେ ପ୍ରଚୁର ଭୀତି ସୃଷ୍ଟିକରି ସେ କିତ୍ତୁରକୁ ବ୍ରିଟିଶ୍ ସାମ୍ରାଜ୍ୟ ସହିତ ମିଶାଇନେବା ନିମନ୍ତେ ପ୍ରଚୁର ଉଦ୍ୟମ କଲେ । ସେଇଦିନ ସେ ଦକ୍ଷିଣାଞ୍ଚଳର ଶାସକ ଚାପଲିନ୍‌ଙ୍କୁ ଯେଉଁ ପତ୍ର[3] ଲେଖିଥିଲେ, ତହିଁରୁ ତାଙ୍କର ତତ୍କାଳୀନ ମନୋବୃତ୍ତିର ଏକ ସ୍ପଷ୍ଟ ପରିଚୟ ମିଳେ । ପତ୍ରଟି ଏହିପ୍ରକାର :

1 ମହାଶୟ,

କୁନ୍ନୁର ମଲ୍ଲଶେଟ୍ଟୀ ନାମଧେୟ କିତ୍ତୁର ରାଜାଙ୍କର ପ୍ରଧାନ ସେବକ ଚଳିତ 12 ତାରିଖ ଦିନ ଦ୍ୱିପ୍ରହର ସମୟରେ ମୋତେ ତାହାର ପ୍ରଭୁଙ୍କ ମୁମୂର୍ଷୁ ଅବସ୍ଥା ସମ୍ପର୍କରେ ସୂଚନା ଦେବାକୁ ଆସିଥିଲା । ସେ ଯେଉଁ ପତ୍ରଟି ଆଣିଥିଲା, ତାହାର ପ୍ରତିଲିପି ଦେଉଛି । ଏଥିରେ ରାଜା ପୋଷ୍ୟପୁତ୍ର ଗ୍ରହଣ କରିଥିବାର

---

3 ଉପଯୁକ୍ତ ପତ୍ର ଧାରବାରର କଲେକ୍ଟର ଥାକରେଙ୍କ କାର୍ଯ୍ୟାଳୟର ଜଣେ ସହକାରୀଙ୍କ ଦ୍ୱାରା ଅନୂଦିତ ।

ଉଲ୍ଲେଖ ରହିଛି । ଏହି ପତ୍ର 10 ଜୁଲାଇର ଏବଂ ଏଥିରେ ଉଲ୍ଲେଖ କରାଯାଇଛି ଯେ, ଦତ୍ତକ ଗ୍ରହଣ ସେହିଦିନ କରାଯାଇଛି ।

2. ମଲ୍ଲପ୍ପା ଏହା ମଧ୍ୟ ସୂଚାଇଲା ଯେ, ତା'ର ଆସିବା ବେଳକୁ ରାଜା ସଂଜ୍ଞାହୀନ ଥିଲେ । ମାତ୍ର ଦତ୍ତକ ଗ୍ରହଣ ସମାରୋହ ସେହିଦିନ ସକାଳେ ହୋଇଥିଲା ଏବଂ ସେହି ଅବସରରେ ସଲାମୀ ମଧ୍ୟ ଦିଆଯାଇଥିଲା ।

3. ରାଜାଙ୍କ ମୃତ୍ୟୁ ସଂକ୍ରାନ୍ତରେ ଅନେକ ରହସ୍ୟପୂର୍ଣ୍ଣ ସମ୍ବାଦ ପାଇବା ପରେ ଏବଂ ପୋଷ୍ୟପୁତ୍ର ଗ୍ରହଣର ବୈଧତା ସମ୍ପର୍କରେ ଯଥେଷ୍ଟ କାରଣ ରହିଥିବାର ବିଶ୍ୱାସ ହେବା ପରେ ମୁଁ ମଲ୍ଲପ୍ପାଙ୍କୁ ରାଜାଙ୍କ ପାଖକୁ ସିଭିଲ୍ ସର୍ଜନ ପଠାଇବା ସମ୍ପର୍କରେ ତାଙ୍କର ମତ ପଚାରିଲି । ସେ ରାଜି ହେବାରୁ ମୁଁ ମି. ବେଲ୍‌ଙ୍କୁ କିତ୍ତୁର ଯିବା ନିମନ୍ତେ କହିଲି । ସେ ଯାଇ ମୃତ ରାଜାଙ୍କୁ ଦେଖିଲେ । ଶବକୁ ଦେଖିଲେ ଜଣାଯାଉଛି ଯେ, ମଲ୍ଲପ୍ପା କିତ୍ତୁର ଛାଡ଼ିବା ପୂର୍ବରୁ ହିଁ ରାଜାଙ୍କର ମୃତ୍ୟୁ ହୋଇଛି । ଏଣୁ, ପୋଷ୍ୟପୁତ୍ର ଗ୍ରହଣ ନିମନ୍ତେ ରାଜା ସ୍ୱୟଂ ଆବେଦନ କରି ଅନୁମତି ପ୍ରାପ୍ତ ହୋଇଥିଲେ ମଧ୍ୟ, ତାହାର ଫଳଭୋଗ କରିବା ନିମନ୍ତେ ସେ ବଞ୍ଚିନଥାନ୍ତେ ବୋଲି ସନ୍ଦେହ କରିବାର ଯଥେଷ୍ଟ କାରଣ ରହିଛି ।

4. ମେ ମାସରେ ମୁଁ କୋହ୍ଲାପୁରରୁ ଫେରିବା ପରେ ରାଜା ସ୍ୱୟଂ ତାଙ୍କ ପାଇଁ ଔଷଧ ପଠାଇବା ନିମନ୍ତେ ମୋତେ ପତ୍ର ଲେଖି କିତ୍ତୁର ଯିବା ନିମନ୍ତେ ନିମନ୍ତ୍ରଣ ମଧ୍ୟ କରିଥିଲେ । ମୁଁ ତାଙ୍କ ଅନୁରୋଧ ରକ୍ଷାକରି କିତ୍ତୁର ଯାଇଥିଲି ଏବଂ ମେ ମାସ 14 ତାରିଖରେ ତାଙ୍କ ସହିତ ମୋର ବିସ୍ତୃତ ଆଲୋଚନା ମଧ୍ୟ ହୋଇଥିଲା । ଅବଶ୍ୟ ସେ ସମୟରେ ସେ ଗୁରୁତର ଅସୁସ୍ଥ ଥିଲେ । ତେବେ ତାଙ୍କ ସହିତ ଯେଉଁ କଥାବାର୍ତ୍ତା ହେଲା, ସେଥିରେ ସେ ପୋଷ୍ୟପୁତ୍ର ଗ୍ରହଣ ସମ୍ପର୍କରେ ସାମାନ୍ୟ ସୂଚନା ମଧ୍ୟ ଦେଇନଥିଲେ ।

5. ରାଜପରିବାରର ଷଡ଼ଯନ୍ତ୍ର ସମ୍ପର୍କରେ ସ୍ମରଣ ରଖି ତଥା ପୋଷ୍ୟପୁତ୍ର ଗ୍ରହଣ ସମ୍ପର୍କୀୟ ସରକାରୀ ନୀତି ବିଷୟରେ ଅସ୍ୱୀକାର କରିବାର ଆଶଙ୍କା ଦେଖି , ମୁଁ ପ୍ରାୟ ଛ ସପ୍ତାହ ପୂର୍ବରୁ ଏହି ଘୋଷଣା ତଥା ଅନ୍ୟାନ୍ୟ ବହୁ ଘୋଷଣା ବିଭିନ୍ନ ରାଜ-ପ୍ରମୁଖଙ୍କ ଓକିଲମାନଙ୍କ ସମ୍ମୁଖରେ ପୁନରାବୃତ୍ତି କରିଛି । ଦତ୍ତକ ବ୍ୟବସ୍ଥାକୁ ବୈଧ କରିବା ସମ୍ପର୍କୀୟ ସରକାରୀ ନୀତିନିୟମ ସେମାନଙ୍କୁ ଜଣାଇଦେବା ହିଁ ମୋର ଉଦ୍ଦେଶ୍ୟ ଥିଲା ।

6. ରାଜାଙ୍କର ମୃତ୍ୟୁପରେ ମୁଁ ତାଙ୍କର କର୍ମଚାରୀମାନଙ୍କୁ ପରିସ୍ଥିତିର ଗୁରୁତ୍ୱ ସମ୍ପର୍କରେ ବୁଝାଇ ଦେଇଛି । ରାଜାଙ୍କ ମୃତ୍ୟୁ ତଥା ପୋଷ୍ୟପୁତ୍ର ଗ୍ରହଣର ତାରିଖରେ ଯେଉଁ ପାର୍ଥକ୍ୟ ରହିଛି, ସେ ବିଷୟରେ ସେମାନଙ୍କର ବ୍ୟାଖ୍ୟା ମଧ୍ୟ ଶୁଣିଛି । ମଲ୍ଲପ୍ପା ଏହି ବିରୋଧ ଦୂର କରିବା ନିମନ୍ତେ କୌଣସି ପ୍ରଯତ୍ନ କରିନାହାନ୍ତି । ଯାହାକିଛି ମୁଁ ଶୁଣିଛି, ସେଥିରୁ ଏହା ସ୍ପଷ୍ଟ ହେଉଛି ଯେ, ଦତ୍ତକ ଗ୍ରହଣ ନିମନ୍ତେ ଆତ୍ମୀୟ ସ୍ୱଜନ, ହିତାକାଂକ୍ଷୀମାନଙ୍କର ଶତ ସହସ୍ର ଅନୁରୋଧ ସତ୍ତ୍ୱେ ରାଜା ସେଥିରେ ଅସାମର୍ଥ୍ୟବଶତଃ ସମ୍ମତି ପ୍ରଦାନ କରିନାହାନ୍ତି । ଏଥି ନିମନ୍ତେ ସରକାରଙ୍କୁ ଆବେଦନ କରିବାର କାମନା ମଧ୍ୟ ତାଙ୍କର କେବେ ନଥିଲା କିମ୍ବା ଯଦିଓ ଦତ୍ତକ ଗ୍ରହଣ ନିମନ୍ତେ କୌଣସି ସମାରୋହର ଆୟୋଜନ କରାଯାଇଥିଲା, ତାହା କଦାପି ରାଜାଙ୍କର ଜୀବିତ ବା ସଚେତନ ଅବସ୍ଥାରେ ନୁହେଁ ।

7. ପତ୍ରରେ ଯେଉଁ ବାଳକ ବିଷୟରେ ଉଲ୍ଲେଖ କରାଯାଇଛି ସେ ସ୍ୱର୍ଗୀୟ ରାଜାଙ୍କର ଦୂର ସମ୍ପର୍କର ଆତ୍ମୀୟ । କୌଣସିମତେ ତାକୁ କିତ୍ତୁରର ଉତ୍ତରାଧିକାରୀ ରୂପେ ସ୍ୱୀକୃତି ଦିଆଯାଇ ନପାରେ । କୁହାଯାଉଛି ଯେ, ତାକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରାଯିବା ନିମନ୍ତେ ବଛାଯାଇ

ସିଂହାସନରେ ବସାଯାଇଛି ମାତ୍ର, ଏହା ଯେ ରାଜକର୍ମଚାରୀମାନଙ୍କର ଏକ ଚାଲ୍, ଏକଥା ସ୍ପଷ୍ଟ ଜଣାଯାଉଛି । କ୍ଷମତା ହାତରେ ରଖିବା ପାଇଁ ହିଁ ସେମାନେ ଏପରି କରିଛନ୍ତି । ପିଛିଲା ତାରିଖରେ ରାଜାଙ୍କର ଯେଉଁ ପତ୍ର ମିଳିଛି, ସେଥିରେ ତାଙ୍କ ଦସ୍ତଖତ୍ ନିତାନ୍ତ ଅସ୍ପଷ୍ଟ ଏବଂ ରାଜାଙ୍କର ପ୍ରକୃତ ଦସ୍ତଖତଠାରୁ ସମ୍ପୂର୍ଣ୍ଣ ଭିନ୍ନ ହୋଇଥିବା ଏକ ଉଲ୍ଲେଖଯୋଗ୍ୟ ଘଟଣା । ରାଜାଙ୍କର ଅକ୍ଷର ଅତ୍ୟନ୍ତ ସୁନ୍ଦର ଥିଲା ।

8. ମୃତକର ପରିବାରରେ ତାଙ୍କର ଏକାଦଶ ବର୍ଷୀୟା ବିଧବା, ତାଙ୍କର ବିମାତା ତଥା ଷୋଡ଼ଶ ବର୍ଷୀୟା ବିଧବା ଭ୍ରାତୃବଧୂ ପ୍ରଭୃତି ରହିଛନ୍ତି । ଏହା ବ୍ୟତୀତ ଯେଉଁ ଆତ୍ମୀୟ ସ୍ୱଜନମାନେ ଅଛନ୍ତି, ସେମାନଙ୍କ ସହ ରାଜପରିବାରର ପ୍ରକୃତ ସମ୍ପର୍କ ଖୋଜି ବାହାର କରିବା ମୋ ପକ୍ଷରେ କଷ୍ଟସାଧ । ଉତ୍ତରାଧିକାର ସମ୍ପର୍କରେ ସରକାରୀ ନୀତି ଯାହା ହେଉ, ଯଦି କୌଣସି ଆଶୁ ବ୍ୟବସ୍ଥା ଗ୍ରହଣ କରାନଯାଏ, ତେବେ ରାଜ୍ୟ ଛାରଖାର ହୋଇଯିବ । ଅତଏବ ମୋର ପୂର୍ଣ୍ଣ ବିଶ୍ୱାସ, କିତ୍ତୁର ଯିବା ଲାଗି ମୋତେ ଆପଣ ଅନୁମତି ଦେବେ ଏବଂ ମୁଁ ସେଠାରେ ଶୀଘ୍ର ଏହି ଦତ୍ତକଗ୍ରହଣ ବିଷୟଟି ଅନୁସନ୍ଧାନ କରିବି, ଏହାଦ୍ୱାରା ସେଠାରେ ଶାନ୍ତିରକ୍ଷା ତଥା ଅନ୍ୟ ସମସ୍ତ ସୁବ୍ୟବସ୍ଥା ମଧ୍ୟ ସମ୍ଭବ ହୋଇପାରିବ ।

9. ପ୍ରଥମରୁ ସମସ୍ତ ସର୍ଦ୍ଦାର ତଥା ବିଭାଗାଧକ୍ଷମାନଙ୍କୁ ଆହ୍ୱାନ କରି ସେମାନଙ୍କର ଉତ୍ତରଦାୟିତ୍ୱ ସମ୍ପର୍କରେ ସେମାନଙ୍କୁ ବୁଝାଇଦେବା ଆବଶ୍ୟକ । ଏହାଛଡ଼ା ସେମାନଙ୍କୁ ଏହା ମଧ୍ୟ ବୁଝାଇଦେବା ଆବଶ୍ୟକ ଯେ, ଯେହେତୁ ଦତ୍ତକଗ୍ରହଣ ବ୍ୟାପାରଟି ସମ୍ପୂର୍ଣ୍ଣ ଅବୈଧ ଏବଂ, ଯେହେତୁ ବିଧବା ରାଣୀ ଅପ୍ରାପ୍ତବୟସ୍କ, ଏଣୁ ଉତ୍ତରାଧିକାର ପ୍ରସଂଗ ସରକାରଙ୍କ ଉପରେ ଛାଡ଼ିଦିଆଯିବା ଉଚିତ । ଏହା ବ୍ୟତୀତ ରାଜ୍ୟରକ୍ଷା, ଅନ୍ୟାନ୍ୟ ବିଧି ବ୍ୟବସ୍ଥାର ପରିପାଳନ, ସର୍ବୋପରି ସମସ୍ତଙ୍କୁ କର୍ତ୍ତବ୍ୟ ନିରତ ରଖାଇବା ପ୍ରଭୃତି ହିଁ ସେଠାରେ ମୋର ମୁଖ୍ୟ କାମ ହେବ ।

10. ଖଜଣାଖାନା ବିଷୟରେ ଅନେକ ଅସୋନ୍ତଷଜନକ ସମ୍ବାଦ ଶୁଣିବା ପରେ, ମୁଁ ଏ ବିଷୟରେ ରାଜପରିବାରର ପ୍ରମୁଖ ସଦସ୍ୟ ତଥା କର୍ମଚାରୀମାନଙ୍କ ସହିତ ପରାମର୍ଶ କରିଥିଲି । ସେମାନେ କହିଲେ, ରାଜା ସ୍ୱୟଂ କୋଷାଧକ୍ଷ ଥିଲେ । ନିଜର ହିସାବ କିତାବ ସେ ସ୍ୱୟଂ ରଖୁଥିଲେ ଏବଂ ଏ ସଂକ୍ରାନ୍ତରେ କାହାରିକୁ ବିଶ୍ୱାସ ମଧ୍ୟ କରୁନଥିଲେ । ଯେହେତୁ ଏହି ବିବରଣୀ ପର୍ଯ୍ୟାପ୍ତ ନୁହେଁ, ତେଣୁ ମୋର ହୃଦ୍‌ବୋଧ ହେଲାଯେ ଅବିଳମ୍ବେ ଆୟବ୍ୟୟ ଯାଞ୍ଚ ନିମନ୍ତେ ବ୍ୟବସ୍ଥା କରାଯାଇ କୋଷାଗାରରେ ତାଲା ପକାଇଦିଆଯାଉ । ତପରିଣାମରେ ଜମା ଅର୍ଥ ସୁରକ୍ଷିତ ରହିପାରିବ ।

11. ତେଣୁ ମୁଁ ମୋ ସହିତ ଯାଇଥିବା ଷ୍ଟିଭେନ୍‌ସନ୍ ତଥା ଫ୍ରେରିଙ୍କୁ ରାଜ କର୍ମଚାରୀମାନଙ୍କ ସହିତ ଖଜଣାଖାନାକୁ ଯିବା ନିମନ୍ତେ ଆଦେଶ ଦେଲି ଏବଂ ସେମାନେ ସେଥିରେ ସ୍ୱର୍ଗୀୟ ରାଜାଙ୍କ ସିଲ୍ ମୋହର ତଥା ମୋର ସିଲ୍ ମୋହର ଦେଇଦେବା ନିମନ୍ତେ ଅନୁରୋଧ ଜଣାଇଲି । ଏହା ହୋଇସାରିଛି ଏବଂ ଫଳରେ ଅନେକ ଲୁଟ୍‌ପାଟ୍‌କୁ ମଧ୍ୟ ରୋକାଯାଇ ପାରିଛି । ଖଜଣାଖାନାର ଅର୍ଥକୁ ଗଣିବାର ପ୍ରୟୋଜନ ଅନୁଭୂତ ହେଲା ନାହିଁ । କିଛି ଟ୍ରେଜେରୀର ତାଲା ମଧ୍ୟ ଖୋଲିଲା ନାହିଁ । ମାତ୍ର ରାଜାଙ୍କର ମରାଠୀ ଲିଖିତ ହସ୍ତଲେଖାନୁସାରେ (ଯାହା ତତ୍ରସ୍ଥ ସିନ୍ଦୁକରୁ ମିଳିଛି) ଯେଉଁଗୁଡ଼ିକ ଖୋଲା ନାହିଁ । ଯେତେଦୂର ସମ୍ଭବ, ଖଜଣାଖାନାରେ 8/9 ଲକ୍ଷ ଟଙ୍କା ରହିଛି ।

12. ରିପୋର୍ଟରେ ଉଲ୍ଲେଖ ଅଛି ଯେ, ଗୁପ୍ତ-ଧନରାଶିର ଏକ ବିପୁଳ କୋଷ ରହିଛି, ଯାହା ଭୂତପୂର୍ବ ରାଜାଙ୍କଦ୍ୱାରା ଜମା କରାଯାଇଥିଲା । ମାତ୍ର ମୁଖ୍ୟ କର୍ମଚାରୀ ଏହା ଉପରେ ଆଦୌ ଗୁରୁତ୍ୱ

ଆରୋପ ନକରିବା ନିମନ୍ତେ କହୁଛନ୍ତି । କାରଣ ସ୍ୱର୍ଗୀୟ ରାଜାଙ୍କ ପିତା ମଲ୍ଲସ୍ପା ଯେତେବେଳେ କିଛି ବର୍ଷ ପୂର୍ବେ ପୁନାରେ ରହୁଥିଲେ ସେତେବେଳେ ସେ 25 ଲକ୍ଷ ଟଙ୍କା ଖର୍ଚ୍ଚ କରିଥିଲେ ।

13. ସ୍ୱର୍ଗୀୟ ରାଜାଙ୍କର କର୍ମଚାରୀମାନେ ଏଭଳି ସ୍ଥିତିରେ ଯେଉଁଭଳି ହେବାର କଥା ପ୍ରାୟ ସେଇଭଳି, ମାତ୍ର ପ୍ରଥମତଃ, ସେମାନେ ଏଭଳି ସମସ୍ୟା ସମାଧାନ ନିମନ୍ତେ କୌଣସି ଦିଗ୍‌ଦର୍ଶନ ଦେଇନାହାନ୍ତି । ଦ୍ୱିତୀୟତଃ, କେତେକ ବ୍ୟାପାରରେ ମୋତେ ଠକିବା ନିମନ୍ତେ ଉଦ୍ୟମ କରିଛନ୍ତି ତଥା ଅର୍ଥ ବ୍ୟାପାରରେ ଆଦୌ ନିର୍ଭରଯୋଗ୍ୟ ମଧ୍ୟ ନୁହଁନ୍ତି । ତେଣୁ ଶାସନ କ୍ଷେତ୍ରରେ ମୁଁ 'ଦ୍ୱୈତ-ନୀତି'ର ପ୍ରଚଳନ କରିବାକୁ ଚାହେଁ । ସରକାରୀ ତଥା ରାଜପରିବାରର କର୍ମଚାରୀମାନଙ୍କୁ ନେଇ ଏହା ପ୍ରସ୍ତୁତ ହେବ । ଏହି ବ୍ୟବସ୍ଥା ଫଳରେ ମୁଁ ଦେଶୀୟ ପ୍ରଥା ତଥା ପରମ୍ପରାଗତ ପ୍ରଣାଳୀ ଉପରେ ହସ୍ତକ୍ଷେପ ନକରି ମଧ୍ୟ ସୁବ୍ୟବସ୍ଥା ପ୍ରଚଳନ କରିପାରିବି ।

14. ଗତବର୍ଷର ପେଶ୍‌କିଶ୍‌ର ଏକ ମୋଟା ଅଂଶ ଏବେ ମଧ୍ୟ ଦଖଲ୍ କରାଯାଇ ନାହିଁ । ମାତ୍ର ଜମାଅର୍ଥରୁ ଯେକୌଣସି ମୁହୂର୍ତ୍ତରେ ତାହା ଦିଆଯାଇପାରିବ ।

15. ପରିବାରର ଦାବି ସମ୍ପର୍କରେ ମୋହର ନିବେଦନ ଏତିକି ଯେ, ଏପର୍ଯ୍ୟନ୍ତ ବଂଶାବଳୀର ଏକ ସମାଧାନପ୍ରଦ ବିବରଣ ମୋହର ହସ୍ତଗତ ହୋଇନାହିଁ । ମାତ୍ର ମୋହର ବିଶ୍ୱାସ ହେଉଛି ଯେ, ଯେହେତୁ ରାଜାଙ୍କର କୌଣସି ପୁତ୍ର ବା ଭ୍ରାତା ନାହାନ୍ତି, ତେଣୁ ଏକମାତ୍ର ତାଙ୍କର ବିଧବାଙ୍କୁ ନ୍ୟାୟପୂର୍ଣ୍ଣ ଉତ୍ତରାଧିକାରୀର ସ୍ୱୀକୃତି ଦିଆଯାଇପାରେ । ସନନ୍ଦର ସର୍ତ୍ତର ବିସ୍ତାର ଏହାଙ୍କ ପର୍ଯ୍ୟନ୍ତ ହୋଇପାରିବ କି ନାହିଁ, ଏହା ନିଶ୍ଚିତ ହେବା ଆବଶ୍ୟକ । ଏଥିନିମନ୍ତେ ମୁଁ ଉତ୍ତରାଧିକାର ସମ୍ପର୍କୀୟ ଏକ ବିବରଣୀ ଏଥିସହିତ ଦେଉଛି ।

16. ଆଶାକରୁଛି ଯଥାଶୀଘ୍ର ମୁଁ ରାଜପରିବାରର ବଂଶାବଳୀ ଆପଣଙ୍କ ନିକଟକୁ ପଠାଇଦେଇ ପାରିବି । କୁହାଯାଉଛି ଯେ, ରାଜସମ୍ପତ୍ତିର ଦାବିଦାର ପ୍ରାୟ ସମସ୍ତେ ମୃତ ରାଜାଙ୍କ ପିତାଙ୍କର ଜୀବନକାଳ ମଧ୍ୟରେ ମୃତ୍ୟୁବରଣ କରିସାରିଥିଲେ । ବାକି ଯେଉଁମାନେ ଦୂର ସମ୍ପର୍କୀୟ ଆତ୍ମୀୟ ରହିଛନ୍ତି, ସେମାନଙ୍କମଧ୍ୟରୁ କେହି ଉତ୍ତରାଧିକାରୀ ହୋଇପାରିବେ ବୋଲି ମୋର ବିଶ୍ୱାସ ନୁହେଁ । କିତ୍ତୁର ରାଜ୍ୟର ପୂର୍ବ ସମୃଦ୍ଧି ଏବଂ ସ୍ୱତନ୍ତ୍ରତା ମଧ୍ୟ ଏ ଦିଗରେ ସହାୟକ ହୋଇପାରିବ ନାହିଁ ।

ଧନ୍ୟବାଦ ସହ

କିତ୍ତୁର ଶିବିର — ଭବଦୀୟ

14 ସେପ୍ଟେମ୍ବର, 1824 — ଜେ. ଥାକରେ

ଶ୍ରୀ ଚାପଲିନ୍‌ଙ୍କୁ ପଠାଯାଇଥିବା ଏହି ପତ୍ରକୁ ମନଯୋଗ ସହକାରେ ପାଠକଲେ ଏହା ସ୍ପଷ୍ଟ ଜଣାଯାଏ ଯେ, ପଲିଟିକାଲ୍ ଏଜେଣ୍ଟ କିତ୍ତୁର ରାଜ୍ୟକୁ ଖାସ୍ କରିଦେବା ନିମନ୍ତେ ବାହାନା ମାତ୍ର ଖୋଜୁଥିଲେ । ଆହୁରି ମଧ୍ୟ ଜଣାଯାଉଛି ଯେ, ରାଜାଙ୍କର ପୋଷ୍ୟପୁତ୍ର ଗ୍ରହଣ ବ୍ୟାପାରଟି ତାଙ୍କୁ ଅଜଣା ନଥିଲା । ପତ୍ରର ପଞ୍ଚମ ପାରାରେ ଏ ସମ୍ପର୍କୀୟ ସ୍ପଷ୍ଟ ସୂଚନା ରହିଛି । ପତ୍ରରୁ ଆହୁରି ଜଣାଯାଉଛି ଯେ, ଏଜେଣ୍ଟ ରାଜ୍ୟର ସମ୍ପତ୍ତିପ୍ରତି ଲୋଲୁପ ଦୃଷ୍ଟି ପକାଇଥିଲେ । ତେଣୁ ସେ ଦରବାରୀମାନଙ୍କୁ ସନ୍ଦେହ କରିବାକୁ ଆରମ୍ଭ କରିଛନ୍ତି । ତାଙ୍କର ବିଶ୍ୱାସ ଥିଲା ଏମାନେ ସମ୍ପତ୍ତି ଲୁଟି ନେଇପାରନ୍ତି । ଚେନ୍ନାମା ଯେ ଜଣେ ପରାକ୍ରମଶାଳିନୀ ନାରୀ ଏବଂ ଯୋଗ୍ୟତା ସହକାରେ ରାଜକାର୍ଯ୍ୟ ପରିଚାଳନା କରିପାରନ୍ତି, ଏଥିରେ ତାଙ୍କର ସନ୍ଦେହ ନଥିଲା । ତଥାପି ସେ ରାଜ୍ୟ ରକ୍ଷା, ଶିବଲିଙ୍ଗଙ୍କ ବିଧବା ପତ୍ନୀ ତଥା ତାଙ୍କର ଭାଇଙ୍କର ସ୍ୱାର୍ଥରକ୍ଷା ପ୍ରଭୃତିର ଛଳନା କରିବାକୁ ଚାହୁଁଥିଲେ ।

ଚେନ୍ନାମାଙ୍କୁ ଶିବଲିଙ୍ଗଙ୍କର ବିମାତା ରୂପରେ ଉଲ୍ଲେଖ (ପାରା - 4 ) ଏଜେଣ୍ଟଙ୍କର ଏକ ଧୂର୍ତ୍ତ କଟାକ୍ଷ ବ୍ୟତୀତ ଅନ୍ୟ କିଛି ନୁହେଁ । ପରିବାରର ମତପାର୍ଥକ୍ୟ ଦର୍ଶାଇବା ହେଉଛି ଏହି ବ୍ୟଙ୍ଗର ମୂଳଲକ୍ଷ୍ୟ । ପତ୍ରର ଭାବାର୍ଥରୁ ଏହା ସ୍ପଷ୍ଟ ଜଣାଯାଉଛି ଯେ, ଯେ କୌଣସି ଉପାୟରେ କିତ୍ତୁରକୁ ଗ୍ରାସ କରିବାହିଁ ତାଙ୍କର ଉଦ୍ଦେଶ୍ୟ ଥିଲା । ଏଥିରେ ଯେଉଁ ଯୁକ୍ତି ଏବଂ ଆଶଙ୍କା ପ୍ରକଟ କରାଯାଇଛି, ତାହା ସମ୍ପୂର୍ଣ୍ଣ କାଳ୍ପନିକ । ସଂକ୍ଷେପରେ ଏହା ହିଁ ହେଉଛି ତାଙ୍କର ବକ୍ତବ୍ୟ :-

1. ରାଜା କୌଣସି ଦତ୍ତକ ନେବା ବିଷୟରେ ଚିନ୍ତା କରୁନଥିଲେ । ଏହା ଏକ ଅକରୁଣ ମିଥ୍ୟା । ମେ ମାସର ସାକ୍ଷାତ୍ ସମୟରେ ରାଜା ଅବଶ୍ୟ ତାଙ୍କୁ ଏଭଳି କୌଣସି ସୂଚନା ଦେଇନଥିଲେ । ମାତ୍ର ପରେ ଥାକରେ କନ୍ନୁର ମଲ୍ଲପ୍ପା ତଥା ସର୍ଦ୍ଦାର ମଲ୍ଲପ୍ପାଙ୍କୁ ଜେରା କରି ଏହି ବ୍ୟାପାରର ସତ୍ୟତା ସ୍ୱୟଂ ଜାଣିପାରିଥିଲେ ।

2. ଥାକରେଙ୍କର ଦ୍ୱିତୀୟ ବକ୍ତବ୍ୟ ହେଉଛି ଯେ, ରାଜାଙ୍କ କହିବାନୁସାରେ କୌଣସି ଦତ୍ତକ ଗ୍ରହଣ କରାଯାଇନଥିଲା । ମାତ୍ର ବ୍ୟାପାରଟି ଯେ ସମ୍ପୂର୍ଣ୍ଣ ଭାବେ ରାଜାଙ୍କର ଇଚ୍ଛାଗତ, ଏ ବିଷୟରେ ପର୍ଯ୍ୟାପ୍ତ ସାକ୍ଷ୍ୟ ପ୍ରମାଣ ରହିଛି । ରାଜା ସ୍ୱୟଂ ଦତ୍ତକ ଗ୍ରହଣ କରିଥିଲେ । ଗୋଟିଏ ମରାଠୀ ପତ୍ରିକାରେ ଦତ୍ତକ-ଗ୍ରହଣ ସମାରୋହର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ମଧ୍ୟ ଛପାଯାଇଛି । ଥାକରେ ଚାହିଁଥିଲେ ଏ ବିଷୟରେ ଅଧିକ ଜାଣିପାରିଥାନ୍ତେ । ମାତ୍ର ସେ କୌଣସିମତେ ଏହାକୁ ବିଶ୍ୱାସଯୋଗ୍ୟ ମନେ କରୁନଥିଲେ ।

3. ତାଙ୍କ ମତରେ, ଦତ୍ତକ ଗ୍ରହଣ ହୋଇଥିଲେ ମଧ୍ୟ ତାହା ସମ୍ପୂର୍ଣ୍ଣ ଅବୈଧ, କାରଣ ଏଥିନିମନ୍ତେ ପୂର୍ବରୁ ଅନୁମତି ନିଆଯାଇନଥିଲା । ମାତ୍ର ଆଭ୍ୟନ୍ତରୀଣ ବ୍ୟାପାରରେ କିତ୍ତୁର ରାଜାଙ୍କର ପୂର୍ଣ୍ଣ ସ୍ୱାଧୀନତା ରହିଥିଲା ଏବଂ ଏହି କାରଣରୁ ଏଥି ନିମନ୍ତେ କୌଣସି ଅନୁମତିର ପ୍ରୟୋଜନ ନଥିଲା ।

ତାଙ୍କର ପାରିବାରିକ ଇତିହାସାନୁସାରେ ମୀରାଜ୍‌ରେ ବନବାସ କରୁଥିବା କାଳରେ ବୀରପ୍ପା ଗୌଡ଼ ସରଦେଶାଇଙ୍କର ମୃତ୍ୟୁ ହେଲା । ତାଙ୍କର ପତ୍ନୀ ପାର୍ବତେଵ୍ୱା ମଲ୍ଲସର୍ଜାଙ୍କୁ ପୋଷ୍ୟପୁତ୍ର ରୂପରେ ଗ୍ରହଣକରି ତାଙ୍କୁ ନିଜର ଉତ୍ତରାଧିକାରୀ ମନୋନୀତ କରିଥିଲେ । କିତ୍ତୁର-ରାଜ ପେଶବାମାନଙ୍କ ଅଧୀନସ୍ଥ ହୋଇଥିଲେ ମଧ୍ୟ ପୋଷ୍ୟପୁତ୍ର ଗ୍ରହଣ ନିମନ୍ତେ ସେ ପେଶବାମାନଙ୍କଠାରୁ କୌଣସି ଅନୁମତି ନେଇନଥିଲେ । କିତ୍ତୁର ରାଜା 1818 ରେ ସାର୍ ଥମାସ୍ ମନ୍‌ରୋଙ୍କ ସହିତ ଏକ ରାଜିନାମା କରିଥିଲେ । ପେଶବା ଏବଂ କିତ୍ତୁର ରାଜାଙ୍କ ମଧ୍ୟରେ ଯେଉଁ ସର୍ତ୍ତ ଥିଲା, ନୂତନ ସର୍ତ୍ତ ତାହାଠାରୁ ପୃଥକ୍ ନଥିଲା । ଏହି ସର୍ତ୍ତାନୁସାରେ କିତ୍ତୁର ରାଜା ଦତ୍ତକ ଗ୍ରହଣ ନିମନ୍ତେ କାହାଠାରୁ ଅନୁମତି ଗ୍ରହଣର ପ୍ରଶ୍ନ ନଥିଲା । ଏହାର ବହୁ ପରେ 1854 ମସିହାରେ ଇଷ୍ଟଇଣ୍ଡିଆ କମ୍ପାନୀ ମଧ୍ୟ ରାଜପରିବାରର କୌଣସି ବିଧବା ଦତ୍ତକ ଗ୍ରହଣ କରିବା ସମ୍ପର୍କରେ କୌଣସି ପ୍ରତିବନ୍ଧକାତ୍ମକ ସର୍ତ୍ତ ରଖିନଥିଲେ କିମ୍ବା ଦତ୍ତକ ଯେ ରାଜ-ପରିବାରର ପୁରୁଷ କିମ୍ବା ସ୍ତ୍ରୀ ପକ୍ଷୀୟ ନିକଟାତ୍ମୀୟ ହୋଇଥିବେ, ଏଭଳି କୌଣସି ପ୍ରତିବନ୍ଧକ ଲାଗୁ କରିନଥିଲେ । ଯଦି ଦତ୍ତକ-ଗ୍ରହଣ ମଲ୍ଲସର୍ଜାଙ୍କର ମୃତ୍ୟୁ ପରେ ହୋଇଥାଆନ୍ତା, ତଥାପି ଏହା କିଛି ଅନ୍ୟାୟ ହୋଇନଥାନ୍ତା । କାରଣ ହିନ୍ଦୁ ନୀତି ଅନୁସାରେ ନିଃସନ୍ତାନ ପୁରୁଷର ମୃତ୍ୟୁ ପରେ ତାହାର ବିଧବା ପତ୍ନୀ ଦତ୍ତକ ଗ୍ରହଣ କରିବାରେ ନ୍ୟାୟତଃ ଅସୁବିଧା କିଛି ନଥିଲା । ତେଣୁ ଦତ୍ତକ ଗ୍ରହଣ ସର୍ବଥା ଅବୈଧ, ଥାକରେଙ୍କର ଏହି ଯୁକ୍ତି ଆଦୌ ଗ୍ରହଣୀୟ ନୁହେଁ ।

ତାଙ୍କର ଅନ୍ୟ ଏକ ଯୁକ୍ତି ଥିଲା ଯେ, ଦତ୍ତକ କିତ୍ତୁର-ରାଜାଙ୍କର ପ୍ରତ୍ୟକ୍ଷ ବଂଶଜ ନୁହେଁ ।

ମୁନରୋଙ୍କ ସହିତ ପୂର୍ବେ ହୋଇଥିବା ରାଜିନାମାରେ ଏଭଳି କୌଣସି ସର୍ତ୍ତ ନଥିଲା । ସେ ଏହି ପର୍ଯ୍ୟାପ୍ତ ଅପକ୍ଷପାତପୂର୍ଣ୍ଣ, ଆଧାରଶୂନ୍ୟ ତଥା କାଳ୍ପନିକ ଯୁକ୍ତି ସାହାଯ୍ୟରେ ରାଜ୍ୟକୁ ଖାସ୍ କରିନେବାର ସ୍ୱପ୍ନ ଦେଖୁଥିଲେ ଏବଂ ସ୍ୱାଧୀନତା ଲାଗି ଯୁକ୍ତି ବାଢ଼ିଥିଲେ ଯେ, ଏହାପରେ ରାଜ୍ୟ କିତ୍ତୁରର ଶାସକମାନଙ୍କ ଅଧୀନରେ ରହିଲେ ଦୀର୍ଘ ସମୟ ପର୍ଯ୍ୟନ୍ତ ଶାସକ ଅପ୍ରାପ୍ତବୟସ୍କ ରହିବେ ଏବଂ କିତ୍ତୁରର ଶାସନ ଦାୟିତ୍ୱ ତାଙ୍କ ହାତରେ ରହିବ । ଏ ସମ୍ପର୍କରେ ଗୋଟିଏ ଯୁକ୍ତିକୁ ସ୍ପଷ୍ଟ ଭାବରେ ବିଶ୍ଳେଷଣ କରାଯିବା ଆବଶ୍ୟକ । 10 ଜୁଲାଇ 1824 ରେ ଲେଖାଯାଇଥିବା ପତ୍ର 12 ସେପ୍ଟେମ୍ବର 1824 ରେ କାହିଁକି ଦିଆଗଲା ? ଏହାର କାରଣ ଅତ୍ୟନ୍ତ ସ୍ପଷ୍ଟ । ଏହା ବିଶ୍ୱାସ କରିବାର ଯଥେଷ୍ଟ କାରଣ ରହିଛି ଯେ, ସ୍ୱୟଂ କନ୍ନୁର ମଲ୍ଲପ୍ପା ନିଜ ପୁତ୍ରକୁ ଶିବଲିଙ୍ଗଙ୍କୁ ପୋଷ୍ୟପୁତ୍ର ରୂପରେ ଦେବା ନିମନ୍ତେ ଅତ୍ୟନ୍ତ ବ୍ୟଗ୍ର ଥିଲେ । ଏହିଭଳି ଆହୁରି ବହୁତ ସମ୍ପର୍କୀୟ ଥିଲେ, ଯେଉଁମାନଙ୍କର ଏହି ଧରଣର ଆକାଙ୍କ୍ଷା ଥିଲା । ଦତ୍ତକ-ନିର୍ବାଚନ ଯଦି ପ୍ରତ୍ୟକ୍ଷ ରୂପରେ ହୋଇଥାନ୍ତା ତେବେ ନିଶ୍ଚୟ ଏଥିନିମନ୍ତେ ଦରବାରୀ ତଥା ରାଜ ସମ୍ପର୍କୀୟମାନଙ୍କ ମଧ୍ୟରେ ଖୋଲାଖୋଲି ସଂଘର୍ଷ ଘଟିଥାଆନ୍ତା । ଏଥିନିମନ୍ତେ ବହୁ ଷଡ଼ଯନ୍ତ୍ର ମଧ ହୋଇଥାଆନ୍ତା । ଏଣୁ ଥାକରେଙ୍କୁ ତୁରନ୍ତ ସମ୍ବାଦ ଦିଆଯାଇ ନଥିଲା । ଯେତେବେଳେ ଶିବଲିଙ୍ଗଙ୍କର ମୃତ୍ୟୁ ପ୍ରାୟ ନିଶ୍ଚିତ ହୋଇଗଲା, ସେତେବେଳେ ଅର୍ଥାତ୍ 11 ସେପ୍ଟେମ୍ବର 1824 ସଂଧ୍ୟାରେ ରାଣୀ ଚେନ୍ନମାଙ୍କ ଦ୍ୱାରା ଆହୂତ ଗୋପନ ବୈଠକ ପରେ (ଯେଉଁଠି ରାଣୀ ଚେନ୍ନମା ରାଜ୍ୟର ସଂହତି ନିମନ୍ତେ ଐକ୍ୟବଦ୍ଧ ହେବାକୁ ଦରବାରୀମାନଙ୍କୁ ଆବେଗପୂର୍ଣ୍ଣ ଉଦ୍‌ବୋଧନ ଦେଇଥିଲେ ) ଉଦ୍ଦିଷ୍ଟ ପତ୍ରଟି ଥାକରେଙ୍କୁ ଦେବା ନିମନ୍ତେ କନ୍ନୁର ମଲ୍ଲପ୍ପା ତଥା ସର୍ଦ୍ଦାର ମଲ୍ଲପ୍ପାଙ୍କ ହାତରେ ଦିଆଯାଇଥିଲା ।

ଏକଥା ଅବଶ୍ୟ ସତ୍ୟ ଯେ, ଯେତେବେଳେ ଥାକରେ ଶିବଲିଙ୍ଗଙ୍କ ମୃତ୍ୟୁର ସମୟ ସମ୍ପର୍କରେ ତଥା ତାଙ୍କର ଦତ୍ତକ ଗ୍ରହଣ ସମାରୋହ ସମ୍ପର୍କରେ ପଚରାପଚରି କରିଥିଲେ, ସେତେବେଳେ କନ୍ନୁର ମଲ୍ଲପ୍ପା ଏବଂ ସର୍ଦ୍ଦାର ମଲ୍ଲପ୍ପା ତାଙ୍କୁ ତ୍ରୁଟିପୂର୍ଣ୍ଣ ସମ୍ବାଦ ଦେଇଥିଲେ । ମାତ୍ର ସ୍ମରଣ ରଖିବାକୁ ହେବ ଯେ କନ୍ନୂର ମଲ୍ଲପ୍ପା ସ୍ୱୟଂ ଜଣେ ସନ୍ଦେହାସ୍ପଦ ସ୍ୱାର୍ଥପର ବ୍ୟକ୍ତି ଥିଲେ । ସେ ନିଜେ ଚେନ୍ନାମା ତଥା ଥାକରେଙ୍କୁ ମଧରେ ଭୁଲ ବୁଝାମଣା ସୃଷ୍ଟି କରିବାକୁ ଚାହୁଁଥିଲେ । ଏହା ମଧ ସମ୍ଭବ ହୋଇପାରେ ଯେ କନ୍ନୁର ମଲ୍ଲପ୍ପା ଏବଂ ସର୍ଦ୍ଦାର ମଲ୍ଲପ୍ପା ଥାକରେଙ୍କ କ୍ରୋଧରେ ଭୟଭୀତ ହୋଇପଡ଼ି ପରସ୍ପର ବିରୋଧୀ କଥା ମାନ କହି ପକାଇଥିଲେ ।

ଦକ୍ଷିଣାଞ୍ଚଳର ମୁଖ୍ୟ ଶାସକ ଚାପ୍‌ଲିନ୍ କିତ୍ତୁର ରାଜ-ପରିବାରର ଅବସ୍ଥା ସମ୍ପର୍କରେ ଯେଉଁ ବିବରଣୀ ଥାକରେ ପଠାଇଥିଲେ, ତାକୁ ନିର୍ବିଚାରରେ ଗ୍ରହଣ କରିନେଇଥିଲେ । ଇଷ୍ଟ୍ଇଣ୍ଡିଆ କମ୍ପାନୀର ଅନ୍ୟ ସାମ୍ରାଜ୍ୟବାଦୀଙ୍କ ଭଳି ସେ ମଧ କିତ୍ତୁର ରାଜ୍ୟକୁ ଖାସ୍ କରିନେବାକୁ ବ୍ୟଗ୍ର ଥିଲେ । ଉଭୟଙ୍କ ମଧରେ ଏ ସମ୍ପର୍କରେ ଗୋପନ ବୁଝାମଣା ଥିବା ଭଳି ପ୍ରତୀତ ହୁଏ । ଥାକରେଙ୍କ ପତ୍ରକୁ ଆଧାର କରି ଚାପ୍‌ଲିନ୍ 20 ସେପ୍ଟେମ୍ବର 1824 ରେ ବମ୍ବେର ମୁଖ୍ୟ ସଚିବ ୱିଲିୟମ୍ ନ୍ୟୁହମ୍‌କୁ ନିମ୍ନୋକ୍ତ ପତ୍ର ଦେଇଥିଲେ :

''ଯଦି ଦତ୍ତକ ଗ୍ରହଣ ବ୍ୟାପାର ସରକାରଙ୍କର ପୂର୍ବାନୁମତି ନେଇ କରାଯାଇଥାନ୍ତା, ତେବେ ଉତ୍ତରାଧିକାର ସମ୍ପର୍କରେ କୌଣସି ପ୍ରଶ୍ନ ଉଠନ୍ତା ନାହିଁ । କାରଣ ହିନ୍ଦୁ ପରମ୍ପରା ଅନୁସାରେ ପୋଷ୍ୟପୁତ୍ର ବିବାହିତ ଦମ୍ପତିଙ୍କର ଜନ୍ମିତ ପୁତ୍ର ସହିତ ସମାନ । ପୋଷ୍ୟପୁତ୍ର ଗ୍ରହଣ ସମାରୋହ ରାଜା ଅତ୍ୟନ୍ତ ଦୁର୍ବଳ ହୋଇଯିବା ପର୍ଯ୍ୟନ୍ତ ସ୍ଥଗିତ ରଖାଯାଇଥିଲା । ଏହା

ବ୍ୟତୀତ ପୋଷ୍ୟପୁତ୍ରର ବଂଶ ପରିଚୟ ଏତେ ଅସ୍ପଷ୍ଟ ଯେ, ସ୍ୱୟଂ କିତ୍ତୁରର ଓକିଲ ତାହାର ପ୍ରକୃତ ବଂଶଲତା ମୋତେ ଜଣାଇ ପାରିନଥିଲେ । ତେଣୁ ଏହିଭଳି ଏକ ନମନୀୟ ପରିସ୍ଥିତିରେ ମୁଁ ଯଥାଶୀଘ୍ର ସରକାରୀ ଦିଗ୍‌ଦର୍ଶନକୁ ବ୍ୟଗ୍ର ଭାବରେ ଅପେକ୍ଷା କରୁଛି । ଏହା ଭିତରେ, ଏଦିଗରେ ଥାକରେ ଯେଉଁ ପଦକ୍ଷେପ ନେଇଛନ୍ତି, ତହିଁରେ ସରକାରୀ ନୀତିର ଖିଲାପ୍ ହେବନାହିଁ ବୋଲି ମୋର ବିଶ୍ୱାସ ।

ଯେହେତୁ ଏହି ଜମିଦାରୀକୁ ସମ୍ପ୍ରତି ଏକ ଦେଶୀୟ ରାଜ୍ୟର ମାନ୍ୟତା ଦିଆଯାଇଛି, ଯାହାର ଅର୍ଥ ମୋ ବିଚାରରେ 'ଜାଗିରିଦାରୀ' ଅଥବା 'ରାଜତନ୍ତ୍ର' ହୋଇପାରେ, ଏଣୁ ଏହାର ଦାୟିତ୍ୱଗ୍ରହଣ ସମ୍ଭବତଃ ଏକ ଲୋକ୍‌ବିରୁଦ୍ଧ କାର୍ଯ୍ୟ ହେବ । ମାତ୍ର ତା'ବ୍ୟତୀତ ଅନ୍ୟ ଉପାୟ ମଧ୍ୟ ମୁଁ ଦେଖୁନାହିଁ । ଯଦି ପୋଷ୍ୟପୁତ୍ର ଗ୍ରହଣ ବ୍ୟାପାରକୁ ସମର୍ଥନ କରାଯାଉନାହିଁ, ତେବେ ଏହି ପଦକ୍ଷେପ ସନନ୍ଦରର ସର୍ତ୍ତାନୁରୂପ ମଧ୍ୟ ହେବ । ଏଣୁ ଯଦି ପୋଷ୍ୟପୁତ୍ର ଗ୍ରହଣକୁ ସମର୍ଥନ କରାଯାଉଛି, ତେବେ ମୋ ବିଚାରରେ ଏହାର ଲାଭ ସେଇ ଅପ୍ରାପ୍ତବୟସ୍କ ବାଳକକୁ ହିଁ ମିଳିବ । ଏ ଅବସ୍ଥାରେ ଶାସନର ବିଧି ବ୍ୟବସ୍ଥା ସେପର୍ଯ୍ୟନ୍ତ ଥାକରେଙ୍କ ହାତରେ ନ୍ୟସ୍ତ କରାଯିବା ଆବଶ୍ୟକ, ଯେପର୍ଯ୍ୟନ୍ତ ବାଳକ-ରାଜା ସ୍ୱୟଂ ପ୍ରାପ୍ତବୟସ୍କ ନ ହୋଇଛି । କାରଣ ବର୍ତ୍ତମାନ ରାଜପରିବାରରେ ଏଭଳି କୌଣସି ଯୋଗ୍ୟ ବ୍ୟକ୍ତି ନାହାଁନ୍ତି, ଯାହା ହାତରେ ଏହି ଗୁରୁ ଦାୟିତ୍ୱ ନ୍ୟସ୍ତ କରାଯାଇପାରିବ ।''

ଏ ମଧ୍ୟରେ ଚାପ୍‌ଲିନ୍‌ଙ୍କୁ ଲିଖିତ ନିଜର ସିଦ୍ଧାନ୍ତ ଅନୁସାରେ ଥାକରେ ହେବରୀ ଭେଙ୍କଟରାଓ ତଥା ସର୍ଦ୍ଦାର ମଲ୍ଲପ୍ପାଙ୍କୁ ଖଜଣା-ଖାନା ଦେଖାରଖା କରିବାର ଦାୟିତ୍ୱ ଅର୍ପଣ କରିଦେଇଥିଲେ । କୌଣସି ବ୍ୟକ୍ତି ବିନା ତଲାସିରେ ଭିତରକୁ କିମ୍ବା ବାହାରକୁ ଯାଇ ଆସି ପାରିବ ନାହିଁ ବୋଲି ମଧ୍ୟ ସେ ଆଦେଶ ପ୍ରଚାର କରିଦେଲେ । ଫଳରେ ରାଜପରିବାରର ସଦସ୍ୟମାନଙ୍କର ସ୍ୱଚ୍ଛନ୍ଦ ଗତିବିଧିରେ ପ୍ରତିବନ୍ଧକ ସୃଷ୍ଟିହେଲା ।

ଜଣାଯାଉଛି, ମୁଖ୍ୟ ସଚିବ ନ୍ୟୁହମ୍ ଥିଲେ ଅଧିକ ସ୍ୱଚ୍ଛ ତଥା ଖୋଲା ମିଜାଜ୍‌ର ବ୍ୟକ୍ତି । ସେ ଏହି ସମସ୍ୟାକୁ ଝୁଲାଇ ରଖିବାକୁ ଚାହୁଁ ନଥିଲେ । ପୁନର୍ବାର 23 ସେପ୍ଟେମ୍ବର 1824ରେ ଚାପ୍‌ଲିନ୍ ପଲିଟିକାଲ୍ ଏଜେଣ୍ଟ ଥାକରେଙ୍କ ପ୍ରେରିତ ରାଜ-ବଂଶାବଳୀର ଏକ ପ୍ରତିଲିପି ପ୍ରେରଣ କଲେ । ଏଥିରେ ଟିପ୍ପଣୀ ଦେଇ ସେ ଲେଖିଥିଲେ :

''ଯେହେତୁ ଏହି କାଗଜ ସ୍ୱର୍ଗୀୟ ରାଜାଙ୍କର ହିତାକାଂକ୍ଷୀମାନଙ୍କ ଦ୍ୱାରା ପ୍ରସ୍ତୁତ ହୋଇଛି ଏବଂ ଏହାର ପ୍ରମାଣ ନିମନ୍ତେ କୌଣସି ଦଲିଲ ଦସ୍ତାବିଜ ଉପସ୍ଥାପିତ କରାଯାଇନାହିଁ, ତେଣୁ ଏହାର ପ୍ରାମାଣିକତା ସମ୍ପର୍କରେ ମୋର ଘୋର ସନ୍ଦେହ ରହିଛି । ଏଣେ ରାଜ୍ୟର ସମସ୍ତ କାର୍ଯ୍ୟପଦ୍ଧତି ଦିନକୁ ଦିନ ଅତ୍ୟନ୍ତ ରହସ୍ୟମୟ ହୋଇଉଠୁଛି । ଏହି କାରଣରୁ ରାଜାନୁଗୃହୀତ ବ୍ୟକ୍ତିଙ୍କ ପ୍ରଦତ୍ତ ବିବରଣୀରେ ସାମାନ୍ୟ ସତ୍ୟତା ଥିବବୋଲି ଥାକରେ ମନେକରନ୍ତି । ତଥାପି ବଂଶାବଳୀ ସମ୍ପର୍କରେ ଥାକ୍‌ରେ ତାଙ୍କର ଅନୁସନ୍ଧାନ ଜାରି ରଖିଛନ୍ତି । ଏହାର ଫଳାଫଳ ଶୀଘ୍ର ଆପଣଙ୍କୁ ଜଣାଇ ଦିଆଯିବ ।

ଯଦି ସରକାର ରାଜ୍ୟକୁ ବର୍ତ୍ତମାନର ଦାବିଦାରଙ୍କ ହାତରେ ଛାଡ଼ିଦେବାକୁ ଚାହାଁନ୍ତି, ତେବେ ମୋ ବିଚାରରେ ରାଜ୍ୟ ପୁଲିସ୍ ବାହିନୀର ସୁବ୍ୟବସ୍ଥା ନିମନ୍ତେ ବ୍ୟାପକ ବ୍ୟବସ୍ଥା ଗ୍ରହଣ କରାଯିବା ହିଁ ସମୀଚୀନ ହେବ । ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେଯେ, ରାଜ୍ୟ ପୁଲିସ୍ ଏବଂ ସରକାରୀ ପୁଲିସ୍ ବ୍ୟବସ୍ଥା ମଧ୍ୟରେ ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ସୀମା-ଶୁଳ୍କ ବ୍ୟବସ୍ଥା ପ୍ରୟୋଗ

କରିବା ମଧ୍ୟ ଆବଶ୍ୟକ ଏବଂ ଏହି ବ୍ୟବସ୍ଥା ବ୍ରିଟିଶ ରାଜ୍ୟରେ ପ୍ରଚଳିତ ବ୍ୟବସ୍ଥାର ଅନୁରୂପ ହେବା ପ୍ରୟୋଜନ । କିତ୍ତୁରର ମୁଦ୍ରାଶାଳା ପୁନର୍ବାର ଖୋଲିବାର କୌଣସି ପ୍ରୟୋଜନ ନାହିଁ ବୋଲି ମଧ୍ୟ ବୁଝାଇଦେବା ଆବଶ୍ୟକ । ରାଜ-ପରିବାରର ଉତ୍ତରାଧିକାରୀଙ୍କୁ ଗ୍ରହଣ କରିନେବା ନିମନ୍ତେ ପ୍ରଚୁର ଉପଢୌକନ ନିଆଯାଉଥିଲା ଏବଂ ମଲ୍ଲସର୍ଜା ବୀରସର୍ଜା ସର୍ଜାଙ୍କ ସମୟରେ ଏହାର ପରିମାଣ ଥିଲା 90,000 ଟଙ୍କା । ଏହି ବିପୁଳ ଧନରାଶି ପେଶବା ଦରବାରର ମନ୍ତ୍ରୀମାନଙ୍କୁ ପରିତୋଷ ନିମନ୍ତେ ଦିଆଯାଉଥିବା ଅର୍ଥଠାରୁ ସ୍ୱତନ୍ତ୍ର ଥିଲା, ତେଣୁ, ମୋ ବିଚାରରେ 1,75,000 ଟଙ୍କା କିମ୍ବା ଏକ ବର୍ଷର ପେଶ୍‌କିସ୍ ହିଁ ବର୍ତ୍ତମାନ ଘଟଣାର ଜୋରିମାନା ସ୍ୱରୂପ ଗ୍ରହଣ କରାଯାଇପାରେ, ଯେହେତୁ ସ୍ୱର୍ଗୀୟ ରାଜାଙ୍କର କୌଣସି ପୁରୁଷ ବଂଶଧର ନାହାନ୍ତି ।''

ଚାପ୍‌ଲିନ୍ 24 ସେପ୍ଟେମ୍ବର 1824 ରେ ମୁଖ୍ୟ ସଚିବଙ୍କୁ ଅନ୍ୟ ଏକ ପତ୍ର ଲେଖିଲେ, ତାହା ସହିତ କିତ୍ତୁରରେ ନିଯୁକ୍ତ ସରକାରୀ-ପ୍ରବନ୍ଧକ ଭେଙ୍କଟରାଓଙ୍କର ଏକ ଗୋପନ ପତ୍ର ମଧ୍ୟ ପ୍ରେରିତ ହୋଇଥିଲା । ସେଥିରେ ସେ ଲେଖିଥିଲେ :

> ''11 ସେପ୍ଟେମ୍ବର ଅପରାହ୍ଣ ପ୍ରାୟ 10 ଟାରେ ରାଜାଙ୍କର ମୃତ୍ୟୁ ହୋଇଥିଲା । ରିପୋର୍ଟରେ ଏହା 12 ତାରିଖ ବୋଲି ଯାହା ଲେଖାଯାଇଛି, ତାହା ଭୁଲ୍ । ତିନି ଜଣ ପ୍ରଧାନ କର୍ମଚାରୀ ଏହି ତଥ୍ୟକୁ ଗୋପନ ରଖିଥିଲେ । ଧାରବାରକୁ ବାକି ପେଶ୍‌କିସ୍ ପ୍ରେରଣ କରିବା ଆଳରେ ସେମାନେ ରାଜକୋଷରୁ 1,50,000 ଟଙ୍କା ତଥା ବହୁମୂଲ୍ୟ ଅଳଙ୍କାରର ତିନୋଟି ଡବା ଅପହରଣ କରିନେଇଥିଲେ । ପରିବାର ତଥା ପୁରୁଖା କର୍ମଚାରୀଙ୍କ ସହିତ ପରାମର୍ଶ ନକରି ସେମାନେ ଦତ୍ତକ-ଗ୍ରହଣ କାହାଣୀଟି ସୃଷ୍ଟି କରିଛନ୍ତି, ଯାହାର ଆୟୋଜନ ଦ୍ୱିତୀୟ ଦିନ ପ୍ରାତଃକାଳରେ କରାଯାଇଥିଲା । କାରବାରୀ ମଲ୍ଲସର୍ଜାଙ୍କ ନିକଟରେ ସ୍ୱର୍ଗୀୟ ରାଜାଙ୍କର ବିପୁଳ ଧନରାଶି ଗଚ୍ଛିତ ଅଛି ।''

ସେ ପୁଣି ଲେଖିଥିଲେ,

> 'ଥାକ୍‌ରେ ମୋତେ କହିଛନ୍ତି ଯେ ଏହାଠାରୁ ସଂଗୃହୀତ ଅନ୍ୟ ବିବରଣୀରୁ ଏହି ବ୍ୟାପାରର ସତ୍ୟତା ଜଣାପଡ଼ିଯାଉଛି । କିତ୍ତୁର ରାଜ୍ୟ ଶାସନ ବ୍ୟବସ୍ଥା ସମ୍ପର୍କରେ ସରକାରୀ ଆଦେଶ ମିଳିବା ପର୍ଯ୍ୟନ୍ତ ଥାକରେ ବର୍ତ୍ତମାନ ବ୍ୟବସ୍ଥାକୁ ସେଇଭଳି ରଖିବାକୁ ପ୍ରସ୍ତୁତ ନୁହଁନ୍ତି । ତାଙ୍କ ମତରେ ମଲ୍ଲସର୍ଜାଙ୍କ ଭଳି ଛଳନାପରାୟଣ ବ୍ୟକ୍ତିଙ୍କ ହାତରେ ଶାସନ ବ୍ୟବସ୍ଥା ଅର୍ପଣ କରାଯିବା ନିତାନ୍ତ ବିପଜ୍ଜନକ ହେବ । ମଲ୍ଲସର୍ଜା ସମ୍ପ୍ରତି ଧାରବାର କଚେରୀର ମୁଖ୍ୟ ଗୁମାସ୍ତାମାନଙ୍କ ମଧ୍ୟରୁ ଜଣେ ଭେଙ୍କଟରାଓଙ୍କ ସହିତ ଯୁଗ୍ମ ପ୍ରବନ୍ଧକ ରହିଛନ୍ତି ।''

ନ୍ୟୁହମ୍ ଏହି ପତ୍ରର ଉତ୍ତର 25 ସେପ୍ଟେମ୍ବର 1824ରେ ଥାକରେଙ୍କ କାର୍ଯ୍ୟପନ୍ଥାକୁ ଗଭର୍ଣ୍ଣରଙ୍କ ଦ୍ୱାରା ଅନୁମୋଦିତ କରାଇ ଦେଇଥିଲେ ସତ୍ୟ, ତଥାପି ନ୍ୟୁହମ୍ ଜଣେ ସ୍ୱଚ୍ଛମନର ବ୍ୟକ୍ତି ଭଳି ଜଣାପଡ଼ନ୍ତି । ସେ କିତ୍ତୁରରେ କୌଣସି ଅନ୍ୟାୟ ଓ ଅଯଥାର୍ଥ ନୀତିନିୟମ ଚାଲୁ କରିବା ନିମନ୍ତେ ଚାହୁଁ ନଥିଲେ । ଥାକ୍‌ରେଙ୍କ କାର୍ଯ୍ୟପନ୍ଥାକୁ ଅନୁମୋଦନ କଲା ସମୟରେ ସେ ସ୍ୱୟଂ ଏଥିରେ ସନ୍ଦେହ ପ୍ରକାଶ କରିଥିଲେ । ସେ ଲେଖିଥିଲେ, ''କିତ୍ତୁର ରାଜ୍ୟ ସହିତ ବ୍ରିଟିଶ୍ ସରକାରଙ୍କ ଯେଉଁ ରାଜିନାମା ହୋଇଥିଲା, ସମ୍ପୂର୍ଣ୍ଣ ସନନ୍ଦ ନଦେଖି ସପରିଷଦ ଗଭର୍ଣ୍ଣର ଏ ବିଷୟରେ ସନ୍ଦେହମୁକ୍ତ ହୋଇନପାରନ୍ତି । ଅନୁଦାନର ପ୍ରକୃତିରୁ ତଥା ଥାକରେଙ୍କ ପ୍ରେରିତ ସନନ୍ଦର ଅନୁଚ୍ଛେଦରୁ ଏହା ହିଁ ପ୍ରମାଣିତ ହେଉଛି ଯେ, ଯଦିଓ କିତ୍ତୁର ରାଜା ତଥା ତାଙ୍କର ବଂଶଜ ପ୍ରତ୍ୟକ୍ଷ ପରମ୍ପରା ଦୃଷ୍ଟିରୁ

ପ୍ରଭୁତ୍ୱସମ୍ପନ୍ନ ରାଜକୁମାର ଥିଲେ, ଏବଂ ତାତ୍ତ୍ୱିକ ଦୃଷ୍ଟିରୁ ତାଙ୍କର ସ୍ଥିତି ଅନ୍ୟ ଜମିଦାରମାନଙ୍କ ସ୍ଥିତିଠାରୁ ଭିନ୍ନ ଥିଲା, ତଥାପି ସନନ୍ଦରେ ଏଭଳି କୌଣସି ସର୍ତ୍ତ ନାହିଁ ଯାହା ରାଜବଂଶ ଲୋପ ପାଇଯିବା ପରେ, ରାଜ୍ୟ କମ୍ପାନୀ ହାତକୁ ଚାଲିଯିବା ପକ୍ଷରେ କୌଣସି ବାଧା ସୃଷ୍ଟିକରୁଛି । ଏହି ଅନୁମାନ ଉପରେ ଏଥିସହ ପ୍ରଦତ୍ତ ଆଦେଶ ଆଧାରିତ । ମାତ୍ର ଏହାକୁ କାର୍ଯ୍ୟକାରୀ କରିବା ପୂର୍ବରୁ ଆପଣ ସନନ୍ଦକୁ ଉତ୍ତମ ରୂପେ ପରୀକ୍ଷା କରି ସ୍ୱୟଂ ଅବଗତ ହୁଅନ୍ତୁ ଯେ, ଏହି ନିଷ୍ପତ୍ତି ଯଥାର୍ଥ । ଯଦି ସନନ୍ଦରୁ କିଛି ଜଣା ନପଡ଼ିବ, ତେବେ ଦତ୍ତକ-ଗ୍ରହଣ ସମ୍ପର୍କୀୟ ସାଧାରଣ ନିୟମରୁ କିତ୍ତୁରକୁ ମୁକ୍ତ ରଖିବା ନିମନ୍ତେ ଅନ୍ୟ ଜମିଦାରମାନଙ୍କୁ ସରକାରୀ ଅଧିକାର ତଥା ଲକ୍ଷ୍ୟ ସମ୍ପର୍କରେ ସ୍ପଷ୍ଟ ଜଣାଇ ଦିଆଯାଇଥିବା ଦୃଷ୍ଟିରୁ, ସାମ୍ପ୍ରତିକ ଅନିୟମିତତା ଉପରେ ପ୍ରଥମରୁ ହିଁ କଡ଼ାକଡ଼ି ଧ୍ୟାନ ଦିଆଯିବା ଆବଶ୍ୟକ ହେବ । ମାତ୍ର ସମ୍ପ୍ରତି ଏ ଧରଣର କଠୋର ବ୍ୟବସ୍ଥାକୁ କୋହଳ କରାଯାଇପାରେ ।

ଏହି ଘୋଷଣା କରିଦିଆଯାଉ ଯେ, ବ୍ରିଟିଶ୍ ସରକାର ଦତ୍ତକ-ଗ୍ରହଣକୁ ସ୍ୱୀକୃତି ଦେଉନାହାନ୍ତି, କାରଣ ଏହା (ଯଦି ପ୍ରକୃତରେ ଦତ୍ତକ-ଗ୍ରହଣ ହୋଇଥାଏ) ସରକାରଙ୍କର ବିନାନୁମତିରେ ହିଁ କରାଯାଇଛି । ଏତଦ୍ ବ୍ୟତୀତ ଅଦ୍ୟାବଧି କୌଣସି ଉପାୟରେ ଏହାକୁ ପ୍ରମାଣ ମଧ୍ୟ କରାଯାଇ ପାରିନାହିଁ । ଯଦି ଥାକରେ ରାଜ୍ୟର ସମ୍ପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିନେଇ ନଥାନ୍ତି, ତେବେ ସେ ଏଥିନିମନ୍ତେ ଅଗ୍ରସର ହୁଅନ୍ତୁ ଏବଂ ତା'ପରେ ପୋଷ୍ୟପୁତ୍ର ଗ୍ରହଣର ପରିସ୍ଥିତି ସମ୍ପର୍କରେ ଅନୁସନ୍ଧାନ ଆରମ୍ଭ କରନ୍ତୁ ।

ପ୍ରଥମେ ଦତ୍ତକ ସହିତ ମୃତ ରାଜାଙ୍କର କି ସମ୍ପର୍କ ଥିଲା, ତାହା ଖୋଜି ବାହାର କରିବାକୁ ପଡ଼ିବ । ଯଦି ଏହା ପ୍ରମାଣିତ ହୁଏ ଯେ, ସେ ରାଜବଂଶଜ ଏବଂ ଟିପୁ ସୁଲ୍ତାନ ରାଜ୍ୟ ଅଧିକାର ପୂର୍ବରୁ ସେ ରାଜାଙ୍କ ପାଖରେ ଥିଲା, ତାହାହେଲେ ସେ ନିଶ୍ଚିତ ଭାବରେ ରାଜାଙ୍କର ନିକଟତମ ଆତ୍ମୀୟ ହେବ । ପୋଷ୍ୟପୁତ୍ର ଗ୍ରହଣ ସମାରୋହ ଅନୁଷ୍ଠିତ ହୋଇନଥିଲେ ମଧ୍ୟ କୌଣସି ଅସୁବିଧା ହେବ ନାହିଁ । ଦତ୍ତକ-ଗ୍ରହଣର ସମସ୍ତ ଅନିୟମିତତା ସମ୍ପର୍କରେ ଅନୁଗ୍ରହ ପୂର୍ବକ ବିଚାର କରାଯାଉ ଏବଂ ଯଦି ରାଜାଙ୍କର ପୋଷ୍ୟପୁତ୍ର ଗ୍ରହଣ ସମ୍ପର୍କରେ ସାମାନ୍ୟ ପ୍ରମାଣ ମିଳୁଛି, ତେବେ ତା'କୁ ପର୍ଯ୍ୟାପ୍ତ ମନେ କରାଯାଉ ।

ପୁଣି ଯଦି ସେ ପ୍ରାଚୀନ ରାଜବଂଶର କୌଣସି ନିକଟ ସମ୍ପର୍କୀୟ ବୋଲି ଜଣାପଡ଼େ, ତାହାହେଲେ ଦତ୍ତକ-ଗ୍ରହଣ ତଥ୍ୟକୁ ଗୁରୁତ୍ୱହୀନ ମନେକରାଯାଉ ଏବଂ ତାକୁ ପରବର୍ତ୍ତୀ କାଳରେ ସୂଚିତ କରାଯିବା ସର୍ତ୍ତାନୁସାରେ ସ୍ୱୀକୃତି ଦିଆଯାଉ । ଯଦି ଏହାର ବିପରୀତ, ଅର୍ଥାତ୍ ଦତ୍ତକ ପ୍ରାଚୀନ ରାଜବଂଶର କୌଣସି ସମ୍ପର୍କୀୟ ହୋଇନଥାଏ କିମ୍ବା ନାରୀମାନଙ୍କ ତରଫରୁ ନିକଟ ଆତ୍ମୀୟ ସାବ୍ୟସ୍ତ ନହୁଏ, ତେବେ ଦତ୍ତକ-ଗ୍ରହଣ ତଥ୍ୟକୁ ଯେତେ ବିଧିବଦ୍ଧ ହୋଇଥିଲେ ମଧ୍ୟ ସ୍ୱୀକୃତି ଦିଆନଯାଉ । ଏଭଳି କ୍ଷେତ୍ରରେ ରାଜବଂଶ ପରମ୍ପରାର ଅନ୍ତ ହୋଇଛି ବୋଲି ଗ୍ରହଣକରି ରାଜ୍ୟକୁ ଖାସ୍ କରିନିଆଯାଉ । ଏହା ସହିତ ରାଜ-ପରିବାରର ମହିଳା ତଥା ସମସ୍ତ ପୁରୁଖା କର୍ମଚାରୀ ଏବଂ ଆଶ୍ରିତମାନଙ୍କ ନିମନ୍ତେ ସମୁଚିତ ବ୍ୟବସ୍ଥା ଗ୍ରହଣ କରାଯାଉ ।

ବର୍ତ୍ତମାନ ମୁଁ ସେଇ ସର୍ତ୍ତ ଉପରକୁ ଆସୁଛି, ଯାହା ଉପରେ ଜମିଦାରୀ ନ୍ୟସ୍ତ ହେବା ନିର୍ଭର କରେ । ଯଦି ଦତ୍ତକ ରୂପେ କଥିତ ବ୍ୟକ୍ତି ( ଏପର୍ଯ୍ୟନ୍ତ ମିଳିଥିବା ବିବରଣୀର ପ୍ରତିକୂଳ) ଏତକ ପ୍ରମାଣ କରିଦେଇ ପାରିବ ଯେ, ସେ ଯଥାର୍ଥରେ ରାଜବଂଶର ନିକଟ ଆତ୍ମୀୟ ଏବଂ ଦତ୍ତକ-ଗ୍ରହଣ ନିମନ୍ତେ ସରକାରୀ ଅନୁମତି ମିଳିବାର ଯଥେଷ୍ଟ ସମ୍ଭାବନା ଥିଲା, ଯଦି ଦତ୍ତକ ଗ୍ରହଣର ଯଥାର୍ଥତା ଏବଂ

ନିୟମିତତା ପ୍ରମାଣିତ ହୋଇଯାଏ, ତେବେ ସନନ୍ଦ-ସର୍ତ୍ତର କୌଣସି ପରିବର୍ତ୍ତନ ନକରି ରାଜ୍ୟ ତାକୁ ପ୍ରତ୍ୟର୍ପଣ କରିଦିଆଯାଉ । ଯଦି ସନନ୍ଦର କୌଣସି ସର୍ତ୍ତ ସମ୍ପର୍କରେ ସନ୍ଦେହ ସୃଷ୍ଟି ହୁଏ, ତେବେ ତାକୁ ଦୂର କରିବା ନିମନ୍ତେ ଅପେକ୍ଷା କରାଯାଉ ।

ଯଦି ଦତ୍ତକ-ଗ୍ରହଣ ଅନିୟମିତ ଭାବେ ହୋଇଛି କିମ୍ବା ଯଦି ସେହି ବ୍ୟକ୍ତି ପୂର୍ବୋକ୍ତ ଅଂଶରେ ଦିଆଯାଇଥିବା ବିବରଣର ହୁଏ ବା ଦତ୍ତକ-ଗ୍ରହଣ ପୂର୍ଣ୍ଣ ନିୟମିତ ଭାବେ ହୋଇଛି, ଯଦିଓ ଦତ୍ତକ ରାଜପରିବାରର ନିକଟ ସମ୍ପର୍କୀୟ ନୁହେଁ, ତଥାପି ରାଜ୍ୟ ତା'ହାତରେ ଛାଡ଼ି ଦିଆଯାଉ । ତେବେ ମୁଦ୍ରାଶାଳା ସ୍ଥାପନ ନିମନ୍ତେ କିମ୍ବା ଅନ୍ୟ ଅସୁବିଧାଜନକ ବିଶେଷ ଅଧିକାର ପାଇଁ କିମ୍ବା ଏହି ଧରଣର ଆଦାନପ୍ରଦାନ ନିମନ୍ତେ ପ୍ରୟୋଜନବୋଧରେ ନୂତନ ସର୍ତ୍ତ ଆରୋପ କରାଯାଇପାରେ, ଯାହା ଆମର ଦେଶୀୟ ରାଜ୍ୟ ପରିଚାଳନା ନୀତିର ସହାୟକ ହେବ ।

ସମସ୍ତ ପ୍ରୟୋଜନରେ ରାଜାଙ୍କର ନିଜସ୍ୱ ସମ୍ପତ୍ତିର ବ୍ୟୟ ହିନ୍ଦୁ ପରମ୍ପରା ଓ ନୀତି ଅନୁସାରେ ହେବା ଆବଶ୍ୟକ । ଯଦି ତହିଁରୁ ସରକାରଙ୍କର କିଛି ପ୍ରାପ୍ୟ ଥାଏ, ତେବେ ମୃତକର ନିକଟ ସମ୍ପର୍କୀୟମାନଙ୍କ ଦାବି ତଥା ପରିସ୍ଥିତି ସମ୍ପର୍କରେ ଗଭୀର ଅନୁଧ୍ୟାନ ନ କରି ତାହା ଗ୍ରହଣ କରାଯିବା ଉଚିତ ନୁହେଁ ।''

କିତ୍ତୁର ସମ୍ପର୍କରେ ଥାକରେ ଯେଉଁ ପଦକ୍ଷେପ ନେଇଥିଲେ, ତାହା ଏଭଳି ଉପରିସ୍ଥମାନଙ୍କ ଦ୍ୱାରା ଅନୁମୋଦିତ ହୋଇଯିବା ପରେ, ସେ ଅଧିକ ସ୍ୱେଚ୍ଛାଚାରୀ ହୋଇପଡ଼ିଲେ । 14 ସେପ୍ଟେମ୍ବର 1824 ରେ ପ୍ରଦତ୍ତ ରିପୋର୍ଟରୁ ଜଣାଯାଏ ଯେ, ସେ ରାଜ୍ୟ ଶାସନର ଦାୟିତ୍ୱ ଦୁଇଜଣଙ୍କ ହାତରେ ନ୍ୟସ୍ତ କରିଦେଲେ । ତନ୍ମଧ୍ୟରୁ ଜଣେ ହେଲେ ରାଜାଙ୍କର ପ୍ରତିନିଧି ଏବଂ ଅପର ଜଣକ ବ୍ରିଟିଶ୍ ସରକାରଙ୍କ ପ୍ରତିନିଧି । ଉଭୟେ ରାଜ୍ୟ ପ୍ରଶାସନ ସହିତ କୋଷାଗାରର ସୁରକ୍ଷା ଦାୟିତ୍ୱରେ ରହିଲେ । ଭେଙ୍କଟ ରାଓଙ୍କର ଉଦ୍ଦେଶ୍ୟପୂର୍ଣ୍ଣ ମିଥ୍ୟା ଅଭିଯୋଗରେ ମଲ୍ଲପ୍ପା ଶେଟ୍ଟୀ ଆପଣା ପଦରୁ ବିତାଡ଼ିତ ହେଲେ । ସେ ପୁଣି ସର୍ଦ୍ଦାର ତଥା ଅନ୍ୟ ଦରବାରୀମାନଙ୍କୁ ଧମକ ଚମକ୍ ଦେଇ ହଇରାଣ କରିବାକୁ ଲାଗିଲେ । ଆହୁରି ମଧ୍ୟ ଅନେକ ଗ୍ରାମର କାଗଜପତ୍ର ତନଖି ଦେଖିବାକୁ 'ଅମଲଦାର' ମାନ ନିଯୁକ୍ତ କଲେ । କନ୍ନୂର ମଲ୍ଲପ୍ପା, କିତ୍ତୁର ଗରୁ ଶାନ୍ତାପ୍ପା, ସର୍ଦ୍ଦାର ମଲ୍ଲପ୍ପା, ନରସିଂହ ରାଓ ପ୍ରମୁଖ ତାଙ୍କ କ୍ରୋଧର ଶିକାର ହେବାକୁ ଲାଗିଲେ । ରାଜପରିବାର କିମ୍ବା ତାଙ୍କର ପରାମର୍ଶଦାତାମାନଙ୍କ ସହିତ କୌଣସି ପରାମର୍ଶ ନକରି ସେ ରାଜମହଲର ଅନେକ କର୍ମଚାରୀଙ୍କୁ ପଦଚ୍ୟୁତ କରିଦେଲେ । କିତ୍ତୁରର କାର୍ଯ୍ୟନିର୍ବାହ ନିମନ୍ତେ ଜଣେ ମାମଲତଦାର ତଥା ଅନ୍ୟ କେତେକ କର୍ମଚାରୀଙ୍କୁ ନିଯୁକ୍ତି ଦିଆଗଲା । ତାଙ୍କର ବିନା ପରାମର୍ଶରେ ସେଠାରେ କିଛି କରାଯିବ ନାହିଁ ବୋଲି ମଧ୍ୟ ଆଦେଶ ପ୍ରଚାରିତ ହେଲା । ଏହାକୁ ଅବଜ୍ଞା କଲେ କଠୋର ଦଣ୍ଡ ଦିଆଯିବ ବୋଲି ମଧ୍ୟ ଧମକ ଦିଆଗଲା । ରାଜକୋଷ ସମ୍ପୂର୍ଣ୍ଣଭାବରେ ଥାକରେ ଏବଂ ତାଙ୍କ ସହାୟକମାନଙ୍କ ନିୟନ୍ତ୍ରଣରେ ରହିଥିଲା । ରାଜାଙ୍କ ସିପାହୀମାନେ ଦଶଲକ୍ଷ ଟଙ୍କା ମୂଲ୍ୟର କୋଷାଗାର ପହରା ଦେବା ନିମନ୍ତେ ସମ୍ପୂର୍ଣ୍ଣ ଅନୁପଯୁକ୍ତ, ଏହିଭଳି ଏକ ଗୁଜବ ଉଠାଇ ସେ ସେଠାରେ ଦଳେ ସରକାରୀ ସିପାହୀଙ୍କୁ ନିଯୁକ୍ତ କରିଦେଲେ । ଏହିଭଳି କୋଷାଗାର ସୁରକ୍ଷା ଆଳରେ ପ୍ରାୟ 30 ଜଣ ସରକାରୀ ସିପାହୀ ଦୁର୍ଗମଧ୍ୟସ୍ଥ ପୂର୍ବ ଓ ପଶ୍ଚିମ ଦ୍ୱାରରେ ନିଯୁକ୍ତ ହେଲେ । ଅବଶ୍ୟ ରାଜାଙ୍କର ପ୍ରହରୀମାନେ ମଧ୍ୟ ସେଠାରେ ରହିଲେ । ଥାକରେ ପ୍ରଧାନ ପ୍ରଧାନ ବ୍ୟକ୍ତିମାନଙ୍କୁ 'ବନ୍ଧକୀ-ପତ୍ର' ଦେବା ନିମନ୍ତେ ଆଦେଶ ଦେଲେ । ଏହିଭଳି ଭାବରେ ସେ କୋଷାଗାରକୁ ସମ୍ପୂର୍ଣ୍ଣଭାବରେ ନିଜ ଅଧୀନରେ ରଖିବାର ବ୍ୟବସ୍ଥା କରିନେଲେ । ରାଣୀ

ଚେନ୍ନାମ୍ମା ଥାକରେଙ୍କର ଏହିସବୁ ପଦକ୍ଷେପରେ ଅତ୍ୟନ୍ତ କ୍ରୁଦ୍ଧ ହୋଇପଡ଼ିଥିଲେ । ଅଗତ୍ୟା ସେ ବମ୍ବେର ଗଭର୍ଣ୍ଣର ଏଚ୍.ଇ. ମୋଷ୍ଟୁଆର୍ଟ ଏଲ୍‌ଫିନ୍‌ଷ୍ଟୋନ୍‌ଙ୍କୁ ରାଜ-ପରିବାରର ଅଭାବ ଅଭିଯୋଗ ଜଣାଇବାନିମନ୍ତେ କିତ୍ତୁରର ଓକିଲ ରଚପ୍ପା ତଥା ଲିଙ୍ଗୋପେଣ୍ଡ ଓକିଲଙ୍କୁ ପ୍ରେରଣ କଲେ । ଏହି କାର୍ଯ୍ୟ ଅକ୍ଟୋବର 1824 ରେ ହୋଇଥିଲେ ମଧ୍ୟ ଗଭର୍ଣ୍ଣରଙ୍କଠାରୁ ଏହାର କୌଣସି ଅନୁକୂଳ ଉତ୍ତର ଆସିଲା ନାହିଁ ।

ଥାକରେ ରାଜପରିବାରର ସଦସ୍ୟମାନଙ୍କ ମଧ୍ୟରେ ଭୁଲ ବୁଝାମଣା ସୃଷ୍ଟି କରିବାକୁ ଚାହୁଁଥିଲେ । ବିଧବାରାଣୀ ବୀରମ୍ମାଙ୍କ ନିକଟକୁ ସେ ଗୋପନରେ ଖବର ପଠାଇଲେ ଯେ, ଦତ୍ତକ-ଗ୍ରହଣ ତାଙ୍କର ସ୍ୱାର୍ଥ ବିରୋଧୀ, କାରଣ ଏହା ଫଳରେ ସେ ନିରାଶ୍ରୟା ହୋଇଯିବେ । ରାଣୀଙ୍କର ମନକୁ ବିଷାକ୍ତ କରିଦେବା ହିଁ ତାଙ୍କର ଲକ୍ଷ୍ୟଥିଲା । ମାତ୍ର ବୀରମ୍ମା ଚେନ୍ନାମ୍ମାଙ୍କ ଚାରିତ୍ରିକ ମହତ୍ୱ ସମ୍ପର୍କରେ ସମ୍ୟକ୍ ଅବହିତା ଥିଲେ । ଏକଥା ସମସ୍ତେ ଜାଣିଥିଲେ ଯେ ଚେନ୍ନାମ୍ମା ଆପଣା ପୁତ୍ରକୁ ରୁଦ୍ରମ୍ମା ପୁତ୍ର ଶିବଲିଙ୍ଗଙ୍କର ଅଙ୍ଗରକ୍ଷୀ କରିବା ନିମନ୍ତେ ପ୍ରସ୍ତାବ ଦେଇଥିଲେ । ମାତ୍ର ଦୁର୍ଭାଗ୍ୟବଶତଃ, ପୂର୍ବରୁ ତାଙ୍କର ମୃତ୍ୟୁ ହୋଇଯାଇଥିଲା । ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ପ୍ରତି ତାଙ୍କର ସ୍ନେହ ଶ୍ରଦ୍ଧା ତଥା କିତ୍ତୁର ରାଜ୍ୟ ପ୍ରତି ତାଙ୍କର ମମତା କାହାରିକୁ ଅଜଣା ନଥିଲା । ଏଣୁ ଥାକରେଙ୍କ ଧୂର୍ତ୍ତ ଉଦ୍ୟମ ବ୍ୟର୍ଥ ହୋଇଗଲା ।

ପରିସ୍ଥିତି ସମ୍ପର୍କରେ ସଚେତନ ଥାଇ ଚେନ୍ନାମ୍ମା ଉପଯୁକ୍ତ ଅବସରର ପ୍ରତୀକ୍ଷା କରୁଥିଲେ । ଦୁର୍ଗ ତଥା ରାଜପ୍ରାସାଦରେ ବ୍ରିଟିଶ୍ ସିପାହୀମାନେ ପହରା ଦେଉଥିଲେ । ରାଜ ମହଲର ଗତିବିଧି ସମ୍ପର୍କରେ ସମ୍ବାଦ ସଂଗ୍ରହ କରିବା ନିମନ୍ତେ ଗୁପ୍ତଚର ନିଯୁକ୍ତ କରାଯାଇଥିଲା ତଥା ଅନ୍ୟ ସର୍ଦ୍ଦାର କର୍ମଚାରୀମାନେ ତାଙ୍କ ସହିତ ସାକ୍ଷାତ କରିବାକୁ ଅନୁମତି ପାଉନଥିଲେ । ଏପରିକି ନିଜ ପ୍ରିୟ ପ୍ରଜାମ୍ନାନଙ୍କ ସହିତ ସାକ୍ଷାତ୍ କରିବା ତାଙ୍କ ପାଇଁ ନିଷିଦ୍ଧ ଥିଲା । ରାଜପରିବାରର ସଦସ୍ୟମାନଙ୍କ ସହିତ ନିତାନ୍ତ ରୂକ୍ଷ ବ୍ୟବହାର କରାଯାଉଥିଲା ତଥା ସେମାନଙ୍କ ଗତିବିଧି ଉପରେ କଡ଼ା ନଜର ରଖାଯାଇଥିଲା ।

ପରିସ୍ଥିତି କ୍ରମଶଃ ଅସହ୍ୟ ହୋଇପଡୁଥିଲା । କ୍ଷତ ଉପରେ ଲବଣ ସିଞ୍ଚନ ଭଳି ଏହି ସମୟରେ ଥାକରେ ଆଦେଶ ଦେଲେ ଯେ, ଦତ୍ତକ ପୁତ୍ର ଶିବଲିଙ୍ଗପ୍ପାଙ୍କୁ ଯଥାଶୀଘ୍ର ଦୁର୍ଗରୁ ଦୂରକୁ ପଠାଇ ଦିଆଯାଉ । ବ୍ୟାପାରଟି ଏକାନ୍ତ ଅଭିସନ୍ଧିମୂଳକ । କାରଣ ଥାକରେ ଜାଣିଥିଲେ, ଶିବଲିଙ୍ଗପ୍ପା ଦୁର୍ଗରେ ରହିଲେ, କିତ୍ତୁରବାସୀ ଭବିଷ୍ୟତ୍‌ରେ ପୁନର୍ବାର ରାଜ୍ୟାଧିକାର କରିବା ବିଷୟ ଚିନ୍ତା କରିପାରନ୍ତି । ଏହି ଆଦେଶ ଚେନ୍ନାମ୍ମାଙ୍କୁ ଅତ୍ୟନ୍ତ ବିରକ୍ତ କରିଥିଲା । ସିଂହାସନର ଉତ୍ତରାଧିକାରୀଙ୍କୁ ଦୁର୍ଗରୁ ବାହାର କରିଦିଆଗଲେ ସେ ନିଜେ କିତ୍ତୁର ପରିତ୍ୟାଗ କରିବେ ବୋଲି ନିଷ୍ପତ୍ତି ନେଇଥିଲେ । ତାଙ୍କୁ ଏବଂ ବୀରମ୍ମାଙ୍କୁ ପୁନେ ତଥା ବମ୍ବେ ଯିବା ନିମନ୍ତେ ଅନୁମତି ଦିଆଯାଉ ବୋଲି ସେ ଥାକରେଙ୍କୁ ପ୍ରାର୍ଥନା କଲେ । ଏ ଅନୁରୋଧ ରକ୍ଷା କରାଯାଇ ନପାରିଲେ ତାଙ୍କୁ ଅନ୍ତତଃ କାଶୀ ବାସ ନିମନ୍ତେ ସୁଯୋଗ ଦିଆଯାଉ ବୋଲି ମଧ୍ୟ ସେ ଜଣାଇଲେ । ଥାକରେ ଏହାର ଉତ୍ତରରେ ଜଣାଇଲେ ଯେ, ଚେନ୍ନାମ୍ମା ଏକାକୀ ଯାଇପାରନ୍ତି । ତାଙ୍କ ପାଇଁ ଖର୍ଚ୍ଚର ବ୍ୟବସ୍ଥା କରାଯାଇପାରିବ । ମାତ୍ର ରାଜାଙ୍କ ଯୁବତୀ ବିଧବାଙ୍କର ଯିବାର କୌଣସି ପ୍ରୟୋଜନ ନାହିଁ । ଏ ବିଷୟରେ ତାଙ୍କର ମତାମତ ନେବାର କୌଣସି ଆବଶ୍ୟକତା ମଧ୍ୟ ନାହିଁ । ଶିବଲିଙ୍ଗପ୍ପା ଶୀଘ୍ର କିତ୍ତୁର ତ୍ୟାଗକରି ଯାଉ ବୋଲି ଥାକରେ ପୁନର୍ବାର ମତ ପ୍ରକାଶ କଲେ । ଏଜେଣ୍ଟଙ୍କର ଏହି ସ୍ୱେଚ୍ଛାଚାରିତା ଆଉ ଅଧିକ ସହ୍ୟ କରିନପାରି

ଏଥର ରାଣୀ ଚେନାମ୍ମା ତଥା ବୀରମ୍ମା 11 ଅକ୍ଟୋବର 1824 ରେ ଚାପ୍ଲିନ୍‌ଙ୍କ ନିକଟକୁ ପତ୍ର ଲେଖିଲେ । ପତ୍ରର ଅନୁବାଦ ନିମ୍ନ ଭଳି :

''ଆମେ ପୂର୍ବରୁ ରାଜପୁତ୍ରଙ୍କ ସ୍ଥିତି ସମ୍ପର୍କରେ ଆପଣଙ୍କୁ ଜଣାଇଥିଲୁ । ଆପଣ ଏହାର ପ୍ରାପ୍ତି ସ୍ୱୀକାର ମଧ୍ୟ କରିନାହାନ୍ତି ।

ସରକାରୀ ପ୍ରତିନିଧି (ଥାକରେ) ଙ୍କ ଦ୍ୱାରା ଆଜିପର୍ଯ୍ୟନ୍ତ ରାଜ୍ୟର ଶାସନ ସମ୍ପର୍କରେ ଯାହା ଯାହା କରାଯାଇଛି, ସେସବୁ ଆପଣ ଜାଣନ୍ତି । ସେ ଯାହା ଉଚିତ୍ ମଣୁଛନ୍ତି, ତାହା କରୁଛନ୍ତି । ଆମେ ତାଙ୍କ କାର୍ଯ୍ୟରେ କୌଣସି ପ୍ରକାର ହସ୍ତକ୍ଷେପ କରିନାହୁଁ । ଆପଣ ଜାଣନ୍ତି, ଆମ ପ୍ରତି ମଧ୍ୟ ବିଶେଷ ଦୃଷ୍ଟି ଦିଆଯିବା ଆବଶ୍ୟକ । ଏ ପର୍ଯ୍ୟନ୍ତ ଆପଣ ତାହା କରିଆସିଛନ୍ତି । ମାତ୍ର ଆମକୁ କେଉଁ ପ୍ରକାରର ସମ୍ମାନ ଦିଆଯିବା ଉଚିତ, ଏହା ନଜାଣି ଥାକରେ ଆମ ସହିତ ସାକ୍ଷାତ୍ କରିବାକୁ ଚାହିଁଥିଲେ । ରାଜ୍ୟ ତାଙ୍କ ହାତରେ ଏବଂ ପ୍ରତ୍ୟେକ ବିଷୟରେ ଆମେ ତାଙ୍କ ଉପରେ ନିର୍ଭରଶୀଳ - ଏହା ମନେକରି ଆମେ ତାଙ୍କର ସମସ୍ତ ପ୍ରଶ୍ନର ଉତ୍ତର ଦେଲୁ । ସେ ଚାବି ମାଗିଲେ, ଆମେ ଦେଇଦେଲୁ । ଟ୍ରେଜେରୀ ଖୋଲି, ସେ ସବୁ ଗଣାଗଣି କଲେ ଏବଂ ତା'ପରେ ନିଜ ସିଲ୍ ଦେଇ ତାକୁ ବନ୍ଦ କରିଦେଲେ । ରାଜ୍ୟର ଖର୍ଚ୍ଚ ବହୁତ ଅଧିକ । ଏଣେ ଯେଉଁ ପ୍ରଜାମାନେ ଭେଟି ଦେବାକୁ ଆସୁଛନ୍ତି, ସେମାନଙ୍କ ପାଇଁ କୌଣସି ଉପଯୁକ୍ତ ସ୍ଥାନର ବ୍ୟବସ୍ଥା କରାଯାଇନାହିଁ ।

ଆମେ କେବେ ବାହାରକୁ ଯିବାରେ ଅଭ୍ୟସ୍ତ ନୋହୁଁ । ତଥାପି ବନ୍ଧୁତ୍ୱ ନିମନ୍ତେ ଆମେ ଥାକରେଙ୍କ ସହିତ ସାକ୍ଷାତ୍ କଲୁ । ଯାହା ଈଶ୍ୱରଙ୍କର ଇଚ୍ଛା ତାକୁ ଆମେ ମଥାପାତି ଗ୍ରହଣ କରିନେଇଛୁ । ମାତ୍ର ଆମେ ଆଶା କରୁଛୁଯେ, ଏହି ରାଜବଂଶ ଯେପରି ଜାରିରହେ, ଆପଣ ସେଇଭଳି ଆଦେଶ ଦେବେ ।

ସାହେବ ଏଠାରେ ଘୋଡ଼ାଶାଳଠାରୁ ଆରମ୍ଭକରି ପ୍ରତ୍ୟେକ କ୍ଷୁଦ୍ରାତିକ୍ଷୁଦ୍ର ଦ୍ରବ୍ୟର ଟିକିନିଖି ହିସାବ କରୁଛନ୍ତି । କୌଣସି ଜିନିଷ ଚାହିଁବାର ଅଧିକାର ଆମର ନାହିଁ । ଅତଏବ ବର୍ତ୍ତମାନ ଆମପାଇଁ ରାଜ୍ୟକୁ ସାହାଯ୍ୟ କରିବା ତଥା ଏହାର ଖ୍ୟାତିକୁ ଜାରି ରଖିବା ନିମନ୍ତେ ଉଦ୍ୟମ କରିବା ଆପଣଙ୍କ ଉପରେ ନିର୍ଭର କରେ । ରାଜବଂଶର ଧାରାକୁ ଅକ୍ଷୁଣ୍ଣ ରଖିବା ନିମନ୍ତେ ଆମେ ଏକ ବାଳକକୁ କୋଳକୁ ନେଇଛୁ । ତା' ନାମରେ ମୋହର ପ୍ରସ୍ତୁତ ହୋଇଛି, ବର୍ତ୍ତମାନ ତାକୁ ଦୂରକୁ ପଠାଇଦେବା ନିମନ୍ତେ ଅଯଥା ଜିଦ୍ କରାଯାଉଛି । ବାଳକକୁ ରାଜ୍ୟରେ ରଖାଯାଇଛି ଏବଂ ତା'ସମ୍ପର୍କରେ କୌଣସି ଆଦେଶ ଗ୍ରହଣ କରିବାର ଅବସର ଆସିନଥିଲା ।

ବାଳକ ପ୍ରଥମରୁ ଏହିଠାରେ ଥିଲା ଏବଂ ତା'ପାଇଁ ପରମ୍ପରାନୁସାରେ ଯାହା କରାଯିବାର କଥା, ତାହା କରାଯାଇଛି । ଏଥିରେ କୌଣସି ନୂତନତା ନାହିଁ । ରାଜ-ପରିବାରର ସମସ୍ତ ଆଶ୍ରିତ ଏକତ୍ରିତହୋଇ ଏହା କରିଛନ୍ତି । ତେଣୁ ବର୍ତ୍ତମାନ ବାଳକକୁ ଦୂରକୁ ପଠାଇବା ସମ୍ଭବ ନୁହେଁ । ତାକୁ ଦୂରକୁ ପଠାଇ, ଆମେ ଏଠାରେ ରହିବା ଉଚିତ ହେବନାହିଁ । ଏଠାରେ ଅତ୍ୟାଚାର କ୍ରମଶଃ ଅସହ୍ୟ ହୋଇପଡୁଛି । ଆମର ଦୃଢ଼ ବିଶ୍ୱାସ, ଆପଣ କଷ୍ଟ ନିବାରଣ କରି, ଆମର ସମ୍ମାନ ରକ୍ଷାକରିବେ । ଆମେ ଜଣେ ଓକିଲ ସାହାଯ୍ୟରେ ଥାକରେଙ୍କୁ ଜଣାଇଥିଲୁ ଯେ, ଯେହେତୁ ସେ କୋଷାଗାର ଅଧିକାର କରିଛନ୍ତି, ସମସ୍ତ ପ୍ରକାର ଦଲିଲ କାଗଜପତ୍ର, ସନନ୍ଦ ଇତ୍ୟାଦି ତାଙ୍କ ନିକଟରେ ରହିଛି ଏବଂ ନିଜନ୍ଧ ମାମଲତଦାର ସେ ନିଜେ ନିଯୁକ୍ତି କରିସାରିଛନ୍ତି; ତେଣୁ ଆମେ ଏଠାରେ ରହିବାର କୌଣସି ପ୍ରୟୋଜନ ନାହିଁ । ଆମ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯିବ ବୋଲି ପ୍ରତିଶ୍ରୁତି ଦିଆଯାଇଥିଲା । ମାତ୍ର

ଥାକରେଙ୍କ ପୂର୍ବୋକ୍ତ କାର୍ଯ୍ୟକଳାପର ପରିପ୍ରେକ୍ଷୀରେ ଆମେ ପ୍ରାର୍ଥନା କରୁଛୁ ଯେ, ନିଜ ଇଚ୍ଛାରେ ପୁଣେ ତଥା ବମ୍ବେ ଯିବା ନିମନ୍ତେ ଆମକୁ ଅନୁମତି ଦିଆଯାଉ । ଆଉ ଯଦି ଏହା ସମ୍ଭବ ନହୁଏ, ତେବେ ଆମେ କାଶୀ ଯିବାକୁ ଚାହିଁବୁ ।

ଆମେ ଯିବାକୁ ଚାହିଁଲେ ଯାଇପାରୁ ଏବଂ ଏ ଧରଣର ନିବେଦନ ଥାକରେଙ୍କ ନିକଟକୁ ପଠାଇବା ଅନୁଚିତ ବୋଲି ସେ ଆମକୁ ଜଣାଇଛନ୍ତି । ଆମ ପ୍ରତି ତାଙ୍କର ଭାଷା ଦିନକୁ ଦିନ ବଦଳୁଛି । ରାଜ-ପରିବାରର କର୍ମଚାରୀ ଓ ପରିଚାଳକମାନଙ୍କ ସମ୍ପର୍କରେ ତାଙ୍କର ଅଭିଯୋଗ ଏକ ସାଧାରଣ ଘଟଣା ହୋଇଗଲାଣି । ଏତେ ଦିନ ପର୍ଯ୍ୟନ୍ତ ସେମାନେ ରାଜସେବା କରିଆସିଲେ । ଏବେ ସେମାନେ କୁଆଡ଼େ ଯିବେ । ନିଯୁକ୍ତି ଦେଇ ସାରିବା ପରେ ସେମାନଙ୍କୁ ତଡ଼ି ମଧ୍ୟ ଦିଆଯାଇ ପାରିବ ନାହିଁ । ଏମାନେ ଏତେ ଦିନ ନିଜର କର୍ତ୍ତବ୍ୟନିଷ୍ଠା ଶାନ୍ତିର ସହିତ ପାଳନ କରିଆସିଛନ୍ତି । ଏବେ କେଉଁଭଳି ସେମାନଙ୍କ ସହିତ ଦୁର୍ବ୍ୟବହାର କରାଯିବ ?

ଏସବୁ ଆପଣଙ୍କ ଗୋଚରାର୍ଥେ ଜଣାଇ ଦିଆଯାଉଛି । ରାଜପଣ ଜାରି ରଖିବା ନିମନ୍ତେ ଥାକରେଙ୍କୁ ଆଦେଶ ଦିଆଗଲେ ଆପଣଙ୍କର ଖ୍ୟାତି ବଢ଼ିବ । ଅପରିଚିତ ବ୍ୟକ୍ତିମାନଙ୍କ ଦ୍ୱାରା ଦୁର୍ଗ ଅବରୋଧ କରିବା ପ୍ରସ୍ତାବ ବିଚାରାଧୀନ ରହିଛି । ଶୀଘ୍ର ସେନାବାହିନୀ ଏଠାରେ ପହଞ୍ଚିବେ ବୋଲି ଗୁଜବ ଶୁଣିବାକୁ ମଧ୍ୟ ମିଳୁଛି । ନୂତନ କର୍ମଚାରୀ ନିଯୁକ୍ତ ହେଉଛନ୍ତି । ନିଷ୍କର୍ଷ ହେଉଛି ଯେ, ଏସବୁ ଆୟୋଜନର ଗୋଟିଏ ମାତ୍ର ଲକ୍ଷ୍ୟ, ରାଜ୍ୟକୁ ସମ୍ପୂର୍ଣ୍ଣଭାବରେ ଖାସ୍ କରିନେବାଦ୍ୱାରା ପୂର୍ଣ୍ଣ ହେବ । ସୈନ୍ୟ ଠୁଳ କରିବା, ଦତ୍ତକକୁ ବାହାରିଯିବା ନିମନ୍ତେ ଆଦେଶ ଦେବା ତଥା ନିବେଦନର ଉତ୍ତର ବଳ ପ୍ରଦର୍ଶନ ସାହାଯ୍ୟରେ ଦେବା ଦ୍ୱାରା ଏହା ହିଁ ସାବ୍ୟସ୍ତ ହେଉଛି । ପରିସ୍ଥିତି ସମ୍ପର୍କରେ ଆପଣଙ୍କୁ ଜଣାଇଦେବା ଆମର କର୍ତ୍ତବ୍ୟ ।

ରାଜ୍ୟ ଆମକୁ ଫେରାଇଦେବା ହିଁ ଆପଣଙ୍କ ପକ୍ଷରେ ଯୁକ୍ତିଯୁକ୍ତ ହେବ ବୋଲି ଆମେ ଆଶା କରୁଛୁ । ଅତୀତରେ ଆପଣ ଆମକୁ ଯେଉଁଭଳି ସାହାଯ୍ୟ କରୁଥିଲେ, ଏବେ ତାହା କଲେ ଆପଣଙ୍କର ଲୋକପ୍ରିୟତା ବଢ଼ିବ । ଆପଣଙ୍କ ବ୍ୟତୀତ କିଏ ବା ଆମକୁ ସାହାଯ୍ୟ କରିବ ? କେବଳ ଆପଣଙ୍କ ଉପରେ ବିଶ୍ୱାସ ରଖି ଆମେ ଏପର୍ଯ୍ୟନ୍ତ ଧୈର୍ଯ୍ୟର ସହ ସବୁ ସହିଗଲୁ । ବାକିସବୁ ବିଷୟ ଆପଣ ରଚପ୍ପାଙ୍କଠାରୁ ବୁଝିବେ ।''

ରାଣୀଙ୍କର ଏହି କରୁଣ ନିବେଦନ ସମ୍ପର୍କରେ ଚାପ୍‌ଲିନ୍ ନୀରବ ରହିଲେ । ଚେନମ୍ମା ସପ୍ତାହେ ପର୍ଯ୍ୟନ୍ତ ଉତ୍ତର ପ୍ରତୀକ୍ଷାରେ ରହିଲେ । ଏହାପରେ ସେ ସାହାସର ସହିତ ଏହି ବିପଦର ସମ୍ମୁଖୀନ ହେବା ନିମନ୍ତେ ବଦ୍ଧପରିକର ହେଲେ । 18 ଅକ୍ଟୋବର 1824ରେ ସେ ସମସ୍ତ ସର୍ଦ୍ଦାର ତଥା ଦରବାରୀମାନଙ୍କୁ ଆହ୍ୱାନ ଜଣାଇ ସେମାନଙ୍କୁ ଉଦ୍‌ବୋଧନ ଦେଲେ । ଥାକରେ ଏପର୍ଯ୍ୟନ୍ତ ତାଙ୍କୁ ଅପମାନ କରିବା ନିମନ୍ତେ ଯେଉଁ ପଦକ୍ଷେପମାନ ନେଇଛନ୍ତି, ରାଣୀ ସେ ସମ୍ପର୍କରେ ପ୍ରାଞ୍ଜଳ ଭାବରେ ଆଲୋଚନା କଲେ । ରାଜ-ପରିବାରର ସଦସ୍ୟ ତଥା ଦରବାରୀମାନଙ୍କ ପ୍ରତି ଯେଉଁ ଦୁର୍ବ୍ୟବହାର କରାଯାଇଥିଲା, ତାହା ତାଙ୍କୁ କ୍ରୋଧାନ୍ୱିତ କରିଥିଲା । ଆବେଗପୂର୍ଣ୍ଣ ଭାଷାରେ ସେ ଘୋଷଣା କଲେ, ''କିତ୍ତୁର ରାଜ୍ୟ ଆମର । ଆମ ରାଜ୍ୟର ଆମେ ସ୍ୱୟଂ ଅଧିକାରୀ । ଇଂରେଜମାନଙ୍କର ବକ୍ତବ୍ୟ ହେଉଛି ଯେ, ଦତ୍ତକ-ଗ୍ରହଣ ନ୍ୟାୟୋଚିତ ନୁହେଁ, କାରଣ ଆମେ ସେମାନଙ୍କ ଅନୁମତି ନେଇନାହୁଁ । ଏଥିପାଇଁ ଆମେ ସେମାନଙ୍କ ଅନୁମତି ନେବୁ, ଏହା କେଉଁଠି ଲେଖା ଅଛି ? ଥାକରେ କହୁଛନ୍ତି, ଦତ୍ତକ ଗ୍ରହଣ ବ୍ୟାପାରରେ ଆମେ ତାଙ୍କୁ ମିଛ କହିଛୁ । ସେ ଡଃ ବେଲ୍‌ଙ୍କ ଭଳି କମ୍ପାନୀର ଜଣେ

ସାଧାରଣ କର୍ମଚାରୀଙ୍କ କଥାକୁ ବିଶ୍ୱାସ କରିପାରନ୍ତି, ମାତ୍ର ଆମ ଉପରେ ତାଙ୍କର ଆସ୍ଥା ନାହିଁ । ଇଂରେଜମାନେ ଆମ ଦେଶକୁ ବ୍ୟବସାୟ କରିବା ଛଳରେ ଆସିଛନ୍ତି, ଆଉ ଆମେ ପରସ୍ପର ଭିତରେ ଲଢୁଥିବା ଦେଖି ଆମ ଦେଶକୁ ସେମାନେ ଗ୍ରାସକରିବାକୁ ଚାହାଁନ୍ତି । ଆମକୁ ଶାସନ କରିବାକୁ ଚାହାଁନ୍ତି । ସେମାନେ ଚାହୁଁଛନ୍ତି, ଆମେ ଭେଟିସ୍ୱରୂପ ସେମାନଙ୍କୁ ବିପୁଳ ଧନରାଶି ଅର୍ପଣ କରୁଁ । ହୁଏତ ଇତିମଧ୍ୟରେ ଏମାନେ ନିଜର ଧୂର୍ତ୍ତ ତଥା ଚାଲାକ ଉଦ୍ୟମଦ୍ୱାରା ଏହି ଅଞ୍ଚଳର ଅନ୍ୟ ଶାସକମାନଙ୍କୁ ପରାଜିତ କରିସାରିଲେଣି । ଯଦି ପେଶବାମାନେ ଆମ ସହିତ ଅନ୍ୟାୟ କରିଥାନ୍ତି, ତେବେ ଏକଥା ଭୁଲିଲେ ଚଳିବ ନାହିଁ ଯେ, ସେମାନେ ଆମର ଆତ୍ମୀୟ, ଦିନେ ନା ଦିନେ ସେମାନେ ନିଜର ତ୍ରୁଟି ଜାଣିପାରିବେ ଏବଂ ଏହି ବିଦେଶୀମାନଙ୍କୁ ନିଜର ପବିତ୍ର ଭୂମିରୁ ବହିଷ୍କାର କରିବାରେ ଆମର ସହାୟତା କରିବେ । ଇଂରେଜମାନେ କ'ଣ ଆମର ଆତ୍ମୀୟ ହୋଇପାରିବେ ? ଏମାନେ କ'ଣ ଆମର ଦେଶବାସୀ ? ଥାକରେ ଆଉ ତାଙ୍କ ତୋଷାମଦକାରୀମାନେ କ୍ଷୁଦ୍ର ରାଜ୍ୟ କିତ୍ତୁରକୁ ମୁହୂର୍ତ୍ତକ ମଧ୍ୟରେ ପରାଜିତ କରିପାରିବେ ବୋଲି ଯେଉଁ ଧାରଣା କରିଛନ୍ତି, ତାହା ନିତାନ୍ତ ଭ୍ରମାତ୍ମକ । ସେମାନଙ୍କୁ ଜଣାନାହିଁ ଯେ, କିତ୍ତୁର ଅଧିବାସୀ ସ୍ୱାଧୀନତା ନିମନ୍ତେ ନିଜର ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିଦେବା ନିମନ୍ତେ ପ୍ରସ୍ତୁତ । ସ୍ୱାଧୀନତା ନିମନ୍ତେ ଶହୀଦ ହୋଇଥିବା ଅଜସ୍ର ବ୍ୟକ୍ତିଙ୍କ ପବିତ୍ର ରକ୍ତରେ କିତ୍ତୁର ଭୂମି ରଞ୍ଜିତ । ଆମ ରାଜ୍ୟ ଆୟତନରେ କ୍ଷୁଦ୍ର ହୋଇପାରେ, ଇଂରେଜ ସେନା ତୁଳନାରେ ଆମ ସେନା ନଗଣ୍ୟ ହୋଇପାରନ୍ତି; ମାତ୍ର ସେମାନେ ଭଡ଼ାଟିଆ ନୁହଁନ୍ତି । ଆମର ଜଣେ ସୈନ୍ୟ ଦଶ ଜଣ ଇଂରେଜ ସୈନ୍ୟଙ୍କର ମୁକାବିଲା କରିପାରେ । ଆମେ ଥାକରେ ଆଉ ଚାପ୍‌ଲିନ୍‌ଙ୍କୁ ଜଣାଇ ଦେବାକୁ ଚାହୁଁ ଯେ, ପରିଣାମ ଯାହା ହେଉନା କାହିଁକି, ଆମେ କେବେ ନିଜର ମସ୍ତକ ଅବନତ କରିବୁନାହିଁ । ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ କିତ୍ତୁର ନିଜର ସ୍ୱାଧୀନତାନିମନ୍ତେ ସଂଗ୍ରାମ କରିଯିବ । ଇଂରେଜର ଗୋଲାମ ହେବା ଅପେକ୍ଷା ସେ ନିଜର ଜୀବନ ବଳୀ ଦେବାକୁ ପସନ୍ଦ ।

ରାଣୀଙ୍କର ଏହି ଉତ୍ତେଜନାପୂର୍ଣ୍ଣ ଭାଷଣଦ୍ୱାରା ଉପସ୍ଥିତ ପ୍ରତ୍ୟେକ ବ୍ୟକ୍ତି ନବ ଉତ୍ସାହରେ ମାତି ଉଠିଲେ । କିତ୍ତୁରର ସିପାହୀମାନଙ୍କ ତରବାରୀ ଝଲସିଉଠିଲା । ସମବେତ ଜନତା କଣ୍ଠରୁ ଗୁରୁଗମ୍ଭୀର ଧ୍ୱନୀ ଆକାଶ ସ୍ପର୍ଶ କଲା, ''କିତ୍ତୁର୍ ଅମର ରହେ''...''ରାଣୀ ଚେନ୍ନମ୍ମା ଜିନ୍ଦାବାଦ''... । ଗରୁ ଗୁରୁ ବିଗୁଲ ଧ୍ୱନିରେ କିତ୍ତୁର ଦୁର୍ଗ ପ୍ରକମ୍ପିତ ହେଲା ।

# ମହାନ୍ ବିଜୟ

ସେଦିନ ସଂଧ୍ୟାରେ ନିଜର କର୍ତ୍ତବ୍ୟନିଷ୍ଠ ସର୍ଦ୍ଦାର ତଥା ଅନୁଗତ ଦରବାରୀ ମାନଙ୍କଠାରୁ ବିଦାୟ ନେଇ ରାଣୀ ଆନନ୍ଦମନରେ ବିଶ୍ରାମ ନେବାକୁ ଚାଲିଗଲେ । କୁହାଯାଏଯେ  ସେଦିନ ରାତ୍ରିରେ ରାଣୀ ଚେନ୍ନମ୍ମା ନିଜର ସ୍ୱର୍ଗୀୟ ପତି ମଲ୍ଲସର୍ଜ୍ଜାଙ୍କୁ ସ୍ୱପ୍ନରେ ଦେଖିଥିଲେ । ରାଜା ତାଙ୍କୁ କହିଥିଲେ ଯେ, କିତ୍ତୁରର ସ୍ୱାଧୀନତା ତଥା ପ୍ରତିଷ୍ଠା ବଜାୟ ରଖିବା ନିମନ୍ତେ, ଚେନ୍ନମ୍ମାଙ୍କୁ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବାକୁ ପଡ଼ିବ । ଆହୁରି ସେ ରାଣୀଙ୍କୁ ସିପାହୀର ସାଜ୍ରୁ ପରିଧାନ କରି ଇଂରେଜ ବିରୁଦ୍ଧରେ ସୈନ୍ୟ ବାହିନୀର ନେତୃତ୍ୱ ଗ୍ରହଣ କରିବା ନିମନ୍ତେ ମଧ କହିଥିଲେ । ରାଜାଙ୍କର ନିର୍ଦ୍ଦେଶକୁ ପାଳନ କରିବା ନିମନ୍ତେ ଚେନ୍ନମ୍ମା ଶପଥ ଗ୍ରହଣ କରିବା ନିମନ୍ତେ ମଧ କହିଥିଲେ । ରାଜାଙ୍କର ନିର୍ଦ୍ଦେଶକୁ ପାଳନ କରିବା ନିମନ୍ତେ ଚେନ୍ନମ୍ମା ଶପଥ ଗ୍ରହଣ କଲେ ଏବଂ ଇଂରେଜ ବିରୁଦ୍ଧରେ ଯୁଦ୍ଧ କରିବା ନିମନ୍ତେ ପ୍ରତିଶ୍ରୁତି ମଧ ଦେଲେ । ସକାଳେ ଶଯ୍ୟା ତ୍ୟାଗ କରିବା ପରେ ମଧ ତାଙ୍କର ସ୍ୱପ୍ନର ପ୍ରତ୍ୟେକଟି ଶବ୍ଦ ପରିଷ୍କାର ମନେଥିଲା । ସେ ଖୁବ୍ ଶୀଘ୍ର ପୂଜ୍ୟ ସ୍ୱାମୀଜୀଙ୍କ ସହିତ ସାକ୍ଷାତ୍ କରିବା ନିମନ୍ତେ କଲମଠ ଯାତ୍ରା କଲେ ଏବଂ ତାଙ୍କର ଆଶୀର୍ବାଦ ଲାଭକଲେ । ପ୍ରାସାଦକୁ ଫେରିଆସି ସେ ମୁଖ୍ୟ ସେନାପତି ସର୍ଦ୍ଦାର ଗୁରୁ ସିଦ୍ଧପ୍ପା ତଥା ଅନ୍ୟ କେତେକ ଉଚ୍ଚପଦାଧିକାରୀଙ୍କ ଡକାଇ ପଠାଇଲେ । ଇଂରେଜମାନଙ୍କ ସହିତ ଯୁଦ୍ଧରେ ଯେଉଁ ପ୍ରକାର ଯୁଦ୍ଧ କୌଶଳ ପ୍ରୟୋଗ କରିବାକୁ ପଡ଼ିବ, ସେ ବିଷୟରେ ବିସ୍ତୃତ ଆଲୋଚନା ହେଲା ।

ରାଣୀ ବ୍ରିଟିଶ୍ ସେନା ବାହିନୀର ଅସ୍ତ୍ର ତଥା ସୈନ୍ୟବଳ ସମ୍ପର୍କରେ ସମ୍ୟକ୍ ଅବହିତ ଥିଲେ । ତାଙ୍କର ଆଶା ଥିଲା, ଏହି ସଂଙ୍କଟପୂର୍ଣ୍ଣ ମୁହୂର୍ତ୍ତରେ କୋହ୍ଲାପୁର ରାଜା ନିଶ୍ଚୟ ତାଙ୍କୁ ସାହାଯ୍ୟ କରିବେ । ଖୁବ୍ ଶୀଘ୍ର ତାଙ୍କ ନିକଟକୁ ଏକ ଦୂତ ପଠାଯାଇ ସୈନ୍ୟ ସାହାଯ୍ୟ ପ୍ରାର୍ଥନା କରାଗଲା । କିତ୍ତୁର ରାଜ୍ୟର ସର୍ଦ୍ଦାର, ସୁବେଦାର, କିଲ୍ଲାଦାର, ଦଳାଇ ଏବଂ ଚୌଧୁରୀମାନଙ୍କୁ ବିସ୍ତୃତ ନିର୍ଦ୍ଦେଶ ଦିଆଗଲା । ରାଣୀ ପ୍ରତ୍ୟେକ ଗ୍ରାମର ଜାଗିରି ଭୋଗୁଥିବା ସୈନ୍ୟମାନଙ୍କ ନିକଟକୁ ସମ୍ବାଦ ପଠାଇଲେ  ଏବଂ ଶୀଘ୍ର କିତ୍ତୁର ଆସିବା ନିମନ୍ତେ ଆଦେଶ ଦେଲେ । କିଲ୍ଲାଦାରବୃନ୍ଦ ଅଶ୍ୱାରୋହଣ କରି କିତ୍ତୁର ସମୀପବର୍ତ୍ତୀ ଆଠଟି ଗ୍ରାମରେ ଶୀଘ୍ର ଉପସ୍ଥିତ ହେଲେ । ପର୍ଯ୍ୟବେକ୍ଷଣ ଘାଟୀଗୁଡ଼ିକ ଦଖଲରେ ରଖି ଶତ୍ରୁମାନଙ୍କ ଗତିବିଧି ନିରୀକ୍ଷଣ  ତଥା ସମ୍ବାଦ ପ୍ରେରଣ ଥିଲା ଏମାନଙ୍କ କାର୍ଯ୍ୟ । ରାଜମହଲର ଚତୁର୍ଦ୍ଦିଗରେ ପହରା ଦିଆଯିବାର ବ୍ୟବସ୍ଥା ହୋଇଗଲା । ମହଲର ପଶ୍ଚିମ ଦିଗରେ ଥିବା କେମ୍ପନମରଡ଼ିରୁ ଆଖପାଖର 15/20 ମାଇଲ ପରିମିତ ଅଞ୍ଚଳ ପରିଷ୍କାର ଦେଖାଯାଉଥିଲା । ସେତେବେଳେ କିତ୍ତୁର ଦୁର୍ଗରେ 7000 ପଦାତିକ, 2000 ଘୋଡ଼ା, 1000 ଓଟ, 50 ହାତୀ, ଦୁଇଟି 24 ପାଉଣ୍ଡର ପିତଳ ତୋପ ଏବଂ ଉଚ୍ଚଶକ୍ତିସମ୍ପନ୍ନ ଆହୁରି 14ଟି ତୋପ ଥିଲା । କିତ୍ତୁରର ଯୋଦ୍ଧାଙ୍କ ନିକଟରେ ବନ୍ଧୁକ, ଛୁରା, ଧନୁଶର, ବର୍ଚ୍ଛା, କୁରାଢ଼ୀ ଏବଂ ଅନ୍ୟ ଅନେକ ଅସ୍ତ୍ରଶସ୍ତ୍ର ଥିଲା । ଏହା ବ୍ୟତୀତ ଥିଲେ 4000

ଶିକ୍ଷିତ ଜାଗିରିପ୍ରାପ୍ତ ସୈନ୍ୟ, ବିଶେଷ ପ୍ରୟୋଜନରେ ସେମାନଙ୍କୁ ଡକାଯାଉଥିଲା । ସମସ୍ତ ସେନାବାହିନୀକୁ ପ୍ରସ୍ତୁତ କରାଯାଇ ବିଶେଷ-ବିଶେଷ ଘାଟୀମାନଙ୍କରେ ସେମାନଙ୍କୁ ଠିକ କରି ରଖାଗଲା ।

ବ୍ରିଟିଶ୍ ଅଧିକାରୀମାନଙ୍କ ଆଦେଶ ଉପେକ୍ଷା କରିବାକୁ ସମସ୍ତ ଦଳାଇ ତଥା କିଲ୍ଲାଦାରମାନଙ୍କୁ ବିଶେଷ ଆଦେଶ ଦିଆଗଲା । ରାଣୀ ଚେନ୍ନମ୍ମାଙ୍କ ଆଦେଶ ବିନା ସେମାନେ କିଛି କରିବେ ନାହିଁ ବୋଲି ମଧ୍ୟ ସେମାନଙ୍କୁ ଜଣାଇ ଦିଆଗଲା ।

କିଲ୍ଲା ଭିତରେ ତଥା ବାହାରେ ବାତାବରଣ ସରଗରମ ଥିଲା । ରାଣୀ ଚେନ୍ନମ୍ମାଙ୍କ ଆଦେଶ ପାଳନ କରିବା ନିମନ୍ତେ ସନ୍ଦେଶ ବାହକମାନେ ଚାରିଆଡ଼େ ଧାଉଁଥିଲେ । ଦୁର୍ଗଦ୍ୱାରରେ ନିଯୁକ୍ତଥିବା ବ୍ରିଟିଶ୍ ସିପାହୀମାନେ ସେମାନଙ୍କୁ ରୋକିବାକୁ ଚେଷ୍ଟା କଲେ । ରାଣୀଙ୍କ ସିପାହୀ ଏହା ଶୁଣି ସ୍ତବ୍ଧ ହୋଇଗଲେ । ସେମାନେ ତୁରନ୍ତ ଧାରବାଡ଼କୁ ଖବର ପଠାଇଲେ ଯେ, କିତ୍ତୁରର ଲୋକେ ଅଗ୍ନିଗର୍ଭ ହୋଇ ରହିଛନ୍ତି ଏବଂ ଯେକୌଣସି ମୁହୂର୍ତ୍ତରେ ପରିସ୍ଥିତି ଅଶାନ୍ତ ହୋଇଯାଇପାରେ । ଏହି ସମ୍ବାଦ ଥାକ୍‌ରେ 19 ଅକ୍ଟୋବର 1824 ଦିନ ପାଇଲେ । ସେତେବେଳକୁ ସେ ଗୁପ୍ତ ସମ୍ବାଦ ପାଇସାରିଥିଲେ ଯେ, ଦେଶୀ ପଦାତିକ ବାହିନୀର ପଞ୍ଚମ ରେଜିମେଣ୍ଟର 500 ସୈନିକ ଏବଂ ଅଶ୍ୱାରୋହୀ ବାହିନୀର ପ୍ରାୟ 100 ସୈନିକ ହ୍ଲାଦଗୀ ଆଡୁ ବେଲଗାଁଓ ଅଭିମୁଖେ ଯାତ୍ରା କରୁଛନ୍ତି । ସେ ସେମାନଙ୍କୁ ସମ୍ବାଦ ପଠାଇଲେ ଯେ, ସେମାନେ କିତ୍ତୁର ଯାତ୍ରା କରନ୍ତୁ, କାରଣ ସେଠାରେ ଅଶାନ୍ତିର ଆଶଙ୍କା ଦେଖାଦେଇଛି । ସେଇ ସୈନ୍ୟଦଳ 20 ଅକ୍ଟୋବର 1824 ରେ କିତ୍ତୁର ପହଞ୍ଚିଗଲେ ।

ଏହା ଭିତରେ ଥାକ୍‌ରେ ନିଜ ଅଧୀନରେ ଥିବା କମାଣ ବାହିନୀ ତଥା ଅନ୍ୟ କେତେକ କର୍ମଚାରୀଙ୍କୁ ନେଇ କିତ୍ତୁରରେ ପହଞ୍ଚିଯାଇଥିଲେ । ସେ ଭାବିଥିଲେ, ଦୁର୍ଗ ବାହାରେ ଏତେ ଗୁଡ଼ିଏ ବ୍ରିଟିଶ୍ ସୈନ୍ୟ ଦେଖି ଲୋକମାନେ ଭୟଭୀତ ହୋଇ ପଡ଼ିବେ । ଏବଂ ଶାସକ ଆତ୍ମ ସମର୍ପଣ କରିଦେବେ । ନିମିଷକ ମଧ୍ୟରେ ବିଦ୍ରୋହ ଦମନ କରିପାରିବେ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ସୈନ୍ୟବାହିନୀ ନିମନ୍ତେ ଜାମନ୍‌ମରଡୀର ପୂର୍ବ ଦିଗରେ ଶିବିର ସ୍ଥାପନ କରିବା ନିମନ୍ତେ ସେ ଆଦେଶ ଦେଲେ ତଥା ସେନା ସହିତ ଆସିଥିବା ଅନ୍ୟ କର୍ମଚାରୀମାନଙ୍କ ନିମନ୍ତେ ଅନତିଦୂରରେ ପଶ୍ଚିମ ଚଟାଣରେ ଶିବିର ସ୍ଥାପନର ଆଦେଶ ପ୍ରଚାରିତ ହେଲା । 20 ଅକ୍ଟୋବର ଅପରାହ୍ନ ତଥା ସନ୍ଧ୍ୟା - ବ୍ରିଟିଶ୍ ସିପାହୀମାନେ ଏହି ଶିବିର ସ୍ଥାପନରେ ବ୍ୟସ୍ତ ରହିଲେ ।

20 ଅକ୍ଟୋବର ସକାଳେ ଥାକ୍‌ରେ ତାଙ୍କର ରାଜନୈତିକ ସହାୟକ ଷ୍ଟିଭେନ୍‌ସନ୍ ତଥା ଇଲିୟଟ୍‌ଙ୍କୁ ଦୁର୍ଗ ଭିତରକୁ ପଠାଇ, ସେମାନଙ୍କୁ କିତ୍ତୁରର ଗଣ୍ୟମାନ୍ୟ ନାଗରିକ ତଥା ପ୍ରଧାନ କର୍ମଚାରୀମାନଙ୍କଠାରୁ ବ୍ୟକ୍ତିଗତ ମୁଚାଲିକା ଆଦାୟ କରିଆଣିବା ନିମନ୍ତେ ଆଦେଶ ଦେଲେ । କିତ୍ତୁରର ରାଜକୋଷ ସେମାନଙ୍କ ଦାୟିତ୍ୱରେ ରହିବ ବୋଲି ସେମାନଙ୍କୁ ବୁଝାଇ ଦେବା ନିମନ୍ତେ କହିଲେ । ତଦନୁସାରେ ସେମାନେ ସର୍ଦ୍ଦାର ଗୁରୁ ସିଦ୍ଧପ୍ପା ତଥା ଅନ୍ୟ କେତେକ ପ୍ରମୁଖ କର୍ମଚାରୀଙ୍କ ସହିତ ସାକ୍ଷାତ୍ କରି ଥାକ୍‌ରେଙ୍କ ଆଦେଶ ଜଣାଇ ଦେଲେ । ସେମାନେ ଜାଣିନଥିଲେ ଯେ ଇତିମଧ୍ୟରେ କିତ୍ତୁରର ବାତାବରଣ ସମ୍ପୂର୍ଣ୍ଣ ବଦଳିଯାଇଛି ଏବଂ ସମଗ୍ର ଜନତା ବିଦ୍ରୋହ ନିମନ୍ତେ ପ୍ରସ୍ତୁତ ହୋଇ ରହିଛନ୍ତି । ସେନାପତିମାନେ ଥାକ୍‌ରେଙ୍କ ଆଦେଶକୁ ଉପେକ୍ଷା କରି ଜଣାଇ ଦେଲେ ଯେ, ରାଣୀଙ୍କ ଆଦେଶ ବିନା କୌଣସି ଦଲିଲ ଦସ୍ତାବିଜରେ ସ୍ୱାକ୍ଷର କରିବା ସେମାନଙ୍କ ପକ୍ଷରେ ସମ୍ଭବ ନୁହେଁ । କ୍ରୁଦ୍ଧ ଥାକ୍‌ରେ ଏଥର ଅଶ୍ୱାରୋହୀ ବାହିନୀର ସେନାପତିଙ୍କୁ ଡକାଇ ପଠାଇଲେ । ଏଥିରେ ପ୍ରାୟ 100 ସୈନିକ ଥିଲେ । ଗୋଲନ୍ଦାଜ

ବାହିନୀ ନେଇ ଦୁର୍ଗମଧ୍ୟରେ ପ୍ରବେଶ କରିବାକୁ ତଥା ରାଜପକ୍ଷୀୟ ସେନାପତିମାନଙ୍କୁ ଶୀଘ୍ର ବନ୍ଦୀ କରିବା ଲାଗି ସେମାନଙ୍କୁ ଆଦେଶ ଦିଆଗଲା । ଯେତେବେଳେ ଅଶ୍ୱାରୋହୀ ସୈନିକ ଦଳ ଦୁର୍ଗମଧ୍ୟରେ ପ୍ରବେଶ କଲେ, ଗୁରୁ ସିଦ୍ଧପ୍ପା ନିଜର ପ୍ରସ୍ତୁତ ସେନାବାହିନୀକୁ ଏମାନଙ୍କୁ ଶୀଘ୍ର ଦୁର୍ଗବାହାରକୁ ତଡ଼ି ଦେବା ନିମନ୍ତେ ଆଦେଶ ଦେଲେ । କିତ୍ତୁରର ସୈନ୍ୟବାହିନୀ ନିର୍ଭୀକ ଭାବରେ ଏମାନଙ୍କର ସମ୍ମୁଖୀନ ହୋଇ ଅତି ଅଳ୍ପ ସମୟ ମଧ୍ୟରେ ଏମାନଙ୍କୁ ଆୟତ୍ତ କରିନେଲେ ।

ଏତିକିବେଳେ ଦ୍ୱାରରକ୍ଷୀମାନେ ଦୁର୍ଗଦ୍ୱାର ବନ୍ଦ କରିଦେଲେ ଏବଂ ପରାଜିତ ଅସ୍ତବ୍ୟସ୍ତ ବ୍ରିଟିଶ୍ ସେନାବାହିନୀ ଗୁପ୍ତଦ୍ୱାର ବାଟେ ବାହାରକୁ ପଳାଇଲେ । ରାଣୀଙ୍କ ସିପାହୀ ସେମାନଙ୍କ ମଧ୍ୟରୁ କେତେକଙ୍କୁ ହତ୍ୟା କଲେ ଏବଂ ଖେମନମରଡ୍ଡୀ ବାହାରେ ବ୍ରିଟିଶ୍ ଶିବିର ପର୍ଯ୍ୟନ୍ତ ଅନ୍ୟମାନଙ୍କୁ ଅନୁଧାବନ କଲେ । ବ୍ରିଟିଶ୍ ସୈନ୍ୟମାନଙ୍କ ମଧ୍ୟରୁ କିଛି ଏଣେତେଣେ ଆତ୍ମଗୋପନ କଲେ ତଥା କିଛି କାମନମରଡ୍ଡୀ ସମୀପ ଶିବିରରେ ଲୁଚିଗଲେ । କିତ୍ତୁରର ସିପାହୀମାନେ ପ୍ରାୟ 40 ଜଣଙ୍କୁ ବନ୍ଦୀକରି ଦୁର୍ଗ ମଧ୍ୟକୁ ଫେରି ଆସିଲେ । ଏଥିରେ ବ୍ରିଟିଶ୍ ପକ୍ଷର ବାରଜଣ ବାଳକ ତଥା କିଛି ସ୍ତ୍ରୀ ଲୋକ ଥିଲେ । ସେମାନଙ୍କୁ ରାଣୀଙ୍କ ସମ୍ମୁଖରେ ଉପସ୍ଥାପନ କରାଗଲା । ରାଣୀ ସୈନ୍ୟମାନଙ୍କୁ ବନ୍ଦୀଶାଳାକୁ ପଠାଇଦେଲେ । ମହିଳା ତଥା ବାଳକମାନଙ୍କ ସହିତ ସେ ଅତ୍ୟନ୍ତ ସଦୟ ବ୍ୟବହାର କରି, ସେମାନଙ୍କୁ ବନ୍ଦୀ କରିଥିବାରୁ ନିଜର ସିପାହୀମାନଙ୍କୁ ଭର୍ତ୍ସନା କଲେ । ତାଙ୍କର ଆଦେଶାନୁସାରେ ଏମାନଙ୍କୁ ରାଜମହଲରେ ଆଶ୍ରୟ ଦିଆଯାଇ ସେମାନଙ୍କ ଖାଦ୍ୟପେୟର ସୁବ୍ୟବସ୍ଥା କରିଦିଆଗଲା । ରାଣୀ ସିଂହାସନରୁ ଓହ୍ଲାଇ ବାଳକମାନଙ୍କୁ ସ୍ନେହ ସମ୍ଭାଷଣ କଲେ ତଥା ସେମାନଙ୍କୁ ଅଭୟ ଦେଲେ । ସେଠାରେ ସେମାନଙ୍କର କୌଣସି ପ୍ରକାର କ୍ଷତିର ଆଶଙ୍କା ନାହିଁ ବୋଲି ମଧ୍ୟ ବୁଝାଇଦେଲେ । ତାଙ୍କ ସ୍ନେହପୂର୍ଣ୍ଣ ବ୍ୟବହାରରେ ଖୁବ୍‌ଶୀଘ୍ର ବନ୍ଦୀମାନେ ଆଶ୍ୱସ୍ତ ହେଲେ । ସମସ୍ତ ବାଳକ ତଥା ମହିଳାମାନଙ୍କୁ ରାଜଭବନର ଅତିଥିଶାଳାକୁ ନିଆଯାଇ ସେଠାରେ ସେମାନଙ୍କୁ ଭୋଜନ ଦିଆଗଲା ଏବଂ ଅତିଥି ଭାବରେ ଗ୍ରହଣ କରିନିଆଗଲା ।

ଏହାପରେ ରାଣୀ ଦୂତ ହସ୍ତରେ ଇଂରେଜ ଶିବିରକୁ ସମ୍ବାଦ ପ୍ରେରଣକଲେ ଯେ, ସେମାନଙ୍କ ସ୍ତ୍ରୀଲୋକ ଓ ବାଳକମାନେ ଦୁର୍ଗ ମଧ୍ୟରେ ନିରାପଦରେ ଅଛନ୍ତି ଏବଂ ଯେକୌଣସି ସମୟରେ ସେମାନଙ୍କୁ ଫେରାଇ ଦିଆଯାଇପାରେ । ରାଣୀଙ୍କର ଏହି ମାନବିକତାପୂର୍ଣ୍ଣ ପଦକ୍ଷେପ ମୁହୂର୍ତ୍ତକ ପାଇଁ ଥାକ୍‌ରେଙ୍କୁ ମୁହ୍ୟମାନ କରିଦେଲା । ସେ ଏହି ମହୀୟସୀ ମହିଳାଙ୍କ ସହିତ ସାକ୍ଷାତ୍ ଆଲୋଚନା କରିବାକୁ ଚାହୁଁଥିଲେ । କୁହାଯାଏ, ରାଣୀଙ୍କୁ 11ଟି ଗ୍ରାମ ବଦଳରେ ସମସ୍ତ ପ୍ରକାର ବିଦ୍ରୋହ ବନ୍ଦ କରିବା ନିମନ୍ତେ ପ୍ରସ୍ତାବ ଦେବାକୁ ମଧ୍ୟ ସେ ପ୍ରସ୍ତୁତ ହୋଇଥିଲେ । ଏହି ପ୍ରସ୍ତାବ ରାଣୀଙ୍କ ନିକଟରେ ପେଶ୍ କରାଗଲା । ସେ ଘୃଣାରେ ଏହାକୁ ପ୍ରତ୍ୟାଖ୍ୟାନ କଲେ । ଥାକ୍‌ରେଙ୍କ ସହିତ ସାକ୍ଷାତ୍ କରିବାକୁ ସେ ଚାହୁଁନଥିଲେ । ତେଣୁ କହିପଠାଇଲେ ଯେ, ଅସୁସ୍ଥ ଥିବାରୁ ସେ କାହାରି ସହିତ ସାକ୍ଷାତ୍ କରିବା ଅବସ୍ଥାରେ ନାହାନ୍ତି । ଥାକ୍‌ରେ ଭାବିଲେ, ହୁଏତ ପରଦିନ ସେ ତାଙ୍କୁ ସାକ୍ଷାତ୍ କରିପାରନ୍ତି । ତେଣୁ ସେ ଅପେକ୍ଷା କଲେ । ସେହି ରାତିରେ ରାଣୀ ପୁନର୍ବାର ସର୍ଦ୍ଦାର ଗୁରୁ ସିଦ୍ଧପ୍ପା ତଥା ଅନ୍ୟ ପ୍ରମୁଖ ସର୍ଦ୍ଦାରମାନଙ୍କୁ ଡକାଇ ପଠାଇଲେ ଏବଂ ପରିସ୍ଥିତିର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରିସାରିବା ପରେ ସ୍ଥିର ହେଲା ଯେ, ବର୍ତ୍ତମାନ ଥାକ୍‌ରେଙ୍କ ସହିତ ସାକ୍ଷାତ୍ କରିବା ଉଚିତ୍ ହେବନାହିଁ । କାରଣ କିତ୍ତୁରରେ ଆତଙ୍କବାଦ ସୃଷ୍ଟି କରିବା ନିମନ୍ତେ ସୈନ୍ୟବାହିନୀ ସହିତ ଆପୋଷ ଆଲୋଚନା ଯେ ସମ୍ପୂର୍ଣ୍ଣ ବ୍ୟର୍ଥ ହେବ, ଏଥିରେ କାହାରି ସନ୍ଦେହ ନଥିଲା ।

ଥାକ୍‌ରେ ରାଣୀଙ୍କ ସହିତ ସାକ୍ଷାତ୍ କରିବା ଅଭିପ୍ରାୟରେ ତହିଁ ଆରଦିନ ସକାଳେ ଦୁର୍ଗ ମଧ୍ୟସ୍ଥ କଚେରୀରେ ଉପସ୍ଥିତ ହେଲେ । ରାଜଭବନର ଦ୍ୱାର ପର୍ଯ୍ୟନ୍ତ ଯିବା ନିମନ୍ତେ କେହି ତାଙ୍କ କଥାରେ ରାଜି ହେଲେ ନାହିଁ । ସେ ବାରମ୍ବାର ରାଜପରିବାରର ସଦସ୍ୟ ତଥା ସର୍ଦ୍ଦାରମାନଙ୍କୁ ଏ ବିଷୟରେ ଅନୁରୋଧ ଜଣାଇ ବିଫଳ ହେଲେ । ସେ ଦିନ ଥିଲା 'ମହାନବମୀ' ଏବଂ ସମଗ୍ର ରାଜମହଲ ଉତ୍ସବମୁଖରିତ ହୋଇ ଉଠିଥିଲା । ସର୍ଦ୍ଦାର ସୁବେଦାର, ଗଣ୍ୟମାନ୍ୟ ବ୍ୟକ୍ତି ତଥା ପଡ଼ୋଶୀ ଗ୍ରାମର ସନନ୍ଦଧାରୀ ଭଦ୍ରବ୍ୟକ୍ତି ବୃନ୍ଦ ବିପୁଳ ସଖ୍ୟାରେ ରାଜସଭାରେ ଏକତ୍ରିତ ହୋଇଥିଲେ । ଥାକ୍‌ରେ ଏହି ବିପୁଳ ଜନସଂଖ୍ୟାର ଗତାଗତ ଲକ୍ଷ୍ୟ କଲେ । ନିରାଶ ଏବଂ ଦୁଃଖିତ ହୋଇ ସେ ଭବିଷ୍ୟତ୍ କର୍ମପନ୍ଥା ସ୍ଥିର କରିବା ନିମନ୍ତେ ଶିବିରକୁ ଲେଉଟି ଆସିଲେ ।

ସନ୍ଧ୍ୟାରେ ସେ ସର୍ଦ୍ଦାର ଗୁରୁ ସିଦ୍ଧପ୍ପା ତଥା ଅନ୍ୟ ପଦାଧିକାରୀମାନଙ୍କୁ ତାଙ୍କ ସହିତ ଅବିଳମ୍ବେ ସାକ୍ଷାତ୍ କରିବା ନିମନ୍ତେ କହି ପଠାଇଲେ । ସେମାନଙ୍କ ସହିତ ଶିଷ୍ଟାଚାରପୂର୍ଣ୍ଣ ବ୍ୟବହାର କରାଯାଇ ନାହିଁ, ଏବଂତେଣୁ ସେମାନେ ଥାକ୍‌ରେଙ୍କ ସହିତ ସାକ୍ଷାତ କରିବାକୁ ଚାହାନ୍ତି ନାହିଁ ବୋଲି ଜଣାଇଦେଲେ । ଏହି ପ୍ରତ୍ୟକ୍ଷ ଅବଜ୍ଞା ଥାକରେଙ୍କୁ କ୍ରୁଦ୍ଧ କରିଦେବା ନିମନ୍ତେ ପର୍ଯ୍ୟାପ୍ତ ଥିଲା । ସେ ଗୋଲନ୍ଦାଜ ବାହିନୀର କମାଣ୍ଡର କ୍ୟାପ୍ଟେନ୍ ବ୍ଲାକ୍‌ଙ୍କ ତୋପସବୁକୁ ଦୁର୍ଗ ଦ୍ୱାରରେ ଠୁଳ କରିବା ନିମନ୍ତେ ଆଦେଶ ଦେଲେ । ତଦନୁଯାୟୀ ଦୁଇଟି ମୋଟର ଚାଳିତ ତୋପ ଦୁର୍ଗଦ୍ୱାରରେ ଉପସ୍ଥାପନ କରାଗଲା । ସେତେବେଳକୁ ଅନ୍ଧାର ହୋଇଯାଇଥିଲା । ଥାକ୍‌ରେ ଏଥର ଚନ୍ନେମ୍ମାଙ୍କୁ କହି ପଠାଇଲେ ଯେ, ଯଦି ସକାଳ ଭିତରେ ସେ ଆତ୍ମସମର୍ପଣ ନକରନ୍ତି ଏବଂ ଠିକ୍ ବାଟକୁ ନ ଆସନ୍ତି, ତେବେ ପରିଣାମ ଭୟଙ୍କର ହେବ । ସମ୍ଭବତଃ, ସକାଳ ଭିତରେ କିତ୍ତୁର ଯଦି ଆତ୍ମ ସମର୍ପଣ ନକରେ, ତେବେ ସେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ନିମନ୍ତେ ବଦ୍ଧପରିକର ହୋଇସାରିଥିଲେ ।

ପରଦିନ ଅକ୍ଟୋବର 23, 1824 । ସକାଳେ ବ୍ରିଟିଶ୍ ଗୋଲନ୍ଦାଜ ବାହିନୀର ମୁଖ୍ୟ ପ୍ରହରୀ ବଦଳାଇବା ନିମନ୍ତେ ଦୁର୍ଗକୁ ଗଲେ । ଦୁର୍ଗଦ୍ୱାର ବନ୍ଦଥିଲା ଏବଂ ରାଣୀଙ୍କ ପ୍ରହରୀ ତାଙ୍କୁ ଦୁର୍ଗ ମଧ୍ୟକୁ ଛାଡ଼ିଲେ ନାହିଁ । ଥାକ୍‌ରେ ଦ୍ୱାର ଖୋଲି ପ୍ରହରୀ ବଦଳ କରିବା ନିମନ୍ତେ ସୁଯୋଗ ଦେବାକୁ ବାରମ୍ବାର ଖବର ପଠାଇଲେ । ରାଣୀଙ୍କ ସିପାହୀମାନେ ଆଦୌ ଶୁଣିଲେ ନାହିଁ । ଥାକ୍‌ରେ ଅନ୍ୟ ଦୁଇଟି ମୋଟର ଚାଳିତ ତୋପ ନେଇ ଆସିବାକୁ କ୍ୟାପ୍ଟେନ୍ ବ୍ଲାକଙ୍କୁ ଆଦେଶ ଦେଲେ । ବ୍ୟବସ୍ଥା ଏଭଳି କରାଗଲା ଯେ, ଯେପରି ମୁହୂର୍ତ୍ତକ ମଧ୍ୟରେ ଦୁର୍ଗଦ୍ୱାରକୁ ଉଡ଼ାଇ ଦିଆଯାଇ ପାରିବ ।

ଇତିମଧ୍ୟରେ ଥାକ୍‌ରେ ଖବର ପାଇସାରିଥିଲେ ଯେ, ଅତି ଅଳ୍ପ ସମୟ ମଧ୍ୟରେ ଦୁର୍ଗ ମଧ୍ୟରେ 2000 ଲୋକ ଏକତ୍ରିତ ହୋଇ ସାରିଛନ୍ତି ଏବଂ ପ୍ରତ୍ୟେକ ମୁହୂର୍ତ୍ତରେ ଆହୁରି ବହୁ ଲୋକ ଦ୍ୱାର ଆଡ଼କୁ ଅଗ୍ରସର ହେବା ନିମନ୍ତେ ଆଦେଶ ଦେଲେ । ଏଥର ସେ କିତ୍ତୁରର ସେନାଧ୍ୟକ୍ଷ ଗୁରୁ ସିଦ୍ଧପ୍ପାଙ୍କ ନିକଟକୁ ଶୀଘ୍ର ଦୁର୍ଗଦ୍ୱାର ଖୋଲିଦେବା ନିମନ୍ତେ ସନ୍ଦେଶ ପ୍ରେରଣ କଲେ । ସିଦ୍ଧପ୍ପା ଉତ୍ତର ପଠାଇଲେ ଯେ, ବ୍ରିଟିଶ୍ ସେନା ନିରାପଦ ବ୍ୟବଧାନକୁ ଘୁଞ୍ଚି ନଯିବା ପର୍ଯ୍ୟନ୍ତ ଦୁର୍ଗଦ୍ୱାର ଖୋଲାଯିବ ନାହିଁ । ଏହା ପରେ ଥାକ୍‌ରେ ଅନ୍ତିମ ଚେତାବନୀ ଶୁଣାଇ କହିଲେ ଯେ, 24 ମିନିଟ୍ (ଘଡ଼ିଏ) ଭିତରେ ଦ୍ୱାର ଖୋଲା ନଗଲେ ତାକୁ ତୋପରେ ଉଡ଼ାଇଦିଆଯିବ । ଏଭଳି ଧମକର କିଛି ପ୍ରଭାବ ସୃଷ୍ଟି ହେଲା ନାହିଁ । ଥାକ୍‌ରେ ଗୋଲନ୍ଦାଜ ବାହିନୀର ଦୁଇ ଅଫିସର୍ କ୍ୟାପ୍ଟେନ୍ ବ୍ଲାକ୍ ତଥା ଲେଫ୍‌ଟନାଣ୍ଟ ଡିଟନ୍‌ଙ୍କୁ ଦୁଇ ଦ୍ୱାରରେ ମୁତୟନ କଲେ । ସିବେଲ୍‌ଙ୍କ ତୋପ ସେନାକୁ ଦୁର୍ଗଦ୍ୱାରର କିଛି ପଛକୁ ହଟାଇ ନିଆଯାଇ ପ୍ରସ୍ତୁତ ରଖାଗଲା । ଏହି ମୁହୂର୍ତ୍ତ ଅତ୍ୟନ୍ତ ଉତ୍ତେଜନାପୂର୍ଣ୍ଣ ଥିଲା । 24 ମିନିଟ୍ ମଧ୍ୟରେ ଦୁର୍ଗଦ୍ୱାର

ଖୋଲୁଛି କି ନାହିଁ ଏହା ଦେଖିବା ନିମନ୍ତେ ବ୍ରିଟିଶ୍‌ମାନେ ଯେତେବେଳେ ବ୍ୟଗ୍ର ହୋଇ ଅପେକ୍ଷା କରୁଥିଲେ ସେତେବେଳେ ହଠାତ୍ ଦୁର୍ଗଦ୍ୱାର ଉନ୍ମୁକ୍ତ ହେଲା । ରାଣୀଙ୍କର ବୀର ଅଶ୍ୱାରୋହୀ ସୈନିକ ବିଦ୍ୟୁତ୍ ଗତିରେ ବ୍ରିଟିଶ୍ ବାହିନୀ ଉପରେ ଝାମ୍ପି ପଡ଼ିଲେ ।

କିତ୍ତୁର ସୈନ୍ୟବାହିନୀ ଦୁଇପଟରୁ ଆକ୍ରମଣ ଚଳାଇଲେ । ପ୍ରଥମଟି ଦୁର୍ଗଦ୍ୱାର ବାଟେ, ଗୁରୁ ସିଦ୍ଧପ୍ପାଙ୍କ ନେତୃତ୍ୱରେ ସିଧା ସଳଖ ଆକ୍ରମଣ ତଥା ଦ୍ୱିତୀୟଟି ଦୁର୍ଗ ପ୍ରାସାଦ ଉପରୁ ସ୍ୱୟଂ ରାଣୀ ଚେନ୍ନମ୍ମାଙ୍କ ନିର୍ଦ୍ଦେଶରେ କ୍ଷେପଣାସ୍ତ୍ର ଆକ୍ରମଣ । ପରେ ରାଣୀ ସୁନାର କମରପଟି ପିନ୍ଧି (ଯେଉଁଥିରେ ତାଙ୍କର ତରବାରୀର ଖାପ ଝୁଲୁଥିଲା ) ଡାହାଣ ହାତରେ ଉନ୍ମୁକ୍ତ ତରବାରୀ ତଥା ବାମ ହାତରେ ନିଜ ତେଜସ୍ୱୀ ଅଶ୍ୱର ଲଗାମ ଧରି ସୈନ୍ୟ ବାହିନୀର ନେତୃତ୍ୱ ନେବାକୁ ବାହାରି ଆସିଲେ । ସେତେବେଳେ ସେ ଗଭୀର ଆତ୍ମ ପ୍ରତ୍ୟୟ ତଥା ଅନମନୀୟ ସାହସର ମୂର୍ତ୍ତିମନ୍ତ ବିଗ୍ରହ ଭଳି ଜଣାଯାଉଥିଲେ । ତାଙ୍କର ସିପାହୀ ଗୋଟିଏ ଗୁପ୍ତ ମାର୍ଗରେ ଆସି ବ୍ରିଟିଶ୍ ସୈନ୍ୟମାନଙ୍କୁ ନିର୍ଦ୍ଦୟ ଭାବରେ ହତ୍ୟା କରିବାକୁ ଲାଗିଲେ । ପୁଣି ସେମାନେ ତୋପ ଦାଗିବାକୁ ଯାଉଥିବା କ୍ୟାପ୍ଟେନ୍ ବ୍ଲାକ୍ ତଥା ଲେଫ୍‌ଟେନାଣ୍ଟ ଡିଟନ୍‌ଙ୍କଠାରୁ ତୋପ ଛଡ଼ାଇନେଲେ । ଉନ୍ମତ୍ତ ସୈନିକ ସେମାନଙ୍କର ଶିରଚ୍ଛେଦ କରି ଶରୀରକୁ ଛିନ୍ନଭିନ୍ନ କରିପକାଇଲେ । ଏହା ପରେ ସେମାନେ ଆବାରୋହୀ ଗୋଲନ୍ଦାଜ ବାହିନୀ ତଥା ପଦାତିକ ବାହିନୀ ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ହତ୍ୟାର ଏହି ଦାରୁଣ ବିଭୀଷିକା ବ୍ରିଟିଶ୍ ସୈନ୍ୟବାହିନୀର ନୈତିକ ସାହସକୁ ଦୋହଲାଇ ଦେଲା । କିତ୍ତୁର ବାହିନୀ ଯାହାକୁ ହାତ ପାଖରେ ପାଇଲେ, ତାକୁ ନିର୍ବିଚାରରେ ହତ୍ୟା କଲେ । ଅଶ୍ୱାରୋହଣ ପୂର୍ବକ ରାଣୀ ଚେନ୍ନମ୍ମା ଦୁର୍ଗ ଶିଖରରୁ ନିଜର ସେନା ବାହିନୀକୁ ନିୟନ୍ତ୍ରଣ କରୁଥିଲେ । ତାଙ୍କ ନିକଟରେ ତାଙ୍କର ବିଶ୍ୱସ୍ତ ଅଙ୍ଗରକ୍ଷୀ ଅମଟୁରର ସାଧୁନାବର ବାଲପ୍ପା ରହିଥିଲେ । ତାଙ୍କ ଆଖପାଖରେ ତରବାରୀହସ୍ତ ଚାରି ଜଣ ଅଶ୍ୱାରୋହୀ ଦଣ୍ଡାୟମାନ ରହି ତାଙ୍କୁ ସମସ୍ତ ପ୍ରକାର ସମ୍ଭାବ୍ୟ ବିପଦରୁ ରକ୍ଷା କରିବା ନିମନ୍ତେ ପ୍ରସ୍ତୁତ ଥିଲେ । କିତ୍ତୁର ସେନାବାହିନୀର ଅତର୍କିତ ଆକ୍ରମଣ ଇଂରେଜମାନଙ୍କୁ ପ୍ରସ୍ତୁତ ହେବାର ଅବସର ଦେଇ ନଥିଲା । ଏମାନଙ୍କ ମଧ୍ୟରୁ ଅଧିକାଂଶ କିତ୍ତୁର ବାହିନୀ ହାତରେ ହାଣ ଖାଇଲେ । ଅବଶିଷ୍ଟ ଭଗ୍ନମନୋରଥ ପରାଜିତ ସୈନ୍ୟ ଆତ୍ମରକ୍ଷା ନିମନ୍ତେ ପଳାଇବାକୁ ଲାଗିଲେ । ଚାରିଆଡ଼େ ହାହାକାର ପଡ଼ିଗଲା । ଥାକ୍‌ରେ ନିଜ ପକ୍ଷର ଏହି ଦୁର୍ଦ୍ଦଶା ଦେଖି ଅଶ୍ୱାରୋହଣପୂର୍ବକ ଦୁର୍ଗ ଆଡ଼କୁ ଝପଟିଗଲେ । ରାଣୀ ଚେନ୍ନମ୍ମାଙ୍କ ନିକଟରେ ଠିଆ ହୋଇଥିବା ବୀର ଯୋଦ୍ଧା ସାଧୁନାବର ବାଲ୍ଲପ୍ପା ତାଙ୍କୁ ବୁରୁଜ ଆଡ଼କୁ ଛୁଟିଆସୁଥିବାର ପ୍ରଥମେ ଦେଖିବାକୁ ପାଇଲେ । ଥାକ୍‌ରେଙ୍କୁ ଲକ୍ଷ୍ୟ କରି ସେ ଗୁଳି ଚଳାଇଲେ । ତାଙ୍କର ଲକ୍ଷ୍ୟଥିଲା ଅବ୍ୟର୍ଥ । ଛାତିରେ ଗୁଳି ବାଜିବାରୁ ଥାକ୍‌ରେ ଘୋଡ଼ା ଉପରେ ଢ଼ଳିପଡ଼ିଲେ । ଦଳେ ସିପାହୀ ତାଙ୍କ ଆଡ଼କୁ ଛୁଟିଯାଇ ମୁହୂର୍ତ୍ତକ ମଧ୍ୟରେ ତାଙ୍କୁ ଛିନ୍ନଭିନ୍ନ କରିପକାଇଲେ । ରାମ ହସ୍ମୀ ନାମକ ଜଣେ ନିଗ୍ରୋ ସିପାହୀ ତାଙ୍କର ଶିରଚ୍ଛେଦନ କଲା । ନିଜର ବର୍ଚ୍ଛା ଅଗରେ ଥାକ୍‌ରେଙ୍କ ଶିରକୁ ଝୁଲାଇ, ତାକୁ ସମସ୍ତଙ୍କୁ ଦେଖାଇବା ନିମନ୍ତେ ସେ ପାଗଳ ଭଳି ଯୁଦ୍ଧକ୍ଷେତ୍ରରେ ଇତସ୍ତତଃ ଦୌଡ଼ୁଥାଏ ତଥା 'ଥାକ୍‌ରେ ମଲା... ଥାକ୍‌ରେ ମଲା' କହି ଉଚ୍ଚସ୍ୱରରେ ଚିତ୍କାର କରୁଥାଏ ।

ବ୍ରିଟିଶ୍ ସୈନ୍ୟବାହିନୀର ସକଳ ଆଶା ମାଟିରେ ମିଶିଗଲା । ସେମାନେ ଏଣେତେଣେ ଧାଇଁବାକୁ ଲାଗିଲେ । ଏଥିରେ ପ୍ରଥମରୁ ପ୍ରାୟ 80 ଜଣ ବ୍ରିଟିଶ୍ ସିପାହୀ ମୃତ୍ୟୁ ବରଣ କରିସାରିଥିଲେ; କିଛି ଆହତ ହୋଇଥିଲେ ତଥା ଅବଶିଷ୍ଟ ଆତ୍ମଗୋପନ କରିଥିଲେ । ବ୍ରିଟିଶ୍ ବାହିନୀର ପ୍ରାୟ 400 ଦେଶୀୟ ପଦାତିକ ସୈନ୍ୟ ତଥା ଜଣେ ୟୁରୋପୀୟ ଗୋଲନ୍ଦାଜକୁ ବନ୍ଦୀ କରାଗଲା । ଅବଶିଷ୍ଟ ସୈନ୍ୟ

ପଳାୟନକଲେ । କଲେକ୍ଟର ଥାକ୍‌ରେ, କ୍ୟାପ୍ଟେନ୍ ବ୍ଲାକ୍, ଲେଫଟ୍‌ନାଣ୍ଟ ଡିଟନ୍, ତଥା ଲେଫ୍‌ଟ୍‌ନାଣ୍ଟ ସୀବେଲ୍ ପ୍ରଭୃତିଙ୍କର ମୃତ୍ୟୁ ହୋଇଥିଲା ।

ଇଂରେଜ ସୈନ୍ୟମାନଙ୍କୁ କିତ୍ତୁର ସୀମା ବାହାରକୁ ତଡ଼ିଦେଇ କିତ୍ତୁର ସେନା ଏକ ଉଲ୍ଲେଖଯୋଗ୍ୟ ବିଜୟ ହାସଲ କରିବା ପରେ କିତ୍ତୁର ଫେରିଆସିଲେ । ଏଥର ସେମାନଙ୍କୁ ନିଜ ଲୋକମାନଙ୍କ ମୁହାଁମୁହିଁ ହେବାକୁ ଥିଲା । ସେମାନେ ସେଇ ସବୁ ଇଂରେଜପଦଲେହନକାରୀ ଦେଶଦ୍ରୋହୀମାନଙ୍କୁ ହତ୍ୟା କରିବାକୁ ଚାହୁଁଥିଲେ । ନିଜର ତୁଚ୍ଛ ସ୍ୱାର୍ଥ ନିମନ୍ତେ କିତ୍ତୁର-ଗ୍ରାସ-କାମୀ ଇଂରେଜମାନଙ୍କୁ ଯେଉଁମାନେ ସାହାଯ୍ୟ କରିଥିଲେ, ଏଥର ସେମାନେ ଦେଶଭକ୍ତ ସିପାହୀମାନଙ୍କର କ୍ରୋଧର ଶରବ୍ୟ ହେଲେ । ଆତ୍ମଗୋପନକାରୀ ତିନି ଜଣ ବିଦ୍ରୋହୀ ଦେବାନ୍ କନ୍ନୂର ମଲ୍ଲପ୍ପା, କନ୍ନୂର ବୀରପ୍ପା ଏବଂ ସର୍ଦ୍ଦାର ମଲ୍ଲପ୍ପାଙ୍କୁ ଖୋଜି ବାହାର କରିଯାଇ ଘୋଷାଡ଼ି ଘୋଷାଡ଼ି ଦୁର୍ଗ ପର୍ଯ୍ୟନ୍ତ ଅଣାଗଲା । ସେମାନଙ୍କର ମୃତ୍ୟୁ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇଥିଲା । କାରଣ ଅଚିରେ ସେମାନଙ୍କୁ ହାତୀପାଦରେ ଦଳି ଦିଆଯାଇଥିଲା ।

ଇତିମଧ୍ୟରେ ସମ୍ବାଦ ମିଳିଲା ଯେ, କିଛି ଇଂରେଜ ପଦାଧିକାରୀ ତଥା ଧାରବାର ଏବଂ ବେଲଗାଁଓ କଚେରୀରର କେତେକ କର୍ମଚାରୀ, କିତ୍ତୁର ନଗରୀର କେତେକ ପରିବାରରେ ଆତ୍ମଗୋପନ କରିଛନ୍ତି । ଚେନ୍ନମ୍ମାଙ୍କ ସିପାହୀମାନେ ସହରସାରା ତନ୍ନତନ୍ନ ଅନୁସନ୍ଧାନ କରି ସେମାନଙ୍କୁ ଖୋଜି ବାହାରକଲେ । ଏମାନଙ୍କ ମଧ୍ୟରେ ଥିଲେ ଥାକ୍‌ରେଙ୍କ ରାଜନୈତିକ ପରାମର୍ଶଦାତା ଏ. ଆର୍. ଷ୍ଟିଭେନ୍‌ସନ୍, ଇଲିଅଟ, ଶ୍ରୀନିବାସ ରାଓ ପ୍ରମୁଖ । ସେମାନଙ୍କୁ ଗିରଫ କରି ରାଣୀଙ୍କ ନିକଟକୁ ଅଣାଗଲା । ସେନାପତିମାନେ ସେମାନଙ୍କୁ ଫାଶୀ ଦେବାକୁ ଅନୁମତି ମାଗିଲେ । ମାତ୍ର ରାଣୀ ଚେନ୍ନମ୍ମା ତଥା ସର୍ଦ୍ଦାର ଗୁରୁ ସିଦ୍ଧପ୍ପା ସେମାନଙ୍କୁ ଶାନ୍ତ ରହିବା ନିମନ୍ତେ ନିବେଦନ ଜଣାଇଲେ । ପ୍ରତ୍ୟେକ ଥର ଭଳି ରାଣୀ ଏଥର ମଧ୍ୟ କହିଲେ ଯେ, ବନ୍ଦୀମାନେ ଅସାମରିକ ବ୍ୟକ୍ତି, ତେଣୁ ସେମାନଙ୍କ ବିରୁଦ୍ଧରେ ମକଦ୍ଦମା ଚଳାଯାଇ, ସେମାନେ ଦୋଷୀ ସାବ୍ୟସ୍ତ ହେବା ପରେ ହିଁ ଯାହା କିଛି ଦଣ୍ଡ ଦିଆଯାଇପାରେ । ସେ ପର୍ଯ୍ୟନ୍ତ ସେମାନଙ୍କୁ ଯୁଦ୍ଧବନ୍ଦୀ ରୂପେ ଜେଲ୍‌ଖାନାରେ ରଖିବାକୁ ରାଣୀ ଆଦେଶ ଦେଲେ । ଉପଯୁକ୍ତ ସମୟରେ ରାଣୀ ହସ୍ତକ୍ଷେପ କରିନଥିଲେ ଉନ୍ମତ୍ତ ସିପାହୀମାନେ ଯେ ଏହାଙ୍କୁ ହତ୍ୟା କରିଥାନ୍ତେ ଏଥିରେ ସନ୍ଦେହ ନାହିଁ ।

ସେଦିନ ରାତିରେ କିତ୍ତୁରର ଚାରିଆଡ଼େ ଆନନ୍ଦ ଉଲ୍ଲାସ ଖେଳିବୁଲୁଥିଲା । ରାଜପ୍ରାସାଦ ଦୁର୍ଗ ତଥା ସହରରେ ବିଜୟୋତ୍ସବ ପାଳିତ ହେଉଥିଲା । ଦୁର୍ଗପ୍ରାଚୀର ଆଲୋକ ମାଳାରେ ଝଲମଲ କରୁଥିଲା । ସମଗ୍ର ବାୟୁମଣ୍ଡଳ ବିଜୟ ସୂଚକ ବିଗୁଲର ଗୁରୁଗମ୍ଭୀର ଧ୍ୱନିରେ ଗୁଞ୍ଜରିତ ହୋଇ ଉଠିଥିଲା । କିତ୍ତୁର ସମୀପବର୍ତ୍ତୀ ସବୁଜ ଗିରିପ୍ରାନ୍ତର, ସର୍ପିଳ ଗିରିବର୍ତ୍ମରୁ ଏହାର ପ୍ରତିଧ୍ୱନି ଶୁଣାଯାଉଥିଲା । କିତ୍ତୁରର ବୀର ସୈନିକ ଶକ୍ତିଶାଳୀ ଇଂରେଜ ବାହିନୀକୁ ସମ୍ପୂର୍ଣ୍ଣ ରୂପେ ପରାସ୍ତ କରିଦେଇ ଏହିଭଳି ଅମର କୀର୍ତ୍ତି ସ୍ଥାପନ କରିଥିଲେ । ଏହା କେବଳ କର୍ଣ୍ଣାଟକର ଇତିହାସରେ ନୁହେଁ, ସମଗ୍ର ଭାରତର ସ୍ୱାଧିନତା ସଂଗ୍ରାମର ଇତିହାସରେ ଏକ ଗୌରବପୂର୍ଣ୍ଣ ସ୍ମରଣୀୟ ଦିବସ ହୋଇ ରହିଛି ।

# କିତ୍ତୁରର ଦ୍ୱିତୀୟ ଯୁଦ୍ଧ ତଥା ପରାଜୟ

ତେଇଶ ଅକ୍ଟୋବର 1824 ରେ ହୋଇଥିବା ପୂର୍ବୋକ୍ତ ଯୁଦ୍ଧରେ ବ୍ରିଟିଶ୍ ସେନା ଚେନ୍ନମ୍ମାଙ୍କଦ୍ୱାରା ସମ୍ପୂର୍ଣ୍ଣ ରୂପେ ପରାଜିତ ହେଲେ । ପଳାୟନକାରୀ କିଛି କର୍ମଚାରୀ ତଥା ସୈନ୍ୟ ଏହି ଦୁଃଖଦ ଘଟଣାର ସମ୍ବାଦ ଜଣାଇବା ନିମନ୍ତେ ଧାରବାରରେ ପହଞ୍ଚିଲେ । ସେତେବେଳେ ସେଠାରେ ପ୍ରଚୁର ବ୍ରିଟିଶ୍ ସୈନିକ ତଥା ବେସାମରିକ କର୍ମଚାରୀ ମହଜୁଦ୍ ଥିଲେ । ପରାଜୟ ସମ୍ବାଦ ସେମାନଙ୍କୁ ସ୍ତମ୍ଭିତ କରିଦେଲା । ସେମାନେ ଏହାକୁ ବିଶ୍ୱାସ କରିପାରିଲେ ନାହିଁ । ଅଶ୍ୱାରୋହୀ ବାହିନୀର ଜଣେ ପଦାଧିକାରୀ ଡଃ ଟର୍ନବୁଲ୍ କ୍ଷତବିକ୍ଷତ ଅବସ୍ଥାରେ ସନ୍ଧ୍ୟା ୬ଟା ବେଳକୁ ଧାରବାରରେ ପହଞ୍ଚି ପ୍ରଥମେ ମୁସ୍‌ଗ୍ରେବ ହାରିସ୍ ନାମଧେୟ ବେସାମରିକ ପଦାଧିକାରୀଙ୍କୁ ଏହି ଦୁଃଖଦ ଘଟଣା ଜଣାଇଲେ । ହାରିସ୍ ତତ୍‌କ୍ଷଣାତ୍ ସେନାବାହିନୀର କମାଣ୍ଡର ଲେ. କ. ଡବ୍‌ଲୁ ଡୁରାଣ୍ଡଙ୍କ ନିକଟକୁ ଗୋଟିଏ ନୋଟ୍ ପଠାଇଲେ । ସେ ଲେଖିଥିଲେ :

ମହାଶୟ,

ଆପଣଙ୍କ ଗୋଚରାର୍ଥେ ଜଣାଇ ଦିଆଯାଉଛି ଯେ, ମୃତରାଜାଙ୍କ ସେନା ପଲିଟିକାଲ୍ ଏଜେଣ୍ଟ ଥାକ୍‌ରେଙ୍କ ପ୍ରେରିତ ଅଶ୍ୱାରୋହୀ ଗୋଲନ୍ଦାଜ ବାହିନୀ ମଧ୍ୟରେ କିତ୍ତୁରରେ ଯୁଦ୍ଧ ହୋଇଗଲା । ସମ୍ପ୍ରତି ଏଠାରେ ପହଞ୍ଚିଥିବା ଅଶ୍ୱାରୋହୀ ଡଃ ଟର୍ନବୁଲ୍ କହୁଛନ୍ତି ଯେ, ଗୋଲନ୍ଦାଜ ବାହିନୀକୁ ସମ୍ପୂର୍ଣ୍ଣରୂପେ ନଷ୍ଟ କରିଦିଆଯାଇଛି । ଅନେକ ୟୁରୋପୀୟ ସାମରିକ ତଥା ବେସାମରିକ ବ୍ୟକ୍ତି ହୁଏତ ଆହତ ହୋଇଛନ୍ତି କିମ୍ବା ମୃତ୍ୟୁ ବରଣ କରିଛନ୍ତି । ଥାକ୍‌ରେ ବେଲଗାଁଓ ସ୍ଥିତ କର୍ଣ୍ଣେଲ୍ ଗୀୟର୍ସଙ୍କୁ ଏହି ସମ୍ବାଦ ପଠାଇଛନ୍ତି । ମୁଁ ଆପଣଙ୍କ କର୍ମଚାରୀ ଭାବେ ଏହି ସମ୍ବାଦ ଆପଣଙ୍କୁ ଦେବାର ଉଦ୍ଦେଶ୍ୟ ହେଉଛି, ଆପଣ ଯଥୋଚିତ ପଦକ୍ଷେପ ନେଇ ପାରିବେ ।

ଧାରବାର — ସ୍ୱା.- ମୁସ୍‌ଗେବ୍ ହାରିସ୍

23 ଅକ୍ଟୋବର, 1824 — ସିଭିଲ୍ ସର୍ଭିସ୍

ପ୍ରାୟ ଘଣ୍ଟାକ ପରେ ଅନ୍ୟ ଏକ ଦୂତ ଥାକ୍‌ରେଙ୍କ ମୃତ୍ୟୁସମ୍ବାଦ ନେଇ ଆସିଲା । ଏହି ସମ୍ବାଦ ସହାୟକ କଲେକ୍ଟର ବାକର୍ ଫୁଲଷ୍ଟନ୍‌ଙ୍କୁ ଏଭଳି ଆତଙ୍କିତ କରିପକାଇଲା ଯେ, ସେ ତୁରନ୍ତ ସ୍ୱତନ୍ତ୍ର ଦୂତ ହାତରେ ନିମ୍ନଲିଖିତ ପତ୍ର ବେଲଗାଁଓ ପଠାଇଦେଲେ ।

**ନିର୍ଦ୍ଦେଶ**

କୌଣସି କର୍ମଚାରୀଙ୍କୁ ଯଥାଶୀଘ୍ର ବେଲଗାଁଓ ପଠାଇଦିଆଯାଉ ।

ମହାଶୟ କିମ୍ବା ମହାଶୟଗଣ,

ଭଗବାନଙ୍କ ଦ୍ୱାହି, କିଛି ସୈନ୍ୟ ତୁରନ୍ତ କିତ୍ତୁର ପଠାଇଦିଅନ୍ତୁ ।

ତୋପଖାନା ଛିନ୍ନଭିନ୍ନ କରି ଦିଆଯାଇଛି । ଅନୁମାନରେ ଥାକ୍ରେଙ୍କର ମୃତ୍ୟୁ ହୋଇଛି । କ୍ୟାପ୍ଟେନ୍ ବ୍ଲାକ୍ଙ୍କ ଶରୀର ଖଣ୍ଡବିଖଣ୍ଡିତ ହୋଇଛି । ସୀବେଲଙ୍କୁ ହତ୍ୟା କରାଯାଇଥିବାର ସମ୍ଭାବନା । ଡିଟନ୍ ମୃତ୍ୟୁ ବରଣ କରିଛନ୍ତି ତଥା ଥାକ୍ରେଙ୍କର ଦୁଇ ସହାୟକ ଇଲିଅଟ ଏବଂ ଷ୍ଟିଭେନ୍ସନ୍ଙ୍କର କୌଣସି ପତ୍ତା ମିଳୁନାହିଁ । ଭଗବାନଙ୍କ ଦ୍ୱାହି, ଶୀଘ୍ର ପଠାନ୍ତୁ । ଆମ ଏଠାର ସୈନ୍ୟ କୌଣସି କାମର ନୁହେଁ, କାରଣ ଏଠାରେ କେବଳ 100 ଜୱାନ ଅଛନ୍ତି ।

ଆପଣଙ୍କର

ଧାରବାର ସ୍ୱା. - ବି. ଫ୍ରିଲ୍ଷନ୍

ରାତ୍ରି 8ଟା, 23 ଅକ୍ଟୋବର, 1824 ସହାୟକ କଲେକ୍ଟର

ଧାରବାରର ବ୍ରିଟିଶ୍ ସାମରିକ ତଥା ବେସାମରିକ ଅଧିକାରୀମାନଙ୍କ ମଧ୍ୟରେ ହଟ୍ଟଗୋଳ ଆରମ୍ଭ ହୋଇଯାଇଥିଲା । ସେମାନେ ପ୍ରତ୍ୟେକେ ବିଭିନ୍ନ ସୈନିକ ଘାଟୀକୁ ତୁରନ୍ତ ସୈନ୍ୟ ପ୍ରେରଣର ନିର୍ଦ୍ଦେଶ ପଠାଇଦେଲେ । ପରଦିନ ସକାଳେ ଲେ. କ. ଡୁରାଣ୍ଡ ବରେଲୀର ସେନାମୁଖ୍ୟଙ୍କ ନିକଟକୁ ବିଦ୍ରୋହ ତଥା ଥାକ୍ରେଙ୍କ ମୃତ୍ୟୁ ସମ୍ବାଦ ଜଣାଇବା ନିମନ୍ତେ ଜଣେ ପତ୍ରବାହକ ପଠାଇଲେ । କିତ୍ତୁରର ବିଦ୍ରୋହୀ ଧାରବାର ଆକ୍ରମଣର ଯୋଜନା ପ୍ରସ୍ତୁତ କରୁଥିବାର ଏକ ଶୁଣାଖବର ମଧ୍ୟ ସେ ତାଙ୍କୁ ଜଣାଇ ଦେଲେ ।

ଇତିମଧ୍ୟରେ ଇଂରେଜ ସୈନ୍ୟ ଥାକ୍ରେ, ବ୍ଲାକ୍ ସିବେଲ୍ ତଥା ଡିଟନଙ୍କ ଶବ ନେଇ ଧାରବାର୍‌ରେ ପହଞ୍ଚିଗଲେ । ଏ ସମସ୍ତ ଶବକୁ ୟୁରୋପୀୟ କବରଖାନାରେ ସମାଧି ଦିଆଗଲା ।

ସେପଟରେ କିତ୍ତୁରର ସେନାବାହିନୀ ଜନତା ସହିତ ମିଶି ବିଜୟ ଉତ୍ସବ ପାଳନ କରୁଥିଲେ । ଶତ୍ରୁ ପରାଜିତ ହୋଇସାରିଥିଲେ । ସ୍ୱଦେଶୀ ଶତ୍ରୁଙ୍କୁ ଦଳିତ କରାଯାଇଥିଲା । ସର୍ବତ୍ର ଆନନ୍ଦ ତଥା ଉଲ୍ଲାସର ବାତାବରଣ ସୃଷ୍ଟି ହୋଇଥିଲା । ସେଦିନ ରାତିରେ ନିଜ ସେନାଠାରୁ ବିଦାୟ ନେଇ ରାଣୀ ଚେନ୍ନମ୍ମା ବିଶ୍ୱସ୍ତ ସହାୟକ ତଥା ସେନାପତି ଯଥା ସର୍ଦ୍ଦାର ଗୁରୁ ସିଦ୍ଧପ୍ପା, ସଙ୍ଗୋଲୀ ରାମାୟଣ, ଅବରାଦୀ ବୀରପ୍ପା ସର୍ଦ୍ଦାର ହିମ୍ମତ ସିଂହ, ନରସିଂହ ରାଓ ତଥା ଅନ୍ୟ କେତେକ କର୍ମଚାରୀଙ୍କ ସହିତ ଚୌକିମଠ ଯାତ୍ରାକଲେ । ସେଠାର ସମ୍ମାନନୀୟ ମୁଖ୍ୟ ସେବାୟତଙ୍କୁ ପାରମ୍ପରିକ ରୀତିରେ ସମ୍ବର୍ଦ୍ଧନା କରିସାରିବା ପରେ ରାଣୀ ତତ୍ରତ୍ୟ ଗୁପ୍ତ କକ୍ଷରେ ଭାବିଯୋଜନା ସମ୍ପର୍କରେ ବିସ୍ତୃତ ଆଲୋଚନା କଲେ ।

ରାଣୀ ସେମାନଙ୍କୁ ଶେଷ ଘଟଣା ସମ୍ପର୍କରେ ବିସ୍ତୃତ ବିବରଣୀ ଦେଲେ । ତାଙ୍କୁ ଖବର ମିଳିଥିଲା କି, ଧାରାବରରୁ ବେଲଗାଁଓର ମୁଖ୍ୟ କାର୍ଯ୍ୟାଳୟକୁ ତୁରନ୍ତ ସୈନ୍ୟପଠାଇବା ନିମନ୍ତେ ଅନୁରୋଧ ପତ୍ର ପଠାଯାଇ ସାରିଥିଲା । ସେ ଜାଣିଥିଲେ ଯେ, ଏହି ପରାଜୟ ପରେ ଇଂରେଜମାନେ ନିଷ୍କ୍ରିୟ ହୋଇ ବସିରହିବେ ନାହିଁ । କିତ୍ତୁରକୁ ପରାସ୍ତ କରିବା ନିମନ୍ତେ ପର୍ଯ୍ୟାପ୍ତ ସୈନ୍ୟ ସଂଗ୍ରହ ବ୍ୟବସ୍ଥା ଜାରିଥିବ । ସେ ନିଜର ଶକ୍ତି ସାମର୍ଥ୍ୟ ତଥା ଦୁର୍ବଳତା ସମ୍ପର୍କରେ ସମ୍ୟକ୍ ଅବଗତ ଥିଲେ । ଅବଶ୍ୟ କିତ୍ତୁରର ଦୁର୍ଗ ଅତ୍ୟନ୍ତ ଦୃଢ଼ ଏବଂ ସୁରକ୍ଷିତ ଥିଲା । ତାଙ୍କୁ ଏ କଥା ମଧ୍ୟ ଜଣାଥିଲା ଯେ, ତାଙ୍କର ସମସ୍ତ ସୈନ୍ୟ ଇଂରେଜମାନଙ୍କ ପାଇଁ ପର୍ଯ୍ୟାପ୍ତ ନଥିଲା । ବ୍ରିଟିଶ୍ ସେନା ଶକ୍ତି, ସାମର୍ଥ୍ୟ, ସଂଖ୍ୟା, ଅସ୍ତ୍ରଶସ୍ତ୍ରର ପରିମାଣ ତଥା ଯୁଦ୍ଧ କୌଶଳ ଦୃଷ୍ଟିରୁ କିତ୍ତୁର ସେନାଠାରୁ ଅଧିକ ଉଲ୍ଲେଖନୀୟ ଥିଲେ । ତାଙ୍କର ଶେଷ

ଆଶା ଥିଲେ କୋହ୍ଲାପୁର ରାଜା, ଯାହାଙ୍କ ପାଖକୁ ସେ ଚାରି ଦିନ ପୂର୍ବରୁ ସମ୍ବାଦ ପ୍ରେରଣ କରିସାରିଥିଲେ । ଏ ପର୍ଯ୍ୟନ୍ତ ତାଙ୍କଠାରୁ କୌଣସି ଉତ୍ତର ମିଳିନଥିଲା ।

ସେ ସ୍ୱାମିଜୀଙ୍କୁ ଆହୁରି ଜଣାଇଲେ ଯେ, ତାଙ୍କର ସୈନ୍ୟ ପ୍ରାୟ 40 ଜଣ ଇଂରେଜଙ୍କୁ ବନ୍ଦୀ କରିଛନ୍ତି । ଏମାନଙ୍କ ମଧ୍ୟରେ ଷ୍ଟିଭେନ୍‌ସନ୍ ତଥା ଇଲିଅଟ୍ ନାମଧେୟ ଦୁଇଜଣ ଗୁରୁତ୍ୱପୂର୍ଣ୍ଣ ବେସାମରିକ କର୍ମଚାରୀ ଅଛନ୍ତି । ବହୁ ଆଲୋଚନା ପରେ ରାଣୀ ଏବଂ ତାଙ୍କ କର୍ମଚାରୀମାନେ ଗୋଟିଏ ସିଦ୍ଧାନ୍ତରେ ପହଞ୍ଚିଗଲେ । ସମସ୍ତେ ଗୋଟିଏ ବିଷୟରେ ଏକମତ ହେଲେ ଯେ, ଇଂରେଜମାନଙ୍କ ସହିତ ସୌହାଦ୍ର୍ୟପୂର୍ଣ୍ଣ ସମ୍ପର୍କ ରକ୍ଷା କରାଯିବା ନିମନ୍ତେ ସମସ୍ତ ପ୍ରକାର ଉଦ୍ୟମ ହେବା ଆବଶ୍ୟକ । ଅତୀତ ଭଳି କିତ୍ତୁରର ସ୍ୱାୟତ୍ତ ଶାସନ ବ୍ୟବସ୍ଥା ଇଂରେଜମାନେ ମାନିନେବା ଉଚିତ । ସିଦ୍ଧାନ୍ତ କରାଗଲା ଯେ, ବ୍ରିଟିଶ୍‌ମାନଙ୍କ ସହିତ ଯୋଗାଯୋଗ କରି ରାଜ୍ୟର ସ୍ୱାର୍ଥରକ୍ଷା ନିମନ୍ତେ ପ୍ରଯତ୍ନଶୀଳ କୌଣସି ଓକିଲଙ୍କୁ ନିଯୁକ୍ତ କରାଯାଉ । ସେମାନେ ଆହୁରି ଏକମତ ହେଲେ ଯେ, ଷ୍ଟିଭେନ୍‌ସନ୍ ତଥା ଇଲିୟଟ୍‌ଙ୍କୁ ଯଦି ସମ୍ଭବ ହୁଏ ସଦିଚ୍ଛାର ବାହକ ରୂପେ କିମ୍ବା ନ୍ୟାସ ରୂପରେ ବ୍ୟବହାର କରାଯାଉ । ଏହି ପ୍ରୟୋଜନକୁ ଆଖିରେ ରଖି ବେସାମରିକ କର୍ମଚାରୀ ଦ୍ୱୟଙ୍କ ପ୍ରତି ଅତ୍ୟନ୍ତ ବିନମ୍ର ତଥା ଭଦ୍ର ବ୍ୟବହାର କରାଯାଉ । ପରିଣାମରେ ଏମାନଙ୍କର ସାହାଯ୍ୟରେ ଅନୁକୂଳ ସର୍ତ୍ତ କିମ୍ବା ସ୍ୱାୟତ୍ତ ଶାସନ ନିମନ୍ତେ ବ୍ରିଟିଶ୍ ମୁଖପାତ୍ରଙ୍କ ସହ ମୂଲଚାଲ କରାଯାଇପାରେ । ଏ ସମସ୍ତ ପ୍ରଯତ୍ନ ବିଫଳ ହେଲେ ଶରୀରର ଶେଷ ରକ୍ତ ବିନ୍ଦୁ ଦେଇ ଯୁଦ୍ଧ କରିବା ବ୍ୟତୀତ ଆଉ ଅନ୍ୟ ପଥ ନାହିଁ ବୋଲି ରାଣୀ ଜଣାଇଦେଲେ ।

ଚେନମ୍ମା ବହୁ ଆଶା କରିଥିଲେ ଯେ, କୋହ୍ଲାପୁର ରାଜା ନିଶ୍ଚୟ ତାଙ୍କୁ ସାହାଯ୍ୟ କରିବେ । ଏଥିରୁ ଦକ୍ଷିଣାଞ୍ଚଳର ପ୍ରତ୍ୟେକ ରାଜ୍ୟ ବ୍ରିଟିଶ୍ ଶକ୍ତି ବିରୁଦ୍ଧରେ ମୁଣ୍ଡ ଟେକିବା ନିମନ୍ତେ ସାହସ ପାଇବେ ବୋଲି ତାଙ୍କର ବିଶ୍ୱାସ ଥିଲା ।

ବହୁତ ରାତିରେ ଚୌକିମଠରୁ ଫେରିବା ପରେ ସର୍ଦ୍ଦାର ଗୁରୁ ସିଦ୍ଧପ୍ପା, ଅବରାଦୀ ବାରପ୍ପା ତଥା ସର୍ଦ୍ଦାର ହିମ୍ମତ ସିଂହ ପ୍ରଭୃତି କିତ୍ତୁର ଜେଲ୍‌ରେ ଷ୍ଟିଭେନ୍‌ସନ୍ ଏବଂ ଇଲିଅଟ୍‌ଙ୍କ ସହିତ ସାକ୍ଷାତ୍ କରି ସେମାନଙ୍କ ସହିତ ଭଦ୍ରୋଚିତ ବ୍ୟବହାର କରାଯିବ ବୋଲି ସେମାନଙ୍କୁ ଜଣାଇ ଦେଲେ । ସେମାନଙ୍କର ଦେଖାଶୁଣାରେ କୌଣସି ପ୍ରକାର ତ୍ରୁଟି ହେବନାହିଁ ବୋଲି ନିର୍ଭର ପ୍ରତିଶ୍ରୁତି ଦେଲେ । ସେମାନେ ଆହୁରି ଜଣାଇଲେ ଯେ, ରାଜ୍ୟର ସ୍ୱାୟତ୍ତ ଶାସନ ବ୍ୟବସ୍ଥା ଫେରାଇ ଦେବା ନିମନ୍ତେ ବମ୍ବେର ଗଭର୍ଣ୍ଣର ଏଲଫିନ୍‌ଷ୍ଟୋନ୍‌ଙ୍କୁ ନିବେଦନ କରାଯାଇଛି । ଥାକ୍‌ରେ କିତ୍ତୁରର ଶାସକ ତଥା ଜନସାଧାରଣଙ୍କ ସହିତ ଯେଉଁ ଦୁର୍ବ୍ୟବହାର କରିଥିଲେ, ତାହା ମଧ୍ୟ ତାଙ୍କୁ ଜଣାଇ ଦିଆଯାଇଛି । ଏଲଫିନ୍‌ଷ୍ଟୋନ୍‌ଙ୍କଠାରୁ କୌଣସି ଉତ୍ତର ନ ଆସିବା ପର୍ଯ୍ୟନ୍ତ ସେମାନଙ୍କ ସହିତ କୌଣସି ପ୍ରକାରର ଦୁର୍ବ୍ୟବହାର କରାଯିବ ନାହିଁ । ଏହାଛଡ଼ା ନିଜର ସହକର୍ମୀ, ବନ୍ଧୁ ତଥା ଅଧିକାରୀମାନଙ୍କୁ ସମ୍ବାଦ ପ୍ରେରଣ କରିବାର ସ୍ୱାଧୀନତା ସେମାନଙ୍କର ରହିବ । ପରିଣାମରେ ସେମାନେ ମଧ୍ୟ କିତ୍ତୁରର ପରିସ୍ଥିତି, ଏଠାକାର ଘଟଣାବଳୀ ସମ୍ପର୍କରେ ପ୍ରକୃତ ଜ୍ଞାନ ଲାଭ କରିପାରିବେ । ଏହି ପ୍ରସ୍ତାବ ଯେ ରାଣୀଙ୍କଦ୍ୱାରା ଅନୁମୋଦିତ ଏ ବିଷୟ ମଧ୍ୟ ଇଂରେଜ ଦୁଇ ଜଣଙ୍କୁ ଜଣାଇ ଦିଆଗଲା । ସେମାନଙ୍କୁ ଆହୁରି ମଧ୍ୟ ବୁଝାଇ ଦିଆଗଲା ଯେ, ବନ୍ଧୁତ୍ୱର ଏହି ଉଦାରତାକୁ କିତ୍ତୁରର ଦୁର୍ବଳତା ବୋଲି ବୁଝିବା ଉଚିତ ନୁହେଁ । ଏହା ପରେ ଯଦି ଇଂରେଜ ପଶୁଶକ୍ତି ସାହାଯ୍ୟରେ କିତ୍ତୁର ଗ୍ରାସ କରିବାକୁ ଚାହେଁ, ତେବେ ପ୍ରାଣଦେଇ କିତ୍ତୁରବାସୀ ଏହାର ଅମୂଲ୍ୟ ସ୍ୱାଧୀନତା ରକ୍ଷା କରିବେ । ବିକଳ୍ପରେ ନିଜର ସମ୍ମାନନୀୟା ରାଣୀ ଚେନମ୍ମାଙ୍କ ସହିତ ନିଜ ପରିବାରର ମହିଳାମାନଙ୍କୁ ନିଜ ହାତରେ ହତ୍ୟା କରିବେ ସିନା, ପରାଧୀନ କିତ୍ତୁରରେ

ଇଂରେଜମାନଙ୍କ ଅଧୀନରେ ଜୀବନ କଟାଇବେ ନାହିଁ ।

ପରଦିନ ଅର୍ଥାତ୍ 24 ଅକ୍ଟୋବର 1824 ସକାଳେ ଉଭୟ ବନ୍ଦୀ ପୁନେସ୍ଥିତ ଦକ୍ଷିଣାଞ୍ଚଳ କମିଶନର୍ ଚାପ୍‌ଲିନ୍‌ଙ୍କ ପାଖକୁ ପତ୍ର ଲେଖି 23 ଅକ୍ଟୋବର ଦିନ କିତ୍ତୁରରେ ଘଟିଯାଇଥିବା ସମସ୍ତ ବ୍ୟାପାରର ଏକ ଆନୁପୂର୍ବିକ ବିବରଣୀ ତାଙ୍କୁ ଜଣାଇଦେଲେ । ପତ୍ରଟି ନିମ୍ନରୂପେ :-

ପ୍ରେରକ : ଜେ. ଏ. ଆର୍. ଷ୍ଟିଭେନସନ୍

24 ଅକ୍ଟୋବର, 1824

ପ୍ରାପ୍ତେଷୁ :

ବି. ଚାପ୍‌ଲିନ୍

କମିଶନର୍ ଇନ୍ ଡେକାନ୍

ମହାଶୟ,

ଆପଣଙ୍କୁ ଥାକରେଙ୍କ ମୃତ୍ୟୁ ସମ୍ବାଦ ଜଣାଇବା ମୋର ନିଷ୍ଠୁର କର୍ତ୍ତବ୍ୟ । କାଲି କିତ୍ତୁର ଦୁର୍ଗଦ୍ୱାର ଆଡ଼େ ଆସୁଥିବା ବେଳେ ଗୁଳି ବାଜି ତାଙ୍କର ଦେହାନ୍ତ ହୋଇଗଲା । ଗତ କିଛିଦିନ ହେଲା କିତ୍ତୁରର ସର୍ଦ୍ଦାରମାନଙ୍କ ମଧ୍ୟରେ ଅସନ୍ତୋଷର ନିଆଁ ଜୁହୁଳୁଥିଲା ଏବଂ ଶେଷରେ ସେମାନେ ମୋ ନିର୍ଦ୍ଦେଶ ପାଳନ କରିବାକୁ ମନା କରିଦେଲେ । ଏହା ପରେ ସେମାନେ ଦୁର୍ଗଦ୍ୱାର ବନ୍ଦ କରିଦେଇ, କାହାରିକୁ ପ୍ରବେଶ କରିବାକୁ ଦେଲେ ନାହିଁ । କୋଷାଗାରର ସୁରକ୍ଷା ନିମନ୍ତେ ଥାକ୍‌ରେ ଆଗରେ କିଛି ସୈନିକ ତଥା ତୋପ ଇତ୍ୟାଦି ସ୍ଥାପନ କରିବା ଉଚିତ ମନେକଲେ । ମାଡ୍ରାଜ ତୋପଖାନାର ବ୍ଲାକ୍‌ଙ୍କୁ ଯେତେବେଳେ ଭିତରକୁ ଯିବା ନିମନ୍ତେ ଅନୁମତି ଦିଆଗଲା ନାହିଁ, ସେତେବେଳେ ଥାକରେ ଘଡ଼ିଏ ମଧ୍ୟରେ ଦୁର୍ଗଦ୍ୱାର ଖୋଲା ନଗଲେ, ତାହାକୁ ତୋପଦ୍ୱାରା ଉଡ଼ାଇଦିଆଯିବ ବୋଲି ସର୍ଦ୍ଦାରମାନଙ୍କୁ ଚେତାବନୀ ଶୁଣାଇଦେଲେ ।

ଦ୍ୱାର ନ ଖୋଲିବାରୁ ତଥା କେହି ଉତ୍ତର ନେଇ ନ ଆସିବାରୁ କ୍ୟାପ୍ଟେନ୍ ବ୍ଲାକ୍, କ୍ୟାପ୍ଟେନ୍ ସିବେଲ୍ ଏବଂ ଲେ. ଡାଟନ୍ ଦୁଇଟି ତୋପ ନେଇ ଦୁର୍ଗଦ୍ୱାର ଉଡ଼ାଇଦେବା ନିମନ୍ତେ ଅଗ୍ରସର ହେଲେ । ସଂକ୍ଷେପରେ ସେହି ଦୁଃଖଦ ଘଟଣା ବର୍ଣ୍ଣନା କରୁଛି । ଗୋଟିଏ ଗୁପ୍ତଦ୍ୱାର ବାଟେ ଆସି ରାଜପରିବାରର ଅନୁଚରବୃନ୍ଦ ତୋପ ଅଧିକାର କରିନେଲେ ତଥା ଯାହାକୁ ପାଇଲେ ତାକୁ ହତ୍ୟାକଲେ । ଠିକ୍ ଏହି ସମୟରେ ବିଚରା ଥାକରେ ସେଠାରେ ପହଞ୍ଚିଗଲେ । ତାଙ୍କୁ ଗୁଳି କରିଦିଆଗଲା । ମୋର ଆଶଙ୍କା, ତୋପଖାନାର ଅନ୍ୟ ତିନି ଅଧିକାରୀ ମଧ୍ୟ ଜୀବିତ ନାହାନ୍ତି । ଇଲିୟଟ୍ ଏବଂ ମୁଁ ଆତ୍ମରକ୍ଷା ନିମନ୍ତେ ପଳାୟନ କଲୁ । ମାତ୍ର ଶୀଘ୍ର ଧରାପଡ଼ିଗଲୁ । ବଡ଼ କଷ୍ଟରେ ଆମ ଜୀବନ ରହିଛି ସତ୍ୟ, ମାତ୍ର ଏବେ ଆମେ ବନ୍ଦୀ । ବମ୍ବେରୁ ଉତ୍ତର ନ ଆସିବା ପର୍ଯ୍ୟନ୍ତ ଏମାନେ ଆମକୁ ମୁକ୍ତି ଦେବେ ନାହିଁ ବୋଲି କହୁଛନ୍ତି । ଆମର ଜୀବନ ବିପଦଶୂନ୍ୟ ମନେ ହେଉନାହିଁ । କାରଣ ଥରେ ଏମାନଙ୍କର ରକ୍ତ-ପିପାସା ଜାଗ୍ରତ ହେଲେ କିଏ କାହାକୁ ରୋକିପାରିବ ? ଯଦି ବମ୍ବେର ଉତ୍ତର ସର୍ଦ୍ଦାରମାନଙ୍କର ମନୋମତ ନହୁଏ, ତେବେ ଏମାନଙ୍କ କଥା ବିଶ୍ୱାସ କରାଯିବା ଉଚିତ ବୋଲି ମନେ ହେଉନାହିଁ । ସର୍ଦ୍ଦାରମାନଙ୍କ ବକ୍ତବ୍ୟ ହେଉଛି ଯେ, ଯଦି ଏମାନଙ୍କ ଉପରେ ଆକ୍ରମଣ କରାଯାଏ, ତେବେ ଏମାନେ ପ୍ରଥମେ ସମସ୍ତ ମହିଳାଙ୍କୁ ନିଜ ହାତରେ ମାରି ପରେ ନିଜେ ପ୍ରାଣ ବିସର୍ଜନ କରିବେ ।

ଖୁବ୍ ଶୀଘ୍ର ଏ ପତ୍ର ଲେଖିବାକୁ ପଡୁଥିବାରୁ କ୍ଷମା ଚାହୁଁଛି । ସଙ୍ଗୀନ୍ ମୂନରେ ଏ ପତ୍ର ଲେଖାଯାଉଛି ।

କିତ୍ତୁର ଆପଣଙ୍କର
24 ଅକ୍ଟୋବର, 1824 ସ୍ୱା.- ଜେ. ଏ. ଆର୍. ଷ୍ଟିଭେନ୍‌ସନ୍

ଇଲିୟଟ୍ ଏବଂ ଷ୍ଟିଭେନ୍‌ସନ୍‌ଙ୍କ ବ୍ୟତୀତ ସିରସ୍ତାଦାର ଶ୍ରୀନିବାସ ରାଓ, ଦେଶୀୟ ଅଶ୍ୱାରୋହୀ ଗୋଲନ୍ଦାଜ ବାହିନୀର 30 କିମ୍ବା 40 ସିପାହୀ ତଥା ୟୁରୋପୀୟ ତୋପଖାନାର ଜଣେ ଜବାନ୍ ମଧ୍ୟ ବନ୍ଦୀ ହୋଇଛନ୍ତି । ସର୍ଦ୍ଦାର ଗୁରୁ ସିଦ୍ଧପ୍ପା ହେଉଛନ୍ତି ବର୍ତ୍ତମାନ ବିଦ୍ରୋହୀମାନଙ୍କ ନେତା ଯେକି ସ୍ୱର୍ଗୀୟ ମଲ୍ଲସର୍ଜାଙ୍କର ବିମାତାଙ୍କ ନାମରେ ବିଦ୍ରୋହ ପରିଚାଳନା କରୁଛନ୍ତି । ଏହି ବିମାତା ଉତ୍ତରାଧିକାର ସଂକ୍ରାନ୍ତରେ ସ୍ୱର୍ଗୀୟ ରାଜାଙ୍କର ବିଧବାଠାରୁ ଅଧିକ ସଚେତନ । ଏତେ ଦୂର ଆଗେଇଯିବା ପରେ ସେ ବର୍ତ୍ତମାନ ନିରାଶ ହୋଇ ପଡ଼ିଛନ୍ତି ଏବଂ ସରକାର ତାଙ୍କ ପ୍ରସ୍ତାବରେ ରାଜି ନ ହେଲେ ଶେଷ ପର୍ଯ୍ୟନ୍ତ ବିଦ୍ରୋହ ଚଳାଇଯିବେ ବୋଲି କହୁଛନ୍ତି । ପତ୍ରର ଉତ୍ତର ନପାଇବା ପର୍ଯ୍ୟନ୍ତ ଏମାନେ ଆମକୁ ବନ୍ଦୀ କରି ରଖିବେ, କାରଣ ଏମାନେ ଆଶା କରୁଛନ୍ତି ଯେ, ଅନ୍ତତଃ ଆମର ନିରାପତ୍ତା ନିମନ୍ତେ ସରକାର ସେମାନଙ୍କର ଦାବୀ ସମ୍ପର୍କରେ ସହାନୁଭୂତିର ସହିତ ବିଚାର କରିବେ । ସେମାନେ ଯେ ଶେଷ ପର୍ଯ୍ୟନ୍ତ ସଂଗ୍ରାମ ଚଳାଇଯିବେ, ଏଥିରେ ମୋର ଆଦୌ ସନ୍ଦେହ ନାହିଁ । ସମ୍ଭବତଃ, ଆମ ଉପରେ ପ୍ରତିଶୋଧ ମଧ୍ୟ ନେଇ ପାରନ୍ତି । ଗୁରୁ ସିଦ୍ଧପ୍ପା ଦୁର୍ବଳ ଚରିତ୍ରର ବ୍ୟକ୍ତି ହେଲେ ମଧ୍ୟ ଜିଦ୍‌ଖୋର । ସେ ଚାରିଆଡୁ ସୈନ୍ୟ ସଂଗ୍ରହ କରୁଛନ୍ତି ଏବଂ ସମ୍ପ୍ରତି ଦୁର୍ଗରେ ସମ୍ଭବତଃ 5000 ରୁ ମଧ୍ୟ ଅଧିକ ସୈନ୍ୟ ଅଛନ୍ତି ।

ସ୍ୱା: ଇଲିୟଟ

ପ୍ରଥମରୁ ସ୍ଥିର କରାଯାଇଥିବା ବ୍ୟବସ୍ଥାନୁସାରେ ରାଣୀ ଚେନ୍ନମ୍ମା 24 ତାରିଖ ସକାଳୁ ଦଳେ ସିପାହୀଙ୍କୁ ମୁଗଟଖାନ୍-ହୁବଲୀ ସମୀପସ୍ଥ ମଳପ୍ରଭା ନଦୀ ପହରା ଦେବା ନିମନ୍ତେ ପ୍ରେରଣ କଲେ । ବ୍ରିଟିଶ୍ ସେନାକୁ ନଦୀ ପାର ହେବା ନିମନ୍ତେ ସୁଯୋଗ ନଦେବାକୁ ସେମାନଙ୍କୁ ଆଦେଶ ଦିଆଗଲା । ଯେତେଦୂର ସମ୍ଭବ ସେମାନଙ୍କୁ ସେଇଠାରେ ଆଗୁଳି ରଖିବା ନିମନ୍ତେ କୁହାଗଲା । ନଦୀ ତଟବର୍ତ୍ତୀ ସମସ୍ତ ନୌକାକୁ ବୁଡ଼ାଇ ଦେବା ନିମନ୍ତେ ରାଣୀ ସ୍ୱତନ୍ତ୍ର ଆଦେଶ ଦେଲେ । ଏହି ବ୍ୟବସ୍ଥା ବ୍ରିଟିଶ୍ ସେନାର ଅଗ୍ରଗତି ରୋକିବା ନିମନ୍ତେ କରାଯାଇଥିଲା । ଏହା ପରେ ରାଣୀ ନିଜର ଆଉ ଦଳେ ସୈନିକଙ୍କୁ ମୁଗଟଖାନ୍-ହୁବଲୀ ତଥା କିତ୍ତୁରର ମଧ୍ୟବର୍ତ୍ତୀ ସଡ଼କ ପହରାଦେବା ନିମନ୍ତେ ପଠାଇଦେଲେ । ଏଥର ଚେନ୍ନାମ୍ମା ଶ୍ରୀନିବାସ ରାଓ ନାମକ ଜଣେ ଓକିଲଙ୍କୁ ମୈତ୍ରୀପୂର୍ଣ୍ଣ ସମ୍ଭାବନା ସମ୍ପର୍କରେ ଅନୁସନ୍ଧାନ କରିବା ନିମନ୍ତେ ଇଂରେଜମାନଙ୍କ ସହିତ ଆଲୋଚନା କରିବାକୁ ଧାରବାର ପଠାଇଲେ । ଦାକ୍ଷିଣାତ୍ୟର କମିଶନର୍ ଚାପ୍‌ଲିନ୍ ଏଭଳି ଘଟଣାରେ ଯଥେଷ୍ଟ ଉଦ୍‌ବିଗ୍ନ ହୋଇପଡ଼ିଥିଲେ । ତୀକ୍ଷ୍ଣବୁଦ୍ଧି ଚାପ୍‌ଲିନ୍ ହିଁ ଥାକରେଙ୍କ ସହ ହାତ ମିଳାଇ କିତ୍ତୁରକୁ ଗ୍ରାସ କରିବା ନିମନ୍ତେ ଉଦ୍ୟମ ଆରମ୍ଭ କରିଥିଲେ । ସେ ଥିଲେ ତତ୍କାଳୀନ ବ୍ରିଟିଶ୍ ସାମ୍ରାଜ୍ୟବାଦୀ ନୌକର ସାହିର ସୁଯୋଗ୍ୟ ପ୍ରତିନିଧି । ବ୍ରିଟିଶ୍ ସେନାବାହିନୀର ଏହି ଆକସ୍ମିକ ପରାଜୟରେ ତାଙ୍କର ସାମନ୍ତବାଦୀ ଅହଙ୍କାର ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । କ୍ରମଶଃ ଏହା ଭୀଷଣ ପ୍ରତିଶୋଧ ଲିପ୍‌ସାରେ ରୂପାନ୍ତରିତ ହେଲା ।

ରାଣୀ ଚେନ୍ନମ୍ମାଙ୍କ ପ୍ରସ୍ତାବ ସମ୍ପର୍କରେ ସେ ସମ୍ପୂର୍ଣ୍ଣ ଅବହିତ ଥିଲେ । ପାରସ୍ପରିକ ବୁଝାମଣା ତଥା ସମ୍ମାନଜନକ ରାଜିନାମାଦ୍ୱାରା ସମସ୍ତ ବିଦ୍ରୋହର ଅନ୍ତ ଘଟାଇବା ହିଁ ରାଣୀଙ୍କର ଲକ୍ଷ୍ୟ ଥିଲା । କିତ୍ତୁରକୁ ମାଟିରେ ମିଶାଇଦେବା ନିମନ୍ତେ ପର୍ଯ୍ୟାପ୍ତ ସେନା-ବ୍ୟବସ୍ଥା ହୋଇଯିବା ପର୍ଯ୍ୟନ୍ତ ଯେକୌଣସିମତେ ଆପୋଷ କଥାବାର୍ତ୍ତା ଜାରି ରଖିବା ନିମନ୍ତେ ଧୂର୍ତ୍ତ ଚାପ୍‌ଲିନ ଏକ ରାଜନୈତିକ

ଚାଲ୍ ଖେଳିଲେ । ତାଙ୍କର ଭବିଷ୍ୟତ୍ କାର୍ଯ୍ୟକଳାପରୁ ଏହା ହିଁ ପ୍ରମାଣିତ ହେଉଛି । ଏହି ନୀତିକୁ ଅତ୍ୟନ୍ତ ସାବଧାନତାର ସହିତ ପାଳନ କରାଗଲା । ସେ ଆର୍. ଇଡନ୍‌ଙ୍କୁ ବେଲଗାଁଓ ସ୍ଥିତ ମୁଖ୍ୟ କାର୍ଯ୍ୟାଳୟରେ କାର୍ଯ୍ୟବାହୀ ପଲିଟିକାଲ୍ ଏଜେଣ୍ଟ ଭାବେ ନିଯୁକ୍ତି ଦେଲେ । ମୁନ୍‌ରୋ ଧାରବାରର କାମଚଳା କଲେକ୍ଟର ନିଯୁକ୍ତ ହେଲେ । ମୁନ୍‌ରୋ କଥାବାର୍ତ୍ତା ଚଳାଇବାର ଆଦେଶ ପ୍ରାପ୍ତ ହେଲେ ।

ଏହା ମଧ୍ୟରେ ତାଙ୍କର ଜ୍ଞାତସାରରେ ବ୍ରିଟିଶ୍ ସେନାଧ୍ୟକ୍ଷମାନେ କିତ୍ତୁରର ଚାରିଆଡ଼େ ସୈନ୍ୟ ସମାବେଶ ନିମନ୍ତେ ପୂର୍ଣ୍ଣ ରୂପେ ପ୍ରସ୍ତୁତ ହୋଇଯାଇଥିଲେ । 25 ଅକ୍ଟୋବର ବେଲଗାଁଓସ୍ଥିତ କମାଣ୍ଡର କର୍ଣ୍ଣେଲ୍ ପିୟର୍ସ କିତ୍ତୁର ବିଦ୍ରୋହ ଦମନ ନିମନ୍ତେ ନିଜେ ନେଇଥିବା ପଦକ୍ଷେପ ସମ୍ପର୍କରେ ପୁନେସ୍ଥିତ କ୍ୱାର୍ଟର୍ ମାଷ୍ଟର୍ ଜେନେରାଲ୍‌ଙ୍କୁ ପତ୍ର ଲେଖିଲେ । ଏଥିରେ କିତ୍ତୁର ଯାତ୍ରା କରୁଥିବା ସେନାବାହିନୀ ସମ୍ପର୍କରେ ବିସ୍ତୃତ ବିବରଣୀ ଦିଆଯାଇଥିଲା ।

''କିତ୍ତୁରରେ କ୍ୟାପ୍ଟେନ୍ ବ୍ଲାକ୍‌ଙ୍କ ଅଧୀନସ୍ଥ ସେନାରେ ସାମିଲ ହେବା ନିମନ୍ତେ ନିମ୍ନଲିଖିତ ସୈନ୍ୟଦଳ ଆଜି ସକାଳେ ଯାତ୍ରା କରିଛନ୍ତି । ଅଶ୍ୱାରୋହୀ-ବ୍ରିଗେଡ୍ ତଥା ପଞ୍ଚମ ରେଜିମେଣ୍ଟର ଦେଶୀୟ ପଦାତିକ ବାହିନୀର ଗୋଟିଏ କମ୍ପାନୀ ସୈନ୍ୟ ଏହାର ଅନ୍ତର୍ଭୁକ୍ତ । ଚତୁର୍ଥ ରେଜିମେଣ୍ଟ ଲାଇଟ୍ କାଭାଲରୀର ଗୋଟିଏ ଅଂଶ 49 ରେଜିମେଣ୍ଟ ଦେଶୀୟ ପଦାତିକ ବାହିନୀର ଦୁଇଟି କମ୍ପାନୀ । ଏହା ପରେ ଗୁରୁ ଅସ୍ତ୍ରଗୁଡ଼ିକର ଶକ୍ତି । ହିଜ୍ ମାଜେଷ୍ଟିଙ୍କର 46ତମ ପଦାତିକ ସୈନ୍ୟମାନଙ୍କର ଗୋଟିଏ କମ୍ପାନୀ ଏବଂ ପାୟୋନିୟର୍ସଙ୍କ କମ୍ପାନୀ ଏବେ ପ୍ରାୟ ପ୍ରସ୍ତୁତ । କିତ୍ତୁରରେ ଶାନ୍ତି ସ୍ଥାପନ ହୋଇଯିବାରୁ ସେନାର କୌଣସି ପ୍ରୟୋଜନ ନାହିଁ, ଏହି ମର୍ମରେ ମୁଖ୍ୟ କଲେକ୍ଟରଙ୍କଠାରୁ ପତ୍ର ନପାଇଲେ ସୈନ୍ୟ ବାହିନୀ ଶୀଘ୍ର ଯାତ୍ରା ଆରମ୍ଭ କରିବେ ।

''ବେଲଗାଁଓରେ ଉଭୟ ଦଳର ମାଲ୍ ବହନ କରିବାକୁ ଘୋଡ଼ା ଗଧ ଇତ୍ୟାଦିର ଘୋର ଅଭାବ ହୋଇଥିବାରୁ ଭାରି ଅସ୍ତ୍ରଶସ୍ତ୍ର ମଧ୍ୟରେ କେବଳ ନୋତ୍‌ଜୋର୍ ତଥା ମୋର୍ଟାର ପ୍ରଭୃତି ନିଆଯିବା ଉଚିତ । ଅବଶିଷ୍ଟ ପଶୁଙ୍କୁ ବେଙ୍ଗୁରଲା ସୈନିକ ଭଣ୍ଡାରରୁ ମାଲ୍ ପରିବହନ ନିମନ୍ତେ ସେଠାକୁ ପଠାଇ ଦିଆଯାଇଛି । ଯଦିଓ ଥାକରେ ଏ ଘଟଣା ଉଲ୍ଲେଖ କରିନାହାନ୍ତି ତଥାପି ତାଙ୍କର ପତ୍ରବାହକ କହୁଛନ୍ତି ଯେ, ଅଶ୍ୱଚାଳିତ ତୋପ ମଧ୍ୟରୁ ଦୁଇଟିକୁ କିତ୍ତୁର ଦୁର୍ଗ ମଧ୍ୟକୁ ପ୍ରବେଶ କରାଯାଇଥିଲା । ପରେ ପଛଦ୍ୱାର ବନ୍ଦ କରିଦେଇ ରାଜ ସିପାହୀମାନେ ତାଙ୍କ ଉପରେ ଗୁଳି ଚଳାଇଥିଲେ ।

''କିତ୍ତୁର ଦୁର୍ଗ ଅତ୍ୟନ୍ତ ମଜଭୁତ ଏବଂ ବିଦ୍ରୋହୀମାନଙ୍କୁ ସରକାରୀ ଆଦେଶ ମାନିବା ନିମନ୍ତେ ବାଧ କରାଯିବା ପରେ , କିଛି ସମୟ ପର୍ଯ୍ୟନ୍ତ ଏହା ଉପରେ ବଳପୂର୍ବକ ନିଜ ଅଧିକାର ପ୍ରତିଷ୍ଠା କରିବାର ପ୍ରୟୋଜନ ହୋଇପାରେ । ତେଣୁ ମୁଁ ମାନ୍ୟବରଙ୍କ ଗୋଚରାର୍ଥେ ନିବେଦନ କରିବା ଉଚିତ ମନେକରୁଛି କି ମୋ ନିକଟରେ ଯେଉଁ ଅଳ୍ପ ସଂଖ୍ୟକ ସୈନିକ ଅଛନ୍ତି, ସେମାନେ ଏହି ବିରାଟ ସେନାବାହିନୀର ସମ୍ମୁଖୀନ ହୋଇପାରିବେ ନାହିଁ ।''

କର୍ଣ୍ଣେଲ୍ ଏଫ୍. ପିୟର୍ସଙ୍କ ପତ୍ରଗତ ଆଦେଶାନୁସାରେ ଲେ. କର୍ଣ୍ଣେଲ ମେକ୍‌ଲଏୟଡ଼ଙ୍କ ନେତୃତ୍ୱରେ ରେଜିମେଣ୍ଟ ବେଲଗାଁଓରୁ କିତ୍ତୁର ଯାତ୍ରା କରିଛନ୍ତି । ଏହାର କିଛି ସମୟ ପରେ ଧାରବାରରୁ ବ୍ରିଟିଶ୍ ସେନାର ଜଣେ ପତ୍ରବାହକ ଆସି ଜଣାଇଲେ ଯେ, ବିଦ୍ରୋହୀମାନେ ଧାରାବାର ଆକ୍ରମଣ କରିବାର ଯୋଜନା କରିଛନ୍ତି । ଏହା ଜାଣିବା ପରେ ବେଲଗାଁଓସ୍ଥିତ ଆସିଷ୍ଟାଣ୍ଟ କ୍ୱାର୍ଟର୍ ମାଷ୍ଟର୍ ଜେନେରାଲ୍ ଆଇ. ଆଇ. ଓ. ଡୁନୋ, କର୍ଣ୍ଣେଲ୍ ପିୟର୍ସଙ୍କ ଅନୁରୋଧ ଅନୁସାରେ ଲେ. କର୍ଣ୍ଣେଲ୍ ମାକଲଏଡ଼ଙ୍କ ନିକଟକୁ ତତ୍‌କ୍ଷଣାତ୍ ସମ୍ବାଦ ପଠାଇଲେ ଯେ, ସେ କିତ୍ତୁର ଅତିକ୍ରମ କରିଯାଆନ୍ତୁ ତଥା

ଏହି ଆକ୍ରମଣକୁ ପୂର୍ବାନୁମାନ କରିବା ନିମନ୍ତେ କିତ୍ତୁର ତଥା ଧାରବାର ମଧ୍ୟବର୍ତ୍ତୀ ମାର୍ଗର କୌଣସି ସ୍ଥାନରେ ଶିବିର ସ୍ଥାପନ କରନ୍ତୁ । ତାଙ୍କ ପତ୍ରଟି ନିମ୍ନଭଳି :

ସଂ : 754/1824

ଆସିଷ୍ଟାଣ୍ଟ କ୍ୱାର୍ଟର୍ ମାଷ୍ଟର୍ ଜେନେରାଲ୍‌ଙ୍କ
କାର୍ଯ୍ୟାଳୟ
ବେଲଗାଁଓ କ୍ୟାମ୍ପ,
ତା 25 ଅକ୍ଟୋବର 1824

ପ୍ରାପ୍ତେଷୁ :

ଲେଫ୍ଟନାଣ୍ଟ କର୍ଣ୍ଣେଲ୍ ମାକଲଏଡ୍
କମାଣ୍ଡିଂ ଫୋର୍ଥ ରେଜିମେଣ୍ଟ ଲାଇଟ୍ କାଭାଲ୍‌ରୀ

ମହାଶୟ,

ଯେଉଁ ଦୁଃଖଦ ଘଟଣା 23 ଅକ୍ଟୋବର ଦିନ କିତ୍ତୁରରେ ଘଟିଗଲା, ଯାହା ନିମନ୍ତେ ଥାକ୍‌ରେଙ୍କର ମୃତ୍ୟୁ ହୋଇଗଲା ତଥା ହର୍ସ ବିର୍ଗେଡ୍ ଏବଂ ପଞ୍ଚମ ରେଜିମେଣ୍ଟ ନେଟିଭ୍ ଇନ୍‌ଫାଣ୍ଟ୍ରି ଧ୍ୱଂସ ପାଇଗଲା, ଯେଉଁଥିପାଇଁ ଇଲିୟଟ୍ ଏବଂ ଷ୍ଟିଭେନ୍‌ସନ୍ ଏ ପର୍ଯ୍ୟନ୍ତ ମଧ୍ୟ ଦୁର୍ଗ ମଧ୍ୟରେ ନଜରବନ୍ଦୀ ରହିଛନ୍ତି ତାହାଦ୍ୱାରା ସମ୍ପୂର୍ଣ୍ଣ ଦେଶରେ ବିଦ୍ରୋହ ବ୍ୟାପିଯାଇଛି । ମଲପ୍ରଭା ନଦୀର ସମସ୍ତ ନୌକାକୁ ବୁଡ଼ାଇ ଦିଆଯାଇଛି ତଥା ସେଇ ନଦୀ ଏବଂ କିତ୍ତୁର ମଧ୍ୟରେ ସତର୍କ ପହରା ରଖାଯାଇଛି ।

ଏହି ପରିସ୍ଥିତି ବ୍ୟତୀତ ଶୁଣିବାକୁ ମିଳୁଛି ଯେ, କିତ୍ତୁରର ବିଦ୍ରୋହୀମାନେ ଧାରବାର ଆକ୍ରମଣ କରିବେ । ସେଠାରେ ମୁଖ୍ୟ କଲେକ୍ଟରଙ୍କ କାର୍ଯ୍ୟାଳୟ ରହିଥିବାରୁ ବହୁ ଅପରାଧୀ ରହିଛନ୍ତି । ପରିଣାମରେ ଦୁର୍ଗ ସୀମାରୁ ଆରମ୍ଭ କରି ବିଦ୍ରୋହ ସ୍ଥାନ ପର୍ଯ୍ୟନ୍ତ ବିପଦ ।

ଏଣୁ କିତ୍ତୁର ତଥା ଧାରବାର ମଝିରେ ପର୍ଯ୍ୟାପ୍ତ ସୈନ୍ୟ ବ୍ୟବସ୍ଥା ରଖାଯିବା ଆବଶ୍ୟକ । କାରଣ ଏହା ଫଳରେ ବିଦ୍ରୋହୀମାନଙ୍କର ସମ୍ଭାବିତ ଆକ୍ରମଣରୁ ଧାରବାରକୁ ରକ୍ଷା କରାଯାଇ ପାରିବ ।

ଏହି ଦୃଷ୍ଟିରୁ ଏଭଳି ସେନା ବାହିନୀରେ ଆର୍ଡ଼ିନାନ୍ସ ଏବଂ ପାର୍ଶ୍ୱବର୍ତ୍ତିତ କୋର୍‌ର ଅନେକ ଦଳ ରହିବେ, ଯେଉଁମାନେ ସିଧାସଳଖ ଆପଣଙ୍କ ଅଧୀନରେ ରହିବେ ।

ତେଣୁ ଆପଣ ଏହାକୁ କାଲି ସକାଳ ସୁଦ୍ଧା ମଲପ୍ରଭା ତଥା ମୁକଟଖାନ ହୁବଲୀ କ୍ଷେତ୍ରକୁ ପଠାଇ ଦିଅନ୍ତୁ । ଆର୍ଡ଼ିନାନ୍ସ ସେଠାରେ ପହଞ୍ଚିଯିବା ପରେ ଆପଣ ସେଇ ନଦୀ ପାରିହେବେ ତଥା କିତ୍ତୁର ଏବଂ ଧାରବାରର ପ୍ରାୟ ମଝାମଝି (କିତ୍ତୁର ଅପେକ୍ଷା ଧାରବାର ଆଡ଼କୁ ଅଧିକ) ଶିବିର ସ୍ଥାପନ କରିବେ । ପରିଣାମରେ ଧାରବାରକୁ ରକ୍ଷା କରାଯାଇପାରିବ ।

ଆପଣଙ୍କ ଅଧୀନରେ ଥିବା ଦଳ ଆକ୍ରମଣ ଅପେକ୍ଷା ବିପ୍ଳବୀମାନଙ୍କ ଆନ୍ଦୋଳନ ସଂକ୍ରାନ୍ତୀୟ ସମ୍ବାଦ ପ୍ରାପ୍ତି ନିମନ୍ତେ ଅଧିକ ପ୍ରଯତ୍ନଶୀଳ ହେବେ ତଥା କିତ୍ତୁର ତରଫରୁ ଅଶ୍ୱାରୋହୀ ତଥା ପଦାତିକ ଉଭୟ ଦଳ ଉପରେ ସମୟ ସମୟରେ ଗୋଇନ୍ଦାଗିରି କରିବେ । ଅନୁସନ୍ଧାନ କରିବେ ଏବଂ ଏଥିରୁ ପ୍ରାପ୍ତ ଯେଉଁ ଖବର ଆପଣ ଉଚିତ ମନେକରିବେ, ଜିଲ୍ଲା-ମୁଖ୍ୟାଳୟକୁ ନିୟମିତ ପଠାଉଥିବେ ।

ବେସାମରିକ ବିଭାଗରେ ଥାକ୍‌ରେଙ୍କ ଉତ୍ତରାଧିକାରୀ କିଏ ଏହା ଜାଣିନଥିବାରୁ କର୍ଣ୍ଣେଲ୍ ପିୟର୍ସ ତାଙ୍କ ସହିତ ଆପଣଙ୍କର ଯୋଗାଯୋଗ ସମ୍ପର୍କରେ କୌଣସି ନିର୍ଦ୍ଦେଶ ଦେଇପାରୁ ନାହାନ୍ତି । ମାତ୍ର ଯଦି କେହି ଆପଣଙ୍କୁ ଏହି ପଦବୀର ବୋଲି ମନେକରି କଥାବାର୍ତ୍ତା କରିବାକୁ ଚାହେଁ, ତେବେ

ଆପଣ ବର୍ତ୍ତମାନ ସ୍ଥିତି ସମ୍ପର୍କରେ ତାଙ୍କ ସହିତ ଆଲୋଚନା କରିପାରନ୍ତି, ମାତ୍ର କର୍ଣ୍ଣେଲ ପିୟର୍ସଙ୍କ ପୂର୍ବାଦେଶ ବିନା କିତ୍ତୁର ଦୁର୍ଗ ଆକ୍ରମଣ କରାଯିବାର କୌଣସି ଚେଷ୍ଟା କରାଯିବା ଅନୁଚିତ ।

ଧାରବାରର କମାନ୍ ଅଫିସରଙ୍କୁ ଆପଣ ଗୁପ୍ତରୂପରେ ସମସ୍ତ ସମ୍ବାଦ ଜଣାଉଥିବେ ବୋଲି ଆଶା କରାଯାଏ ।

ଆପଣଙ୍କର

ସ୍ୱା.- ଆଇ. ଆଇ. ଓ. ଡୁନୋ

ଆସିଷ୍ଟାଣ୍ଟ କ୍ୱାର୍ଟର୍ ମାଷ୍ଟର୍ ଜେନେରାଲ୍

ଏହା ମଧ୍ୟରେ ରାଣୀ ଚେନ୍ନାମ୍ମାଙ୍କ ଆଦେଶାନୁସାରେ ମୁକଟଖାନ ହୁବଲୀ କ୍ଷେତ୍ରରେ ନଦୀ ମଧ୍ୟସ୍ଥ ସମସ୍ତ ନୌକାକୁ ବୁଡ଼ାଇ ଦିଆଯାଇଥିଲା ତଥା ମୁକୁଟଖାନ୍ ହୁବଲୀ ଏବଂ କିତ୍ତୁର ମଧ୍ୟବର୍ତ୍ତୀ ଅଞ୍ଚଳରେ କିତ୍ତୁର ସେନା ପହରା ଦେଉଥିଲେ । କର୍ଣ୍ଣେଲ୍ ପାୟର୍ସ 25 ତାରିଖ ଦିନ ପୁନେ ସ୍ଥିତ କ୍ୱାର୍ଟର ମାଷ୍ଟର ଜେନେରାଲଙ୍କୁ ନୂତନ ଘଟଣା ସମ୍ପର୍କରେ ପତ୍ର ସଂ. 712/1824 ଦ୍ୱାରା ଅବହିତ କରାଇଥିଲେ । ସେହି ପତ୍ରର ପ୍ରୟୋଜନୀୟ-ଅଂଶ ନିମ୍ନରେ ଉଦ୍ଧୃତ କରାଯାଉଛି ।

''ପରିଣାମ ସ୍ୱରୂପ ମୁଁ ଲେ. କର୍ଣ୍ଣେଲ୍ ମାକଲଏଡ଼, ଚତୁର୍ଥ ଅଶ୍ୱାରୋହୀ ସେନାର ଅଧୀନରେ, ସେଇ ରେଜିମେଣ୍ଟର ଏତେବଡ଼ ଅଂଶକୁ ଯେତିକି (କେବଳ ଗୋଟିଏ ସ୍କ୍ୱାଡ୍ରନ୍ ତଥା ରୁଗ୍ଣ ଘୋଡାଙ୍କୁ ଛାଡ଼ି ) ପ୍ରସ୍ତୁତ କରାଯାଇପାରେ, ସେତିକ ସ୍କାଡ୍ରନ୍, ଯାହାକୁ ଟାଣିବା ପାଇଁ ବଳଦ ଥିବେ, ମହାମହିମ ସମ୍ରାଟଙ୍କର 46 ତମ ଫୁଟ୍ର ଗୋଟିଏ କମ୍ପାନୀକୁ , 49 ତମ ରେଜିମେଣ୍ଟର ଦୁଇ ପାର୍ଶ୍ୱ କମ୍ପାନୀକୁ ତଥା ଗାୟନୀୟର୍ସର ଗୋଟିଏ କମ୍ପାନୀକୁ ଯାତ୍ରାକରିବା ନିମନ୍ତେ ନିର୍ଦ୍ଦେଶ ଦେଇଛି ।

- ମୁଁ ଆହୁରି ନିର୍ଦ୍ଦେଶ ଦେଇଛି ଯେ, ଶୋଲାପୁରରୁ 23 ତମ ଲାଇଟ୍ ଇନ୍‌ଫାଣ୍ଟ୍ରି, ବସ୍ତା ବୋହିବା ପାଇଁ ବାହନର ବ୍ୟବସ୍ଥା ହୋଇଯିବା କ୍ଷଣି ଯାତ୍ରା କରନ୍ତୁ ।

ଏହା ସହିତ ମୁଁ ନିକଟବର୍ତ୍ତୀ ଜିଲ୍ଲାର ମୁଖ୍ୟ ସେନାଧିକାରୀଙ୍କୁ ନିମ୍ନଲିଖିତ ସୈନିକ ସହାୟତା ପ୍ରାର୍ଥନା କରିଛି । ୟୁରୋପୀୟାନ୍ ଫୁଟ୍ ଆର୍ଟିଲାରୀର ଗୋଟିଏ କମ୍ପାନୀ, ହିଜ୍ ମାଜେଷ୍ଟିଙ୍କ 46 ତମ ଫୁଟ୍ରେ ପୁରା ଦୁଇଟି କମ୍ପାନି, ନେଟିବ୍ ଇନ୍‌ଫାଣ୍ଟ୍ରିର ଗୋଟିଏ ରେଜିମେଣ୍ଟ ଯଥା ସୁଲଭ ଫୌଜ କିମ୍ବା ସୈନ୍ୟ ବଳସହ, ମୋର ଅନୁରୋଧ, ଧାରବାର ଯାତ୍ରା କରନ୍ତୁ । ମୋର ଆଶଙ୍କା ଅତିରିକ୍ତ ଫୌଜର ପ୍ରୟୋଜନ ହୋଇପାରେ ।''

ସେଇଦିନ ସେ ବରେଲୀର ମୁଖ୍ୟ ସେନାଧିକାରୀଙ୍କୁ ଏକ ପତ୍ର ଲେଖିଲେ ଏବଂ ନିମ୍ନଲିଖିତ ଫୌଜ ପଠାଇବା ନିମନ୍ତେ ତାଙ୍କୁ ଅନୁରୋଧ ଜଣାଇଲେ :

ୟୁରୋପୀୟାନ୍ ଫୁଟ୍ ଆର୍ଟିଲାରୀର ଗୋଟିଏ କମ୍ପାନୀ,

ହିଜ୍ ମାଜେଷ୍ଟିଙ୍କର 46 ତମ ଫୁଟ୍ରେ ଦୁଇଟି ପୁରା କମ୍ପାନୀ,

ଦେଶୀୟ ପଦାତିକ ବାହିନୀର ଗୋଟିଏ ରେଜିମେଣ୍ଟ ।

ଏ ଭିତରେ କିତ୍ତୁରରେ ଷ୍ଟିଭେନ୍‌ସନ୍ ତଥା ଇଲିଅଟ୍ କିତ୍ତୁର ନେତାଙ୍କ ସହ ସଂକ୍ଷିପ୍ତ ସମୟ ପାଇଁ ସାକ୍ଷାତ କରିଥିଲେ । ଷ୍ଟିଭେନ୍‌ସନ୍ ଥିଲେ ଜଣେ ଗମ୍ଭୀର ବ୍ୟକ୍ତି ଏବଂ ସେ ଘଟଣାକୁ ନିରପେକ୍ଷ ଦୃଷ୍ଟିରେ ବିଚାର କରିପାରୁଥିଲେ । ସେ କିତ୍ତୁରରେ ବିପ୍ଳବ ହୋଇଥିବାର ମୂଳ କାରଣ ଗୁଡ଼ିକୁ ବିଶ୍ଳେଷଣ କରିଥିଲେ । ଯେଉଁ କାରଣରୁ ବ୍ରିଟିଶ୍ ସେନାବାହିନୀର ପରାଜୟ ହୋଇଥିଲା, ତାହା ମଧ୍ୟ ସେ ବିଚାର

କରିଥିଲେ 23 ତାରିଖ ରାତିରେ ସେ ଚାପ୍‌ଲିନ୍‌ଙ୍କୁ ଏକ ବିସ୍ତୃତ ପତ୍ର ଲେଖି ସେଥିରେ ସେହିଦିନ ଘଟିଯାଇଥିବା ହିଂସାକାଣ୍ଡର ବିବରଣୀ ଦେଇଥିଲେ ତଥା ସେଥିରେ ସୂଚାଇଥିଲେ ଯେ ଏହି ବିପତ୍ତି ସ୍ୱର୍ଗୀୟ ପଲିଟିକାଲ୍ ଏଜେଣ୍ଟଙ୍କର ସ୍ୱୟଂ ସୃଷ୍ଟ ବୁଦ୍ଧିହୀନତା, ଲୋଲୁପତା ତଥା ଅପରିଣାମଦର୍ଶୀ ପଦକ୍ଷେପର ଏକ ଦୟନୀୟ ଫଳଶ୍ରୁତି ମାତ୍ର ।

ସେହି ପତ୍ରଟି ନିମ୍ନଭଳି :

ପ୍ରାଧାନ ସର୍ଦ୍ଦାରମାନଙ୍କ ମଧ୍ୟରୁ ଜଣେ ଗୁରୁ ସିଦ୍ଧପ୍ପା ଏବଂ ଭୂତପୂର୍ବ ରାଜାଙ୍କର ବିଧବା ଚେନ୍ନାମ୍ମା ଥାକରେଙ୍କ ଦ୍ୱାରା ଅପମାନିତ ହୋଇ ଜନତାକୁ ଉତ୍ତେଜିତ କରାଇ ଦେଲେ । ଏବେ ସେମାନେ ଅନୁଭବ କରୁଛନ୍ତି ଯେ, ଘଟଣାର କ୍ଷିପ୍ର ଅଗ୍ରଗତି, ସେମାନଙ୍କ ନିୟନ୍ତ୍ରଣର ବାହାରକୁ ଚାଲିଗଲାଣି । ଜଣାଯାଉଛି, ବର୍ତ୍ତମାନ ଆଲୋଚନା କରିବା ନିମନ୍ତେ ସେମାନେ ବନ୍ଦୀ କରିଥିବା ଇଂରେଜ ସେନା ଉପରେ ହିଁ ଅଧିକ ନିର୍ଭରଶୀଳ । ଗୁରୁ ସିଦ୍ଧପ୍ପା ଏବେ ମଧ୍ୟ ଆମ ସହିତ ସଶ୍ରଦ୍ଧ ବ୍ୟବହାର କରୁଛନ୍ତି । ସେ ମୋତେ ଜଣାଇଛନ୍ତି ଯେ, ସରକାର ତାଙ୍କ ପତ୍ରର ଉତ୍ତର ନଦେବା ପର୍ଯ୍ୟନ୍ତ ସେ ଆମକୁ ବନ୍ଦୀକରି ରଖିବେ । ଯଦି ସେମାନେ ଅନୁକୂଳ ଉତ୍ତର ପାଇବେ, ତେବେ ଆମକୁ ଛାଡ଼ିଦେବେ । ଉତ୍ତର ଯଦି ଅନୁକୂଳ ନ ହେଲା, ତେବେ ସ୍ତ୍ରୀ ମାନଙ୍କୁ ତଥା ବନ୍ଦୀମାନଙ୍କୁ ନିଜ ହାତରେ ହତ୍ୟାକରି, ସେମାନେ ମାତୃଭୂମିର ରକ୍ଷା ନିମନ୍ତେ ଶହୀଦ୍ ହୋଇଯିବେ ବୋଲି ସ୍ଥିର କରିଛନ୍ତି । ମୋ ବିଚାରରେ ତାଙ୍କର ଏହି ନିଷ୍ପତ୍ତି ଭୟ ପ୍ରଣୋଦିତ । ମୁଁ ଜାଣିଛି ଯେ, ବେଲଗାଁଓରୁ ଯାତ୍ରା କରି ସେନା ନଦୀ ନିକଟରେ ପହଞ୍ଚି ଗଲେଣି, କିନ୍ତୁ ଏଠାରେ ଥିବା 10, 000 ଜୱାନ ବିଶିଷ୍ଟ ଦଳକୁ ପରାଜିତ କରିବାକୁ ସେମାନେ ସକ୍ଷମ ହେବେ ନାହିଁ ବୋଲି ମୁଁ ଆଶଙ୍କା କରୁଛି । ଏହି ପରିସ୍ଥିତିରେ ତଥା ସରକାରୀ ପକ୍ଷର କୌଣସି ସୁସ୍ପଷ୍ଟ ନିର୍ଦ୍ଦେଶ ନଥିବା ଦୃଷ୍ଟିରୁ ମୁଁ ମୁଖ୍ୟ ସେନାଧିକାରୀଙ୍କୁ ଲେଖିଛି ଯେ, ନିର୍ଦ୍ଦେଶ ନ ମିଳିବା ପର୍ଯ୍ୟନ୍ତ ସେ ଅପେକ୍ଷା କରନ୍ତୁ । ତାଙ୍କୁ ଏହା ମଧ୍ୟ ଜଣାଇଛି ଯେ, ରାଜ-ପ୍ରାସାଦ ଉପରେ ଗୁଳି ଚାଲିବାମାତ୍ରେ, କ୍ରୁଦ୍ଧ ଜନତା ଆମକୁ ହତ୍ୟା କରିବେ । ଏଥିରେ ମୋର ତିଳେମାତ୍ର ସନ୍ଦେହ ନାହିଁ । ପ୍ରକୃତରେ କେତେକ ସର୍ଦ୍ଦାର ମୋତେ କହିଛନ୍ତି ଯେ, 23 ତାରିଖରେ ଆମେ ଏଠି ଯାହାସବୁ ଦେଖିଛୁ ସେଥିରୁ ସେମାନଙ୍କର ଅଦମ୍ୟ ଉତ୍ସାହ ତଥା ଶକ୍ତି ସାମର୍ଥ୍ୟ ସମ୍ପର୍କରେ ଆମର କୌଣସି ସନ୍ଦେହ ନ ରହିବାର କଥା । ବନ୍ଦୀ ସିରସ୍ତାଦାର ଶ୍ରୀନିବାସ ରାଓଙ୍କୁ ଫେରିଆସିବା ସର୍ତ୍ତରେ ଆମ ପତ୍ରକୁ ଶିବିର ପର୍ଯ୍ୟନ୍ତ ନେଇଯିବା ନିମନ୍ତେ ଅନୁମତି ଦିଆଯାଇଛି । ଗୁରୁ ସିଦ୍ଧପ୍ପା ଆମକୁ ଯାହା କହିଛନ୍ତି, ତାଙ୍କୁ ମଧ ସେଇଆ କହିଛନ୍ତି । ଆପଣ ଏଠାକୁ ନ ଆସିଲେ, ଏଠାକାର ପରିସ୍ଥିତି ସମ୍ପର୍କରେ କୌଣସି ଆପୋଷ ରାଜିନାମା ହୋଇପାରିବ ବୋଲି ମୋର ବିଶ୍ୱାସ ହେଉନାହିଁ । ପତ୍ରରେ ଯେତିକି ସମ୍ଭବ, ସେତିକି ମୁଁ ଆପଣଙ୍କୁ ଜଣାଇ ପାରିଛି ବୋଲି ମୋର ବିଶ୍ୱାସ । ଯଦି ସୌଭାଗ୍ୟକୁ ଆପଣଙ୍କ ସହିତ ମୋର ପୁନଃ ସାକ୍ଷାତ୍ ହୋଇପାରେ, ତେବେ ସେତେବେଳେ ମୁଁ ଘଟଣା ପରମ୍ପରାର ଏକ ବିସ୍ତୃତ ବିବରଣୀ ଆପଣଙ୍କୁ ଶୁଣାଇ ପାରିବି । ତଥାପି ଯେତିକି ବିବରଣୀ ମୁଁ ସଂଗ୍ରହ କରିପାରିଛି, ସେଥିରୁ ଏତିକି ଜାଣିଛି ଯେ, ପୂର୍ବୋକ୍ତ 10,000 ଜବାନ୍ ଯେଉଁମାନେ କି ବର୍ତ୍ତମାନ ତୋପଖାନାରେ ରହିଛନ୍ତି, ଏକତ୍ର ହୋଇଯିବେ ଏବଂ ସିରସ୍ତାଦାର ମୋତେ କହିଛନ୍ତି କି, ଉଭୟ ନେତା ଏବଂ ଜବାନମାନେ ବର୍ତ୍ତମାନ ହତାଶ ହୋଇପଡ଼ିଛନ୍ତି ।

କିତ୍ତୁରରେ 27 ଅକ୍ଟୋବର 1824 ରେ ଉତ୍ସାହୀ ସର୍ଦ୍ଦାର ତଥା ଅନ୍ୟ ନେତୃବୃନ୍ଦ ଶିବଲିଙ୍ଗପ୍ପାଙ୍କ ରାଜ୍ୟାଭିଷେକ ସମାରୋହର ଆୟୋଜନ କଲେ । ଏହା କିତ୍ତୁର ସମୀପବର୍ତ୍ତୀ ଚୌକୀମଠରେ ଆୟୋଜିତ ହୋଇଥିଲା । ସ୍ୱାମୀଜୀ ନୂତନ ଶାସକଙ୍କୁ ଆଶୀର୍ବାଦ ଦେଇଥିଲେ । ଏହି ସମାରୋହରେ ରାଜ୍ୟର ବିଭିନ୍ନ ଅଞ୍ଚଳରୁ ବହୁ ସଂଖ୍ୟାରେ ଲୋକ ଯୋଗ ଦେଇଥିଲେ ।

ଏହି ସମୟ ମଧ୍ୟରେ ବିଦ୍ରୋହର ଖବର ଚାରିଆଡ଼େ ବ୍ୟାପିଯାଇଥିଲା ଏବଂ ଧାରବାର ସମେତ ଅନ୍ୟ ଅନେକ ସ୍ଥାନରେ ବ୍ରିଟିଶ୍ ଶାସନ ବିରୁଦ୍ଧରେ ବିଦ୍ରୋହର ବହ୍ନି ଜଳିଉଠିଥିଲା । ଆତଙ୍କିତ ସେନାଧିକାରୀ ବୃନ୍ଦ ଗୋଇନ୍ଦା ମାଧ୍ୟମରେ ଖବର ସଂଗ୍ରହକରି, ଆତଙ୍କଗ୍ରସ୍ତ ଇଲାକାକୁ ତୁରନ୍ତ ସୈନ୍ୟ ପ୍ରେରଣ ବ୍ୟବସ୍ଥାରେ ଲାଗିପଡ଼ିଥିଲେ । କ୍ୱାର୍ଟର୍ ମାଷ୍ଟର୍ ଜେନେରାଲ୍‌ଙ୍କୁ କ୍ୟାପ୍ଟେନ୍ ପୀୟର୍ସଙ୍କଦ୍ୱାରା ଲିଖିତ 27 ଅକ୍ଟୋବରର ପତ୍ରରୁ ସେତେବେଳେ ଧାରବାରରେ ଘଟିଯାଇଥିବା ଘଟଣା ତଥା କିତ୍ତୁରର ବିପ୍ଳବୀମାନଙ୍କୁ ରୋକିବା ନିମନ୍ତେ ତାଙ୍କ ଦ୍ୱାରା ଗୃହୀତ ପଦକ୍ଷେପର ଏକ ବିସ୍ତୃତ ବିବରଣୀ ମିଳିଥାଏ । ମହାମହିମ ମୁଖ୍ୟ ସେନାପତିଙ୍କ ଗୋଚରାର୍ଥେ ନିବେଦନ କରୁଛି କି, ନିମ୍ନସୂଚିତ ପରିବର୍ତ୍ତନ ଅନୁସାରେ ଏହି ମାସ 25 ତାରିଖରେ ବର୍ଣ୍ଣିତ ସେନା ଯେଉଁଥିରେ ଚତୁର୍ଥ ଅଶ୍ୱାରୋହୀ ବାହିନୀ ଏବଂ 49 ତମ ରେଜିମେଣ୍ଟର ଦୁଇ କମ୍ପାନୀ (ଯେଉଁମାନେ 23 ତାରିଖରେ ଯାତ୍ରା କରିଥିଲେ, ମାତ୍ର ମଲପ୍ରଭା ପାରି ହୋଇପାରିନଥିଲେ) କୁ ମୁକ୍ତ କରାଯାଇଛି, ଲେ. କ. ମାକଲଏଡ଼, ଚତୁର୍ଥ ରେଜିମେଣ୍ଟ ଲାଇଟ୍ କାଭଲରୀଙ୍କ ଅଧୀନରେ କାଲି ସକାଳେ ବେଲ୍‌ଗାଁଓରୁ ଯାତ୍ରା କରିଥିଲେ ।

ଚତୁର୍ଥ ଲାଇଟ୍ କାଭଲ୍‌ରୀର ତିନିଟି ସ୍କ୍ୱାଡ୍ରନ୍ ।

ବାର ପାଉଣ୍ଡର ଦୁଇଟି ପିତଳ ଫିଲଡ୍‌ଗନ୍ ।

ହିଜ୍ ମାଜେଷ୍ଟିଙ୍କ 46 ତମ ଫୁଟ୍ କମ୍ପାନୀ

ଯାହାର ସଂଖ୍ୟା 100କୁ ବୃଦ୍ଧି ପାଇଛି ।

କିତ୍ତୁରର ବିଦ୍ରୋହୀମାନେ ଧାରବାର ଆକ୍ରମଣ କରିପାରନ୍ତି, ଏହି ସୂଚନାର ଭିତ୍ତିରେ ମୁଁ ଲେ. କର୍ଣ୍ଣେଲ୍ ମାକଲଏଡ଼୍‌ଙ୍କ ଦଳକୁ ପୂର୍ବବର୍ତ୍ତୀ ସ୍ଥାନ ବଦଳରେ କିତ୍ତୁର ଏବଂ ଧାରବାର ମଧ୍ୟବର୍ତ୍ତୀ ଏକ ସ୍ଥାନରେ ମୁତୟନ କରିଦେଇଛି । କାରଣ ଧାରବାରରେ ମୁଖ୍ୟ କଲେକ୍ଟରଙ୍କର ଖଜଣା ଖାନ ରହିଛି ଏବଂ ପୂର୍ବ ମହରମ ଉତ୍ସବରେ ଗଣ୍ଡଗୋଳ ଭିଆଇଥିବା (ଷୋହଳ ଜଣ ମୃତ୍ୟୁ ବରଣ କରିଥିବା) ଗୋଟିଏ ଅପରାଧୀ ଦଳ ମଧ୍ୟ ରହିଛନ୍ତି । ମାକଲଏଡ଼୍‌ଙ୍କର ମାର୍ଗ ଦର୍ଶନ ନିମନ୍ତେ ଦିଆଯାଇଥିବା ଚିଠିର ନକଲ ମୁଁ ଏଥି ସହିତ ପଠାଉଛି ।

ନିକଟବର୍ତ୍ତୀ ଅଞ୍ଚଳରେ ଅଶ୍ୱାରୋହୀ ସୈନିକ ଦେଖା ପଡୁଥିବାର ରିପୋର୍ଟ ଆସିବାରୁ ଚତୁର୍ଥ ଅଶ୍ୱାରୋହୀ ବାହିନୀର ଗୋଟିଏ ଅଂଶକୁ ବେଲଗାଁଓରେ ଅଟକାଇ ରଖାଯାଇଛି । ଏହା ବ୍ୟତୀତ କିଛି ସହାୟକ, ରୁଗ୍‌ଣ ଅଶ୍ୱ ପ୍ରଭୃତି ବେଲଗାଁଓରେ ଅଛନ୍ତି । ଚିତ୍ରଦୁର୍ଗର ସେନାନାୟକଙ୍କୁ, ସେ ଧାରବାର ବାହିନୀକୁ ଦୃଢ଼ କରିବା ନିମନ୍ତେ ଯେତିକ ସାହାଯ୍ୟ କରିପାରିବେ, ସେତିକି ତୁରନ୍ତ ପଠାଇ ଦେବାକୁ ଲେଖିଛି ।

କମିଶନରଙ୍କୁ ଏହା ମଧ୍ୟ ସୁପାରିଶ କରିଛି ଯେ, ଦେଶୀୟ ପଦାତିକ ବାହିନୀର ବମ୍ବେ ରେଜିମେଣ୍ଟ କିମ୍ବା କିଛି ନହେଲେ ରେଜିମେଣ୍ଟର ଗୋଟିଏ ଅଂଶ 23ତମ ପଦାତିକ ବଦଳରେ ଶୋଲାପୁର ପଠାଇ ଦିଆଯାଉ ।

ସେଇଦିନ କ୍ୟାପ୍ଟେନ୍ ପୀୟର୍ସ ମଧ୍ୟ ଲଢୁଆ ସୈନ୍ୟବାହିନୀର ଗୋଟିଏ ଦଳ ଶୀଘ୍ର କିତ୍ତୁର

ପଠାଇ ଦିଆଯାଉ ବୋଲି ଚିତ୍ରଦୁର୍ଗଙ୍କୁ ଖବର ପଠାଇଥିଲେ ।

ଏହିସବୁ ପ୍ରସ୍ତୁତି ଚାଲିଥିବା ବେଳେ 26 ଅକ୍ଟୋବରରେ କାର୍ଯ୍ୟକାରୀ ପଲିଟିକାଲ୍ ଏଜେଣ୍ଟ ରୂପେ ନିଯୁକ୍ତ ହୋଇଥିବା ଇଡ଼ନ୍ ବେଲଗାଓଁରୁ ଧାରବାର ଯାତ୍ରାକଲେ । 26 ଏବଂ 27 ତାରିଖରେ ସେ ଧାରବାରରେ ଥିଲେ । କିତ୍ତୁରର ଓକିଲ ଶ୍ରୀନିବାସ ରାଓ ସେଠାରେ ତାଙ୍କ ସହିତ ସାକ୍ଷାତ୍ କରି ପରିସ୍ଥିତି ସମ୍ପର୍କରେ ତାଙ୍କ ସହିତ ଆଲୋଚନା କରିଥିଲେ । 28 ତାରିଖରେ ସେ ବେଲ୍‌ଗାଁଓ ଫେରିଆସିଲେ । ଏ ମଧ୍ୟରେ ଷ୍ଟିଭେନ୍‌ସନ୍‌ଙ୍କର 24 ତାରିଖର ପତ୍ର ମଧ୍ୟ ପହଞ୍ଚିଯାଇଥିଲା । ଇଡନ୍ ଷ୍ଟିଭେନ୍‌ସନ୍ ତଥା ଇଲିଅଟଙ୍କର ଦୟନୀୟ ଅବସ୍ଥା ସମ୍ପର୍କରେ ଅନୁମାନ କରିପାରୁଥିଲେ । ତେଣୁ ସେ କ୍ୟାପ୍ଟେନ୍ ପୀୟର୍ସଙ୍କୁ ଖବର ପଠାଇଲେ ଯେ, ଯେପର୍ଯ୍ୟନ୍ତ କିତ୍ତୁରର ଓକିଲଙ୍କ ସହିତ ଆଲୋଚନା ନ ହୋଇଛି, ସେ ପର୍ଯ୍ୟନ୍ତ ଲେ. କର୍ଣ୍ଣେଲ୍ ମାକଲଏଡ଼ ମଲପ୍ରଭା ନଦୀ ପାରିହେବା ନିମନ୍ତେ ଉଦ୍ୟମ ନକରନ୍ତୁ । ଯେଉଁ ଟିପ୍ପଣୀ ସେ 28 ଅକ୍ଟୋବର 1824 ରେ କର୍ଣ୍ଣେଲ ପୀୟର୍ସଙ୍କୁ ଲେଖିଥିଲେ, ତାହାର ନିର୍ବାଚିତ ଅଂଶ ନିମ୍ନଭଳି :

> ଆପଣଙ୍କ ଗୋଚରାର୍ଥେ ନିବେଦନ ଏହିକି ଯେ, ନିଶ୍ଚିତ ନିର୍ଦ୍ଦେଶ ନପାଇବା ପର୍ଯ୍ୟନ୍ତ କିତ୍ତୁର ଆକ୍ରମଣ କରିବା ଆମର ଲକ୍ଷ୍ୟ ନୁହେଁ, ଏହିଭଳି ଏକ ଆଶ୍ୱାସନା କିତ୍ତୁର ନେତାମାନଙ୍କୁ ଦେବା ପୂର୍ବରୁ ଯଦି ଆମେ ଆମର ସେନାକୁ ନଦୀ ପାରିକରୁ ତେବେ ଷ୍ଟିଭେନ୍‌ସନ୍ ଏବଂ ଇଲିଅଟଙ୍କର ଜୀବନ ସଙ୍କଟାପନ୍ନ ହୋଇଉଠିବ । ଶୀଘ୍ର କିତ୍ତୁରର ଓକିଲଙ୍କ ସହିତ ଆଲୋଚନା କରିବାର ସମ୍ଭାବନା ରହିଛି । ତା'ପରେ ଏଭଳି ଅଭିଯାନର ପ୍ରଭାବ ସମ୍ପର୍କରେ ମୁଁ ନିର୍ଣ୍ଣୟ କରିପାରିବି ଏବଂ ଆପଣଙ୍କୁ ଜଣାଇବି ମଧ୍ୟ । ସେ ପର୍ଯ୍ୟନ୍ତ ପୂର୍ବ ଆଦେଶ ସ୍ଥଗିତ ରଖିବା ନିମନ୍ତେ ମୁଁ ସୁପାରିଶ କରୁଛି । ଇତିମଧ୍ୟରେ ବମ୍ବେରୁ ନିର୍ଦ୍ଦେଶ ନ ଆସିବା ପର୍ଯ୍ୟନ୍ତ ଆମେ କିତ୍ତୁର ଆକ୍ରମଣ କରୁନାହୁଁ ବୋଲି କିତ୍ତୁରର ନେତାମାନଙ୍କୁ ଜଣାଇଦେବା ନିମନ୍ତେ ମୁଁ ସମୟ ପାଇବି ।
>
> ଆପଣଙ୍କଠାରୁ ଅନୁକୂଳ ଉତ୍ତର ପାଇଲେ ମୁଁ ଆନନ୍ଦିତ ହେବି ।

ପୀୟର୍ସ ତଦନୁସାରେ ମାକଲଏଡ଼ଙ୍କୁ ଆଦେଶ ପଠାଇଦେଲେ ଏବଂ ସେ ମଧ୍ୟ ମଲପ୍ରଭା ନଦୀ ଅତିକ୍ରମ କଲେ ନାହିଁ । ଏହି ପ୍ରସ୍ତାବ ଦେବା ସମୟରେ ଇଡନ୍ ଭାବିଥିଲେ ଯଦି ସେନା ମଲପ୍ରଭା ଅତିକ୍ରମ କରି କିତ୍ତୁରରେ ପହଞ୍ଚିଯାଆନ୍ତି, ତେବେ ବିପ୍ଳବୀମାନେ ଆତଙ୍କିତ ହୋଇପଡ଼ିବେ ତଥା ପ୍ରତିଶୋଧ କାମନାରେ ବ୍ରିଟିଶ୍ ଅଧିକାରୀ ଷ୍ଟିଭେନ୍‌ସନ୍ ଏବଂ ଇଲିଅଟଙ୍କୁ ପ୍ରାଣରୁ ମାରିଦେଇପାରନ୍ତି ।

ସେହିଦିନ କିତ୍ତୁରର ଓକିଲ ବେଲଗାଁଓ ପହଞ୍ଚିଗଲେ । ଇଡନ୍ ତାଙ୍କ ସହିତ ବିଚାର ବିମର୍ଶ କଲେ । କିତ୍ତୁର ସମୀପବର୍ତ୍ତୀ ମଲପ୍ରଭା ନଦୀ ପାରି ନହେବା ପାଇଁ ଓକିଲ ନିବେଦନ ଜଣାଇଲେ । କିନ୍ତୁ ଦୂରବର୍ତ୍ତୀ ଏଣଗୀଠାରେ ନଦୀ ଅତିକ୍ରମ କରିବାରେ ତାଙ୍କର କୌଣସି ଆପତ୍ତି ନାହିଁ ବୋଲି ସେ କହିଲେ । ସେମାନେ ସେଠାରେ ରହି କିତ୍ତୁରର ନେତାମାନଙ୍କ ସହିତ ଆଲୋଚନାର ଫଳାଫଳକୁ ଅପେକ୍ଷା କରିପାରନ୍ତି । ଇଡନ୍ କିତ୍ତୁରର ନେତାମାନଙ୍କ ସହିତ କଥାବାର୍ତ୍ତା କରିବା ପାଇଁ କିଛି ସମୟ ଚାହୁଁଥିଲେ । ସେ ଓକିଲଙ୍କ ସହିତ ତାଙ୍କର ଆଲୋଚନାର ପରିଣାମ ସମ୍ପର୍କରେ କର୍ଣ୍ଣେଲ୍ ପୀୟର୍ସଙ୍କୁ ଶୀଘ୍ର ଆଉ ଏକ ପତ୍ର ଲେଖିଲେ । ତାହା ନିମ୍ନରେ ଉଦ୍ଧୃତ ହେଲା ।

> ସେଇ ସଞ୍ଜରେ କିତ୍ତୁରର ଓକିଲ ସିନାପାଙ୍କ ସହିତ ମୋର ସାକ୍ଷାତ ହେଲା । ବମ୍ବେରୁ ନିର୍ଦ୍ଦେଶ ନ ପାଇବା ପର୍ଯ୍ୟନ୍ତ କିତ୍ତୁର ଆକ୍ରମଣ କରିବାର କୌଣସି ଲକ୍ଷ୍ୟ ଆମର ନାହିଁ ବୋଲି ମୁଁ ତାଙ୍କୁ

ବୁଝାଇଦେଲି । ସେ ଏଥିରେ ରାଜି ହୋଇଗଲେ ଯେ, ଯଦି ସେନା ଆମ ନିଜ ଅଞ୍ଚଳରେ ଥିବା ଏଣଗୀ ନଦୀ ପାରିହୁଅନ୍ତି ଏବଂ ନରେନ୍ଦ୍ରଠାରୁ କିତ୍ତୁରର ଆଉ ଅଧିକ ସମୀପବର୍ତ୍ତୀ ଅଞ୍ଚଳରେ ଶିବିର ସ୍ଥାପନ ନକରନ୍ତି, ତେବେ ହୁବଲୀଠାରୁ ଆମର ସେନା ସଞ୍ଚାଳନ ବିଷୟ ଆମର ଉଦ୍ଦେଶ୍ୟ ସମ୍ପର୍କରେ ତାଙ୍କ ପ୍ରଭୁଙ୍କର ଆସ୍ଥା ହେବ । ଯେହେତୁ ଏହି ପ୍ରାର୍ଥନା ନ୍ୟାୟୋଚିତ, ତେଣୁ ମୋ ବିଚାରରେ ଆମର ଆଶ୍ୱାସନା ସମ୍ପର୍କରେ କିତ୍ତୁରରେ ସୂଚନା ଦେବା ପାଇଁ ତାଙ୍କୁ କାଲି ଦ୍ୱିପ୍ରହର ପର୍ଯ୍ୟନ୍ତ ସମୟ ଦିଆଯାଉ । ଧାରବାର ତରଫରୁ ଏଣଗୀ ନଦୀ ଆଡ଼କୁ ଚାଲିଯିବା ସମ୍ପର୍କୀୟ ଆମର ଉଦ୍ଦେଶ୍ୟ ସେ ଜାଣିଯିବେ । ଓକିଲ ଯେଉଁବ୍ୟକ୍ତି ମୋର ବକ୍ତବ୍ୟକୁ କିତ୍ତୁରରେ ପହଞ୍ଚାଇବ, ତା'ପାଇଁ ଆପଣଙ୍କଠାରୁ ଖଣ୍ଡିଏ ପାସ୍ ମାଗୁଛନ୍ତି । ଫଳରେ ଆମର କୌଣସି ସୈନ୍ୟ ତାଙ୍କୁ ବାଟରେ ଅଟକାଇବେ ନାହିଁ । ଅନୁଗ୍ରହପୂର୍ବକ ଶୀଘ୍ର ଉତ୍ତର ଦେବେ ।

କର୍ଣ୍ଣେଲ ପୀୟର୍ସ ସେନାକୁ ଏଣଗୀ ଆଡ଼କୁ ପରିଚାଳିତ କରିବା ନିମନ୍ତେ ରାଜି ହୋଇଗଲେ । ଏଥିରେ ପ୍ରାୟ ଦୁଇ ଦିନ ଲାଗିବ । ତୃତୀୟ ଦିନ ସୁଦ୍ଧା ଯଦି ଅନ୍ୟ କୌଣସି ନିର୍ଦ୍ଦେଶ ନଆସେ, ତେବେ ସେନା ଏଣଗୀଠାରେ ନଦୀ ପାରିହୋଇ କିତ୍ତୁର ଆଡକୁ ଅଗ୍ରସର ହେବେ । ସେ ଲେଖିଲେ

ଯେହେତୁ ବର୍ତ୍ତମାନ ସ୍ଥିତିରେ ଲେ. ମାକଲଏଡଙ୍କ ଅଧୀନ ସେନାକୁ ଏଣଗୀଠାରେ ପହଞ୍ଚିବାକୁ ଦୁଇ ଦିନ ଲାଗିଯିବ, ଏବଂ ଆପଣଙ୍କର ଯେକୌଣସି ବକ୍ତବ୍ୟକୁ କିତ୍ତୁରର ମୁଖ୍ୟଙ୍କ ନିକଟରେ ପହଞ୍ଚାଇବା ନିମନ୍ତେ ଯଥେଷ୍ଟ ସମୟ ମିଳିଯିବ, ତେଣୁ ଆପଣଙ୍କ ଇଚ୍ଛାପୂର୍ଣ୍ଣ କରିବା ନିମନ୍ତେ ମୁଁ ଏହି ନିର୍ଦ୍ଦେଶ ଦେଉଛି ଯେ, ସେନା ମଲପ୍ରଭା ଅତିକ୍ରମ କରିବେ ନାହିଁ । ତେବେ ଆଦେଶ ପାଇବାମାତ୍ରେ ଏଥିପାଇଁ ପ୍ରସ୍ତୁତ ରହିଥିବେ । ହୁବଲୀ ନିକଟରେ ନଦୀ ପାରିହେବା ପାଇଁ ଲେ. କ. ମାକଲଏଡ୍‌ଙ୍କୁ ଯେଉଁ ଆଦେଶ ଦିଆଯାଇଥିଲା, ସେଥିରେ ପରିବର୍ତ୍ତନ ଆବଶ୍ୟକ । କାରଣ କର୍ତ୍ତବ୍ୟ ମୋତେ ଆପଣଙ୍କ ଇଚ୍ଛାକୁ ସମ୍ମାନ ଦେବା ନିମନ୍ତେ ଅନୁପ୍ରେରିତ କରୁଛି । ତେବେ ଏଥିରୁ ପରିଷ୍କାର ବୁଝାଯିବା ଉଚିତ ଯେ, ଯେକୌଣସି ପରିସ୍ଥିତିରେ ଏଣଗୀଠାରେ ପହଞ୍ଚିବାର ପରଦିନ ନଦୀ ଅତିକ୍ରମ କରିବା ନିମନ୍ତେ ସେନାକୁ ଆଦେଶ ଦେଇଦିଆଯିବ ।''

ପରଦିନ, ଅର୍ଥାତ୍ 29 ଅକ୍ଟୋବରରେ କର୍ଣ୍ଣେଲ ପୀୟର୍ସ ଚାପ୍‌ଲିନ୍‌ଙ୍କୁ ପତ୍ର ଲେଖିଲେ । ସେଥିରେ ସେ ଏସବୁ ବିଷୟରେ ସୂଚନା ଦେଇଥିଲେ । ପରିସ୍ଥିତିର ଗୁରୁତ୍ୱ ସମ୍ପର୍କରେ କମିଶନରଙ୍କୁ ଅବଗତ କରାଇବା ନିମନ୍ତେ ସେ ଷ୍ଟିଭେନ୍‌ସନ୍‌ଙ୍କର 26 ତାରିଖ ପତ୍ରର ଏକ ନକଲ ମଧ୍ୟ ତାଙ୍କୁ ପଠାଇଥିଲେ ।

ଚାପ୍‌ଲିନ୍ ଏବଂ ଅନ୍ୟମାନେ ବମ୍ବେର ଗଭର୍ଣ୍ଣର ଏଲ୍‌ଫିନ୍ ଷ୍ଟୋନ୍‌ଙ୍କୁ କିତ୍ତୁରର ପରିସ୍ଥିତି ସମ୍ପର୍କରେ ଜଣାଇ ସାରିଥିଲେ । 29 ଅକ୍ଟୋବର ଦିନ ସେ ନିଜସ୍ୱ ମନ୍ତବ୍ୟ ସହ କାର୍ଯ୍ୟାନୁଷ୍ଠାନ ନିମନ୍ତେ ଆଦେଶ ଦେଲେ । ତାହା ନିମ୍ନ ଭଳି :-

ମହାମହିମ ଏଲ୍‌ଫିନ୍ ଷ୍ଟୋନ୍‌ଙ୍କ ଟିପ୍ପଣୀ

ଗଭର୍ଣ୍ଣର, ବମ୍ବେ, ତା 29.10.1824

ମୋର ବିଶ୍ୱାସ, ଏହି ମନ୍ତବ୍ୟ ଥାକରେଙ୍କ ଭାଗ୍ୟ ସମ୍ପର୍କରେ ଅତ୍ୟୁକ୍ତି ପୂର୍ଣ୍ଣ ହୋଇପାରେ ଯାହାଙ୍କର ମୃତ୍ୟୁ ଏକ ସାର୍ବଜନୀନ କ୍ଷତି ।

ଏହି ଗତିବିଧିର ସମସ୍ତ ବିବରଣୀ ପାଇବା ପରେ ମୁଁ କାଲି କମାଣ୍ଡର-ଇନ୍-ଚିଫ୍‌ଙ୍କୁ ପରାମର୍ଶ ଦେଇଛି ଯେ, ବେଲଗାଁଓ ସୈନ୍ୟବାହିନୀ ବ୍ୟତୀତ ଶୋଲାପୁରର ସୈନ୍ୟବାହିନୀ ବିଦ୍ରୋହ ଦମନ ନିମନ୍ତେ ପ୍ରସ୍ତୁତ ରହିବା ଆବଶ୍ୟକ । ମୁଁ କମିଶନରଙ୍କୁ ଏକଥା ମଧ କହିଛି ଯେ, ସନନ୍ଦଧାରୀମାନଙ୍କୁ

ଏଭଳି ଆଶ୍ୱାସନା ଦେବାର ବ୍ୟବସ୍ଥା କରାଯାଉ ଯେ, ସେମାନଙ୍କୁ ଉଚ୍ଛେଦ କରିବାର କୌଣସି ଇଚ୍ଛା ଆମର ନାହିଁ । ଯେଉଁ ଲେଖାରୁ କିଛି ଲୋକ ଲାଭ ଉଠାଇଛନ୍ତି, ସେସବୁ ଏହି ଧରଣର ଲୋକ ପ୍ରସ୍ତୁତ କରିଛନ୍ତି । ବିଦ୍ରୋହ ଦମନର ଖବର ଶୀଘ୍ର ନମିଳିଲେ, ବିପୁଳ ପରିମାଣର ସୈନ୍ୟ ପ୍ରେରଣ ବ୍ୟବସ୍ଥା କରାଯାଉ । କିତ୍ତୁର ଚାରିପଟେ ବହୁ ଜାଗିର ରହିଛି ତଥା କୋହ୍ଲାପୁର କିମ୍ୱା ବାଡ଼ୀଠାରୁ ଏହା ଦୂରବର୍ତ୍ତୀ ନୁହେଁ । ପୁଣି ଆମର ତଥା ପର୍ତ୍ତୁଗାଲୀମାନଙ୍କର ସୀମା ମଧ୍ୟବର୍ତ୍ତୀ ପାର୍ବତ୍ୟାଞ୍ଚଳର ଏହା ଖୁବ୍ ସମୀପବର୍ତ୍ତୀ । ତେଣୁ ଏହା ଏଭଳି ଏକ ଅଞ୍ଚଳ ଯେଉଁଠି ଦୀର୍ଘ ବନଯୁଦ୍ଧ ଚାଲିପାରେ । ଯଦି ଅଚିରେ ଏହାକୁ ଦମନ କରିଦିଆ ନଯାଏ ତେବେ, ଏହା ବଢ଼ିଯିବାର ସମ୍ଭାବନା ।

ଶୀଘ୍ର ଏ ସମ୍ପର୍କରେ ବିସ୍ତୃତ ବିବରଣୀ ଆଶା କରାଯାଉଛି । ଯଦି ଏହା ଖୁବ୍ ଅନୁକୂଳ ମନେ ନହୁଏ, ତେବେ ଦକ୍ଷିଣ କୋଙ୍କଣର ଦୁଇଟି ବାଟାଲିୟନକୁ ବିଦ୍ରୋହୀମାନଙ୍କୁ ବାଡ଼ୀ ଅଞ୍ଚଳରେ ଅନୁପ୍ରବେଶ କରାଇନଦେବାକୁ ତଥା ଦକ୍ଷିଣ ଏବଂ ପୂର୍ବାଞ୍ଚଳର ବନବାସୀ ପ୍ରଧାନମାନଙ୍କୁ ଭୟଭୀତ କରାଇବା ନିମନ୍ତେ ବେଲ୍‌ଗ୍ରଲା କିମ୍ୱା ମାଲବା ନିକଟବର୍ତ୍ତୀ କୌଣସି ସ୍ଥାନରେ ଶିବିରରେ ଏକତ୍ରିତ କରିବାକୁ ହେବ । ବମ୍ବେରୁ ଅଧିକ ସୈନ୍ୟ ପ୍ରେରଣ ମଧ୍ୟ ସମୀଚୀନ ହୋଇପାରେ । ଏହା କର୍ଣ୍ଣେଲ ପୀୟର୍ସଙ୍କ ସ୍ଥିତିକୁ ଦୃଢ଼ କରିବ । ଆରଣ୍ୟ ପ୍ରଦେଶରେ ବହୁ ଦଳଯୁକ୍ତ ହୋଇ ସେ ନିର୍ଦ୍ୱନ୍ଦ୍ୱରେ କାମ କରିପାରିବେ । ପ୍ରତ୍ୟେକ ଦଳ ଏଭଳି ଶକ୍ତିଶାଳୀ ଯେ, ବିପ୍ଳବୀମାନଙ୍କୁ ପରାସ୍ତ କରିବା ନିଶ୍ଚିତ । ପ୍ରତ୍ୟେକ କାମ ଯୋଜନାବଦ୍ଧ ଭାବରେ କରାଯାଉଛି ।

ଏ ମଧ୍ୟରେ ଏହି ଘୋଷଣା ପ୍ରକାଶ କରିବା ଉଚିତ୍ ହେବ ଯେ, ରାଜ-ପରିବାରର କୌଣସି ବଂଶଧର ନଥିବାହେତୁ କମ୍ପାନୀ ସ୍ୱୟଂ ରାଜ୍ୟ ଶାସନର ଦାୟିତ୍ୱ ଗ୍ରହଣ କରୁଛି । ଦ୍ୱିତୀୟ ଘୋଷଣା ଏହା ହେବ ଯେ, କେବଳ ମାତ୍ର ନେତାମାନଙ୍କୁ ଛାଡ଼ି ଅନ୍ୟ ସମସ୍ତଙ୍କୁ କ୍ଷମା ଦିଆଗଲା । ଏକ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଏମାନେ ଭିତରକୁ ଆସିଯିବେ, ଯେଉଁମାନେ ତଥାପି ଅସ୍ତ୍ର ତ୍ୟାଗକରିବେ ନାହିଁ, ସେମାନଙ୍କୁ ଦଣ୍ଡ ଦିଆଯିବ ।

ସାମରିକ ଆଇନ୍ ଲାଗୁକରିବା ସମୀଚୀନ ହୋଇପାରେ, ମାତ୍ର ବର୍ତ୍ତମାନ ତାହାର ପ୍ରୟୋଜନ ନାହିଁ ।

ଏହି ଟିପ୍ପଣୀରୁ ପ୍ରତୀତ ହେଉଛି ଯେ :

(1) ବିଦ୍ରୋହ ବ୍ୟାପିଯିବା ଭୟରେ ଏଲଫିନ୍‌ଷ୍ଟୋନ୍ ଆତଙ୍କିତ ହୋଇପଡ଼ିଥିଲେ । ଅନ୍ୟ ଜାଗିରଦାରମାନେ ଏଥିରେ ଭାଗନେଇ ଦୀର୍ଘକାଳଧରି ଯୁଦ୍ଧ ଚଳାଇବେ ବୋଲି ତାଙ୍କର ଭୟ ହୋଇଥିଲା ।

(2) ସମସ୍ତ ଜାଗିରଦାରଙ୍କୁ ସେ, ଜଣାଇଦେବା ନିମନ୍ତେ ଚାହୁଁଥିଲେ ଯେ, ଶିବଲିଙ୍ଗ ରୁଦ୍ରସର୍ଜ୍ଜାଙ୍କ ମୃତ୍ୟୁପରେ ଇଂରେଜମାନେ କିତ୍ତୁରକୁ ଉତ୍ତରାଧିକାରୀହୀନ ଘୋଷଣା କରିସାରିଛନ୍ତି ।

(3) ସୈନ୍ୟ ଚାଳନା ଦ୍ୱାରା ଏହି ବିଦ୍ରୋହକୁ ନିର୍ମମ ଭାବରେ ଦମନ କରିବା ଥିଲା ତାଙ୍କର ଦୃଢ଼ ଇଚ୍ଛା ।

(4) ବିଦ୍ରୋହୀମାନଙ୍କ ପ୍ରତି ଜନସମର୍ଥନ ଊଣା କରାଇବା ନିମନ୍ତେ ସେ ଏକ ରାଜନୈତିକ ଚାଲ୍ ଖେଳିଥିଲେ । ତେଣୁ ସେ ନେତାମାନଙ୍କୁ ଛାଡ଼ି ଅନ୍ୟମାନଙ୍କୁ କ୍ଷମା କରିଦେବାର ଘୋଷଣା କରିଥିଲେ ।

ସେ ମଧ୍ୟ ଏହି ନିଷ୍ପତ୍ତିରେ ପହଞ୍ଚିସାରିଥିଲେ ଯେ, କେବଳ କିତ୍ତୁରକୁ ପରାଧୀନ କରି ହିଁ

ଇଂରେଜ ତାର ହୃତ ସମ୍ମାନ ଫେରିପାଇବ । ତାଙ୍କୁ ଏକଥା ମଧ୍ୟ ବୁଝାଇ ଦିଆଯାଇଥିଲା ଯେ, ଥାକରେଙ୍କ ତରତରିଆ ମନୋଭାବ ହିଁ ବିପ୍ଳବର ପ୍ରଧାନ କାରଣ ଏବଂ ତାହା ସମ୍ପୂର୍ଣ୍ଣ ଭାବେ ଏକ ସାମୟିକ ଆବେଗର ହିଂସାତ୍ମକ ଅଭିବ୍ୟକ୍ତି ।

ସେହି ଦିନ ମୁଖ୍ୟ ସଚିବ ନ୍ୟୁହମ୍ ଚାପ୍‌ଲିନ୍‌ଙ୍କୁ ନିମ୍ନଲିଖିତ ପତ୍ର ଲେଖି, ଭବିଷ୍ୟତ କାର୍ଯ୍ୟପନ୍ଥା ସମ୍ପର୍କରେ ଗଭର୍ଣ୍ଣରଙ୍କର ନିର୍ଦ୍ଦେଶ ଜଣାଇଦେଲେ ।

ବେଲଗାଁଓ ଏବଂ ଶୋଲାପୁରଠାରେ ଅବସ୍ଥାପିତ ସେନାକୁ ବିଦ୍ରୋହ ଦମନ ନିମନ୍ତେ ବ୍ୟବହାର କରାଯାଉ । ଏହି ଘୋଷଣା ପ୍ରକାଶ କରିଦିଆଯାଉ ଯେ, ଦେଶାଇ ପରିବାରର ସମାପ୍ତି ହେତୁ ରାଜ୍ୟ ଶାସନ ଭାର କମ୍ପାନୀ ଗ୍ରହଣ କରୁଛି ଏବଂ ଏହା ମଧ୍ୟ ଘୋଷଣା କରିଦିଆ ଯାଉ ଯେ, ଦେଶାଇ ପରିବାର ବ୍ୟତୀତ ଅନ୍ୟମାନଙ୍କୁ କ୍ଷମା କରିଦିଆଯାଇଛି । ପୁଣି ଘୋଷିତ ହେଉ ଯେ, ନେତାମାନଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କୁ କ୍ଷମା ଦିଆଗଲା ଏବଂ ଇଂରେଜମାନଙ୍କ ବିରୁଦ୍ଧରେ ତଥାପି ଅସ୍ତ୍ରଧାରଣ କରୁଥିବା ବିଦ୍ରୋହୀମାନଙ୍କୁ କଡ଼ା ସଜା ଦିଆଯିବ ।

ମହାଶୟ,

କିତ୍ତୁରରେ ହୋଇଥିବା ବିଦ୍ରୋହ ସମ୍ପର୍କରେ ଆପଣଙ୍କର ଚିଠି ମୋତେ ଚଳିତମାସ 27 ତାରିଖରେ ମିଳିଲା । ମୁଁ ତାକୁ ସପରିଷଦ୍ ଗଭର୍ଣ୍ଣରଙ୍କ ନିକଟରେ ପେଶ୍ କରିଛି ।

ଗଭର୍ଣ୍ଣର ଆପଣଙ୍କର ଭବିଷ୍ୟତ ଚିଠି ନିମନ୍ତେ ବ୍ୟଗ୍ର ହୋଇ ପ୍ରତୀକ୍ଷା କରୁଛନ୍ତିଏବଂ ତାଙ୍କର ହାର୍ଦ୍ଦିକ ଆଶାଯେ, ଏପର୍ଯ୍ୟନ୍ତ ମିଳିଥିବା ଖବର ବିଶେଷ କରି ଥାକରେଙ୍କ ଦୁର୍ଭାଗ୍ୟ ସମ୍ପର୍କରେ, ଯାହାଙ୍କର ମୃତ୍ୟୁ ଏକ ସାର୍ବଜନୀନ କ୍ଷତି, ଅତ୍ୟୁକ୍ତିପୂର୍ଣ୍ଣ ପ୍ରମାଣିତ ହେବ । ସମ୍ବାଦ ମାନନୀୟ ଗଭର୍ଣ୍ଣରଙ୍କ ନିକଟରେ ପହଞ୍ଚିବା ପରେ ମହାମହିମ କମାଣ୍ଡର-ଇନ୍-ଚିଫ୍‌ଙ୍କୁ ପରାମର୍ଶ ଦିଆଯାଇଛି ଯେ, ବେଲଗାଁଓ ସେନା ବ୍ୟତୀତ ଶୋଲାପୁର ସେନାକୁ ମଧ୍ୟ ବିଦ୍ରୋହ ଦମନ ନିମନ୍ତେ ପ୍ରସ୍ତୁତ ରଖାଯାଉ । ସନନ୍ଦଧାରୀମାନଙ୍କୁ ଅଧିକାରଚ୍ୟୁତ ନକରିବା ସମ୍ପର୍କରେ ଘୋଷଣା କରିବା ନିମନ୍ତେ ଆପଣଙ୍କୁ ଜଣାଇ ଦିଆଯାଇଛି । ଯେଉଁ ପ୍ରଚାରର ଲାଭ ସ୍ୱୟଂ ପ୍ରଚାରକମାନେ ପାଇଛନ୍ତି, ତାହା ନିଃସଂଶୟରେ ଏହି ବର୍ଣ୍ଣନାରୁ ପ୍ରସ୍ତୁତ ହୋଇଛି ।

ଗଭର୍ଣ୍ଣରଙ୍କୁ ତୁରନ୍ତ ବିଦ୍ରୋହ ଦମନର ସମ୍ବାଦ ନମିଳିଲେ, ଏଥିପାଇଁ ଆହୁରି ଅଧିକ ସୈନ୍ୟ ପ୍ରେରଣ ନିମନ୍ତେ ତଥା ଦେଶରେ ଶାନ୍ତି ପ୍ରତିଷ୍ଠା ଲାଗି ସମସ୍ତ ପ୍ରକାର ଯତ୍ନ କରାଯିବ ।

ଏତିକିବେଳେ ଆଉ ଏକ ଘୋଷଣା ପ୍ରକାଶ କରିବା ଉଚିତ୍ ହେବ ବୋଲି ଗଭର୍ଣ୍ଣର ମନେ କରନ୍ତି । ଜଣାଇଦେବା ଉଚିତ ଯେ, ଦେଶାଇ ପରିବାରର ପରିସମାପ୍ତି ହୋଇଥିବାରୁ କମ୍ପାନୀ ରାଜ୍ୟଭାର ଗ୍ରହଣ କରୁଛନ୍ତି । ଏହା ମଧ୍ୟ ଘୋଷଣା କରିଦିଆଯାଉ ଯେ, (ଗତ ବିପ୍ଳବର ସର୍ଦ୍ଦାରମାନଙ୍କ ବ୍ୟତୀତ ) ନିର୍ଦ୍ଦିଷ୍ଟ ଦିନ ମଧ୍ୟରେ ଭିତରକୁ ଆସିଯାଇଥିବା ଅନ୍ୟ ସମସ୍ତଙ୍କୁ କ୍ଷମା କରିଦିଆଗଲା । ତଥାପି ଅନ୍ୟ ଯେଉଁମାନେ ଇଂରେଜ ବିରୁଦ୍ଧରେ ଅସ୍ତ୍ର ଧାରଣ କରିବେ, ସେମାନଙ୍କୁ କଠିନ ଦଣ୍ଡ ଦିଆଯିବ । ସାମରିକ ଆଇନ୍ ଜାରି ମଧ୍ୟ ସମୀଚୀନ ହୋଇପାରେ, ତେବେ ବର୍ତ୍ତମାନ ତାର ପ୍ରୟୋଜନ ନାହିଁ ।

ଏହି ସମୟ ମଧ୍ୟରେ 29 ତାରିଖରେ ଇଡନ୍ କିତ୍ତୁରର ଓକିଲଙ୍କ ସହିତ ଆଲୋଚନା କରିବା ପରେ ଚିଠି ଖଣ୍ଡିଏ ଲେଖିଲେ । ସେଥିରେ ସେ ଏହି ଆଲୋଚନାର ବିବରଣୀ ସହିତ ତତ୍କାଳୀନ ସ୍ଥିତି ସମ୍ପର୍କରେ ନିଜସ୍ୱ ମନ୍ତବ୍ୟ ଦେଇ ଲେଖିଲେ :

ମୁଁ ଏହା ଭାବିବାକୁ ବାଧ୍ୟ ହେଉଛି ଯେ, କିତୁରରେ ଯେଉଁ ଦୁଃଖଦ ଘଟଣା ଘଟିଗଲା, ତାହା ପୂର୍ବ ପରିକଳ୍ପିତ ନଥିଲା । ଯଦି ଥାକରେ ପ୍ରଥମେ ସେନା ନେଇ ଆକ୍ରମଣ କରିବାକୁ ନିର୍ଦ୍ଦେଶ ଦେଇନଥାନ୍ତେ, ତେବେ ଏଭଳି ଘଟଣା ଆଦୌ ଘଟିନଥାନ୍ତା । କିତୁରର ସାମ୍ପ୍ରତିକ ଅବସ୍ଥା ମୁଁ ଯେତେଦୂର ପର୍ଯ୍ୟନ୍ତ ବିଶ୍ଳେଷଣ କରିପାରୁଛି, ମୋର ଧାରଣା ହୋଇଛି ଯେ, ସାମୟିକ ଭାବରେ କ୍ରୋଧାନ୍ୱିତ ହୋଇ ଗୁରୁ ସିଦ୍ଧପ୍ପା ତଥା ଅନ୍ୟମାନେ ଏହି କାଣ୍ଡ ଭିଆଇଥିବାର ଅନୁଭବ କରିଛନ୍ତି । ଯଦି ସରକାର ସେମାନଙ୍କର ବ୍ୟକ୍ତିଗତ ସୁରକ୍ଷା ସମ୍ପର୍କରେ ପ୍ରତିଶ୍ରୁତି ଦିଅନ୍ତି, ତେବେ ସେମାନେ ସବୁକଥା ମାନିନେବେ । ମୋର ଧାରଣା ପୂର୍ବରୁ ଯେଉଁ ହିଂସାତ୍ମକ କାଣ୍ଡମାନ କରିଥିଲେ, ତାହାର ଅଯୌକ୍ତିକତା ସେମାନେ ଅନୁଭବ କରିପାରିଛନ୍ତି । ସରକାର ଏହା ଅବଶ୍ୟ ସ୍ୱୀକାର କରିବେଯେ, ତତ୍କାଳୀନ ବିପଦରୁ ଉଦ୍ଧାର ପାଇବା ନିମନ୍ତେ ଷ୍ଟିଭେନ୍‌ସନ୍ ଇତ୍ୟାଦିଙ୍କୁ ବନ୍ଦୀ ଭାବରେ ଅଟକାଇ ରଖିବା ବ୍ୟତୀତ ଏମାନଙ୍କ ନିକଟରେ ଅନ୍ୟ ଉପାୟ ନଥିଲା । ମୋର ଆଶଙ୍କା ଯେ, ଶୀଘ୍ର ଆପଣ ଏଠି ଉପସ୍ଥିତ ହୋଇପାରିଲେ ହିଁ ଏହି ଦୁର୍ଭାଗା ଭଦ୍ରବ୍ୟକ୍ତିମାନଙ୍କୁ ପ୍ରାଣରକ୍ଷାନିମନ୍ତେ ସୁଯୋଗ ମିଳିବ । କାରଣ, ଯେପର୍ଯ୍ୟନ୍ତ ବନ୍ଦୀମାନଙ୍କୁ ମୁକ୍ତ କରାଃନଯାଇଛି, ସେ ପର୍ଯ୍ୟନ୍ତ ସେମାନଙ୍କ ସହିତ କୌଣସି କଥାବାର୍ତ୍ତା କରାଯିବ ନାହିଁ, ଆପଣଙ୍କର ଏହି ସର୍ତ୍ତକୁ ସେମାନେ ମାନିନେଇ ପାରନ୍ତି । ମୋର ସନ୍ଦେହ ଯେ, ଆପଣଙ୍କଠାରୁ ନିମ୍ନ ପଦମର୍ଯ୍ୟାଦାସମ୍ପନ୍ନ ଯେକୌଣସି ବ୍ୟକ୍ତି ବନ୍ଦୀମୁକ୍ତି ନିମନ୍ତେ ପ୍ରଯତ୍ନକଲେ ସେଥିରେ ସଫଳତା ପାଇପାରିବେ ନାହିଁ । ଆପଣଙ୍କ ଅବଗତି ନିମନ୍ତେ ଶ୍ରୀନିବାସ ରାଓଙ୍କ ବକ୍ତବ୍ୟର ନକଲ ଏଥିସହ ଦିଆଗଲା ।

ଏହି ସ୍ଥାନର ଅମଲଦାର କର୍ଣ୍ଣେଲ ପୀୟର୍ସଙ୍କୁ ଯେଉଁ ସୂଚନା ଦେଇଥିଲେ, ସେ ସମ୍ପର୍କରେ (ଯାହା ସହିତ ତାଙ୍କର କାଲିର ପତ୍ର ଥିଲା ) ମୁଁ ଏହି ସୂଚନାର ଆଧାର ବିଷୟରେ ତାଙ୍କୁ ଉତ୍ତମ ରୂପେ ପରୀକ୍ଷା କରିବା ପରେ ଏହି ମନ୍ତବ୍ୟ ଦେବା ନିମନ୍ତେ ଅନୁମତି ପ୍ରାର୍ଥନା କରୁଛି । ଜଣାଯାଉଛି ଯେ, ତାଙ୍କ ପାଖରେ କେବଳ କେତେକ ଗୁଜବ ଥିଲା ଏବଂ ତାଙ୍କର ସୂଚନା ତିଳେମାତ୍ର ଗ୍ରହଣ ଯୋଗ୍ୟ ନୁହେଁ । ମୁଁ ତାଙ୍କ ବକ୍ତବ୍ୟର ଏକ ନକଲ ଏଥି ସହିତ ଦେଉଛି । ମୁଁ କାଲି ଏଠାରେ ମୋ ଲୋକଙ୍କ ସହିତ ମାର୍ଚ୍ଚ କରିକରି ଏତେ କ୍ଳାନ୍ତ ହୋଇପଡ଼ିଲି ଯେ, ଜାଗିରଦାର ତଥା ପଟ୍ଟବର୍ଦ୍ଧନମାନଙ୍କ ମଧ୍ୟରେ କଣ ଘଟୁଛି, ତାହା ଜାଣିବା ନିମନ୍ତେ ସମୟ ପାଇପାରିନାହିଁ । ଆଶା କରୁଛି ଦିନକ ମଧ୍ୟରେ ଆପଣଙ୍କୁ କେତେକ ପ୍ରମାଣିକ ସୂଚନା ଦେଇପାରିବି । ତେବେ ପୂରା ରାଜ୍ୟରେ ଯେ ଶାନ୍ତି ରହିଛି, ଏଥିରେ ମୋର ସନ୍ଦେହ ନାହିଁ ।

ବମ୍ବେରୁ ନିର୍ଦ୍ଦେଶ ନପାଇବା ପର୍ଯ୍ୟନ୍ତ କିତୁର ଦୁର୍ଗ ଆକ୍ରମଣ କରାଯିବ ନାହିଁ, କାରଣ ଷ୍ଟିଭେନ୍‌ସନ୍ ତଥା ଇଲିଅଟଙ୍କ ସୁରକ୍ଷା ବ୍ୟାପାର ଏହା ସହିତ ଜଡ଼ିତ । କର୍ଣ୍ଣେଲ ପୀୟର୍ସଙ୍କର ଏହି ମନୋଭାବ ଜାଣିବା ପରେ ମୁଁ କିତୁରର ନେତାମାନଙ୍କୁ ଏ ବିଷୟରେ ଅବହିତ କରାଇବା ନିମନ୍ତେ ମନସ୍ଥ କରିଛି । ମୋର କଥାବାର୍ତ୍ତାର ଏକକିତା ନକଲ ଏହା ସହିତ ଦେଉଛି । ଏହା ବ୍ୟତୀତ ମୋ ପାଖରେ ରହୁଥିବା କିତୁରର ଓକିଲଙ୍କୁ ମୁଁ ସ୍ପଷ୍ଟ ଭାବରେ ଜଣାଇ ଦେଇଛି ଯେ, ଆମ ଦେଶବାସୀଙ୍କୁ ବନ୍ଦୀକରି ସରକାରଙ୍କ କ୍ରୋଧରୁ ମୁକ୍ତି ପାଇବା ନିମନ୍ତେ ଯଦି ତାଙ୍କର ପ୍ରଭୁ ଚିନ୍ତା କରୁଥାନ୍ତି, ତେବେ ସେଥିରେ ସେ ସଫଳ ହେବେ ନାହିଁ । ବରଂ ଶୀଘ୍ର ଅସ୍ତ୍ର ସମ୍ପରଣକରି ଷ୍ଟିଭେନ୍‌ସନ୍ ତଥା ଇଲିଅଟଙ୍କୁ ଆମକୁ ଫେରାଇଦେଲେହିଁ, ସେମାନେ ଆମର ସହାନୁଭୂତି ପାଇପାରନ୍ତି ।

ମୋତେ ବର୍ତ୍ତମାନ ଖବର ମିଳିଛି ଯେ, ଦୁଇଶହ ଆରବ ସାବନ୍ତବାଦୀରୁ କିତ୍ତୁର ଆଡ଼କୁ ଯାତ୍ରା କରିଛନ୍ତି । ଏହି ସୂଚନା ଆମର ପଶ୍ଚିମୀ ସୀମାର ଜଣେ ଜିଲ୍ଲାଦାର ଏଠାକାର ଅମଲଦାରଙ୍କୁ ଦେଇଥିଲେ । ଜିଲ୍ଲାଦାର କେବଳ ଏତିକି କହୁଛନ୍ତି ଯେ, ତାଙ୍କ ଗ୍ରାମରୁ ସେ ଏହି ଖବର ଶୁଣିଛନ୍ତି ।

ବିଭିନ୍ନ ଜାଗିରିଦାରଙ୍କ ନିକଟରେ ଆମର ଯେଉଁସବୁ ଓକିଲ ଅଛନ୍ତି, ସେମାନେ ଏ ପର୍ଯ୍ୟନ୍ତ ମୋତେ ଏ ବିଷୟରେ କିଛି ଜଣାଇ ନାହାଁନ୍ତି । ତେବେ ଏଭଳି ହୋଇପାରେ ଯେ, ସେମାନେ ନିଜର ବକ୍ତବ୍ୟ ଧାରବାର ପଠାଇ ଦେଇଥାଇପାରନ୍ତି, ଯାହା ମୁଁ ଶୀଘ୍ର ପାଇବି ।

ଏଲ୍‌ଫିନ୍‌ଷ୍ଟୋନ୍‌ଙ୍କର ଆଦେଶ ଏବଂ ଇଡନଙ୍କ ରିପୋର୍ଟର ଆଧାରରେ କମିଶନର ସ୍ଥିର କରିଛନ୍ତି ଯେ, ସମସ୍ତ କ୍ଷେତ୍ରରୁ ସାଧନ ସଂଗ୍ରହ କରାଯାଇ ଆମର ଲଢୁଆ ବାହିନୀକୁ ଅଧିକ ଶକ୍ତିଶାଳୀ କରିବା ନିମନ୍ତେ ସକ୍ରିୟ ଉଦ୍ୟମ କରାଯିବ ।

ଚାପ୍‌ଲିନ୍ ପୁନେ ଆସିଥିବା ମହୀଶୂରର ବ୍ରିଟିଶ୍ ରେଜିମେଣ୍ଟ ଏ.ଏଚ୍. ଏସ୍. କୋଲଙ୍କୁ ଡକାଇ ପଠାଇ ତାଙ୍କୁ କହିଲେ ଯେ, ମହୀଶୂର ଲଢୁଆ ବାହିନୀ ଏବଂ ତୋପ ଇତ୍ୟାଦିକୁ ଏକତ୍ରିତ କରାଯାଉ । କର୍ଣ୍ଣେଲ୍ ମହୀଶୂର ସ୍ଥିତ ସେନାଧିକାରୀଙ୍କୁ 30 ଅକ୍ଟୋବର 1824ରେ ନିମ୍ନଲିଖିତ ସମ୍ବାଦ ପଠାଇଲେ :

> ଆପଣ ଲକ୍ଷ୍ୟ କରିଥିବେ ଯେ, ଯେତେବେଳେ ଥାକରେଙ୍କର ଅଧିକାଂଶ ସେନାଦୁର୍ଗ ମଧ୍ୟରେ ଅଟକିଗଲେ ସେତେବେଳେ ସେମାନଙ୍କୁ ଉଦ୍ଧାର କରିବା ନିମନ୍ତେ ପ୍ରଯତ୍ନ କରିବା ବ୍ୟତୀତ ତାଙ୍କ ପାଖରେ ଅନ୍ୟ ଉପାୟ ନଥିଲା । ମାତ୍ର ସେ ଯେଉଁ ଉପାୟରେ ଏହା କଲେ ତାହା ସଫଳ ହେଲା ନାହିଁ ଏବଂ ସଂଲଗ୍ନ ପତ୍ରରେ ଆପଣ ତାହାର ପରିଣାମ ଦେଖନ୍ତୁ । କିତ୍ତୁର ଦକ୍ଷିଣୀ ଜାଗିରଦାରମାନଙ୍କର ମଧ୍ୟବର୍ତ୍ତୀ ଅଞ୍ଚଳ ତାହା କୋହ୍ଲାପୁରଠାରୁ ଦୂରବର୍ତ୍ତୀ ନୁହେଁ । କୋହ୍ଲାପୁରର ରାଜା ଅସନ୍ତୁଷ୍ଟ । ଘାଟି ମଧବର୍ତ୍ତୀ ଏହି ବିକ୍ଷୁବ୍ଧ ଅଞ୍ଚଳ ପଛ ଆଡ଼କୁ ଅଛି । ତଥା କିତ୍ତୁରକୁ ଲାଗିଥିବା ପାହାଡ଼ ଏବଂ ଜଙ୍ଗଲ ମଧ୍ୟବର୍ତ୍ତୀ ଏହା ଏକ ସୁରକ୍ଷିତ ଅଞ୍ଚଳ । ପର୍ତ୍ତୁଗାଲ ଅଧିକୃତ ଏହି ଅଞ୍ଚଳ ସୋଁଦା ପର୍ଯ୍ୟନ୍ତ ଲମ୍ବିଯାଇଛି । ଦକ୍ଷିଣ ମରାଠା ପ୍ରଦେଶରେ ଆମର ସୈନ୍ୟସଂଖ୍ୟା ଖୁବ୍ କମ୍ ଏବଂ ଯଦି ଏହି ବିଦ୍ରୋହକୁ ଶୀଘ୍ର ଦମନ କରାନଯାଏ ତା'ହେଲେ ତାହା ନିଶ୍ଚୟ ବ୍ୟାପିଯିବ । ଯେତେ ଘୋଡ଼ା ରାଜା ଦେଇପାରିବେ, ସେତକ ରାଣୀ ବେଦନୂର ଆଡ଼କୁ ପଠାଇ ଦେବା ନିମନ୍ତେ ପ୍ରାର୍ଥନା କରୁଛି । ଯଦି ଆପଣ ହରିହର ସୀମାରେ ରାଜାଙ୍କର ଅନ୍ୟ କୌଣସି ସେନାଦଳକୁ ଠୁଳ କରିପାରନ୍ତି ତେବେ ବିଦ୍ରୋହ ବ୍ୟାପିବାର ସୁଯୋଗ ପାଇବ ନାହିଁ । ଏଠୁ ସୈନ୍ୟ ପଠାଯାଉଛନ୍ତି, ମାତ୍ର ସେମାନଙ୍କ ସଂଖ୍ୟା ବହୁତ କମ୍ । ଏ ସମସ୍ତ କାର୍ଯ୍ୟ ଖୁବ୍ ଶୀଘ୍ର ହେବା ବାଞ୍ଛନୀୟ ।

ଏ ଭିତରେ ଇଡନ୍ କିତ୍ତୁରର ଓକିଲଙ୍କ ସାଙ୍ଗରେ ଆଲୋଚନା ଚଳାଇଗଲେ । ଷ୍ଟିଭେନ୍‌ସନ୍ ତଥା ଇଲିୟଟଙ୍କୁ ବିନା ସର୍ତ୍ତରେ ମୁକ୍ତ କରିଦେବା ନିମନ୍ତେ ସେ ପ୍ରସ୍ତାବ ଦେଲେ । ରାଜ୍ୟ ଦାୟିତ୍ୱ ପୁନଃ ହସ୍ତାନ୍ତର ସମ୍ପର୍କରେ କୌଣସି ନିଶ୍ଚିତ ପ୍ରତିଶ୍ରୁତି ଦିଆ ନଯିବା ପର୍ଯ୍ୟନ୍ତ କିତ୍ତୁରର ଶାସକ ଏଭଳି ପଦକ୍ଷେପ ନେବାକୁ ପ୍ରସ୍ତୁତ ନଥିଲେ । କମିଶନର୍ ଶ୍ରୀନିବାସ ରାଓଙ୍କୁ କହିଲେ ଯେ, ପୂର୍ବୋକ୍ତ ବନ୍ଦୀଦ୍ୱୟଙ୍କୁ ସ୍ୱେଚ୍ଛାରେ ମୁକ୍ତିଦେଲେ ହିଁ କିତ୍ତୁର ଶାସକ ଇଂରେଜମାନଙ୍କର ସହାନୁଭୂତି ଲାଭ କରିପାରିବେ । ଏଥିରେ କିତ୍ତୁରର ଓକିଲ ଚାପଲିନ୍‌କୁ ଆଶ୍ୱାସନା ଦେଲେ ଯେ, ସେ ସର୍ଦ୍ଦାର ଗୁରୁ ସିଦ୍ଧପ୍ପା ତଥା ଆବରଦୀ ବୀରପ୍ପାଙ୍କୁ ଏ ବିଷୟରେ ରାଜି କରାଇବା ନିମନ୍ତେ ଉଦ୍ୟମ କରିବେ । ସେମାନେ ଏଭଳି ସର୍ତ୍ତମାନିବାକୁ ପ୍ରସ୍ତୁତ ନହୋଇ ନିଜର ସିଦ୍ଧାନ୍ତରେ ଅଟଳ ରହିଲେ । ଇଡନ୍ 30 ଅକ୍ଟୋବର 1824ରେ

ଚାପ୍ଲିନ୍‌ଙ୍କୁ ଲେଖିଲେ, ''ସରକାରୀ ନିର୍ଦ୍ଦେଶ ନ ଆସିବା ପର୍ଯ୍ୟନ୍ତ କିତ୍ତୁରର ନେତାମାନଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ନାହିଁ ବୋଲି ମୁଁ ତାଙ୍କ ଓକିଲଙ୍କୁ ଜଣାଇ ଦେଇଛି । କିନ୍ତୁ ସେଥିରୁ ସେମାନେ ଏହା ଭାବିବା ଉଚିତ୍ ନୁହେଁ ଯେ, ସରକାର ସେମାନଙ୍କ ବିରୁଦ୍ଧରେ କୌଣସି ଦୃଢ଼ ପଦକ୍ଷେପ ନେବେ ନାହିଁ । ବସ୍ତୁତଃ ଏଭଳି ପରିସ୍ଥିତିରେ ସେମାନେ ସରକାରଙ୍କଠାରୁ କୌଣସି ଉଦାରତା ଆଶାକରିବା ଉଚିତ୍ ନୁହେଁ । ତାହା ସହିତ ମୁଁ ଏକଥା ମଧ୍ୟ ସ୍ପଷ୍ଟ କହିଦେଇଛି ଯେ, ଷ୍ଟିଭେନ୍‌ସନ୍ ତଥା ଇଲିୟଟ୍‌ଙ୍କର ବିନାସର୍ତ୍ତ ମୁକ୍ତି ହେଉଛି ଏକମାତ୍ର ଆଧାର, ଯାହା ସରକାରଙ୍କ ଦୃଷ୍ଟିକୋଣକୁ ନରମ କରିପାରେ । ଯେତେବେଳେ ମୁଁ ଏହା ଉପରେ ଜୋର ଦେଲି, ସେତେବେଳେ ଓକିଲଙ୍କର ମନେହେଲା ଯେ ଆପଣଙ୍କୁ ବନ୍ଦୀ ହସ୍ତାନ୍ତର ନିମନ୍ତେ ଗୁରୁ ସିଦ୍ଧପ୍ପା ତଥା ଆବରଦୀ ବୀରପ୍ପାଙ୍କୁ ହୁଏତ ରାଜି କରାଯାଇପାରେ । ମାତ୍ର ଆପଣଙ୍କଠାରୁ ତଳ ପାହିଆର କୌଣସି କର୍ମଚାରୀଙ୍କ ହାତରେ ବନ୍ଦୀଙ୍କୁ ଛାଡ଼ିଦିଆଯାଇ ନପାରେ । ତାହାପରେ ବନ୍ଦୀଦ୍ୱୟଙ୍କୁ ଶୀଘ୍ର ମୁକ୍ତି ଦେଲେ ହିଁ ସେମାନେ ସରକାରଙ୍କ ସହାନୁଭୂତି ଲାଭ କରିପାରିବେ ବୋଲି ମୁଁ ସ୍ପଷ୍ଟ କରିଦେଲି । ଏହାଦ୍ୱାରା ଇଂରେଜମାନଙ୍କ ଆସ୍ଥା ବୃଦ୍ଧି ପାଇବ ଏବଂ ସେମାନଙ୍କ ସମ୍ପର୍କରେ କୌଣସି ସ୍ଥାୟୀ ନିଷ୍ପତ୍ତି ନେବା ପୂର୍ବରୁ ସରକାର ସେମାନଙ୍କର ଅନୁକୂଳ ପ୍ରତ୍ୟେକ ପରିସ୍ଥିତିକୁ ବିଚାରକୁ ନେବେ । ମାତ୍ର ଏହାର ବିପରୀତ ଆଚରଣ ଯଦି କରାଯାଏ, ତେବେ ସରକାରଙ୍କ ସମ୍ମୁଖରେ ଆଉ କୌଣସି ବିକଳ୍ପ ରହିବ ନାହିଁ । ଓକିଲ ଉତ୍ତର ଦେଲେ,''ଏହି ପ୍ରକାର ପରିସ୍ଥିତିରେ ଆପଣଙ୍କ ସରକାର ଆମ ଆଚରଣକୁ ଯେ ଉପେକ୍ଷା କରିବ ନାହିଁ, ଏହା ଆମକୁ ଭଲ ଭାବରେ ଜଣାଅଛି । ସେ ମୋ ସହିତ ଏକମତ ହେଲେ ଯେ, ବନ୍ଦୀମାନଙ୍କୁ ମୁକ୍ତିଦେବା ହିଁ ହେଉଛି ବର୍ତ୍ତମାନ ପରିସ୍ଥିତିରେ ସର୍ବୋତ୍ତମ କାର୍ଯ୍ୟ ବୋଲି ସେ ମନେକରନ୍ତି । ତା'ପରେ ସେ କହିଲେ ଯେ, ଶୀଘ୍ର କିତ୍ତୁର ଯାଇ ଏଠାରେ ହୋଇଥିବା ବିଚାର ବିମର୍ଶ ସମ୍ପର୍କରେ ସର୍ଦ୍ଦାରମାନଙ୍କ ସହିତ ଆଲୋଚନା କରିବେ ତଥା ଷ୍ଟିଭେନ୍‌ସନ୍ ଏବଂ ଇଲିୟଟ୍‌ଙ୍କ ମୁକ୍ତି ନିମନ୍ତେ ଆନ୍ତରିକ ଉଦ୍ୟମ କରିବେ । ସରକାରୀ ଦୃଷ୍ଟିକୋଣର ପରିବର୍ତ୍ତନ ନିମନ୍ତେ ଏହି ପଦକ୍ଷେପ ଯେ ଏକାନ୍ତ ଜରୁରୀ ଏହା ସେ ବୁଝିପାରିଛନ୍ତି । ସେ କିତ୍ତୁର ଫେରିଯିବା ନିମନ୍ତେ ମୋର ସମ୍ମତି ପାଇସାରିଛନ୍ତି । ଏହାର ପରିଣାମ ଆପଣଙ୍କୁ ଶୀଘ୍ର ଜଣାଇଦିଆଯିବ ।

ନିଜର ଦୟନୀୟ ଅବସ୍ଥା ବିଷୟରେ ଷ୍ଟିଭେନ୍‌ସନ୍ କର୍ଣ୍ଣେଲ ପୀୟର୍ସଙ୍କୁ 26 ଅକ୍ଟୋବରରେ ଯେଉଁ ପତ୍ର ଲେଖିଥିଲେ, ତାହା ପାଇବା ପରେ ପୀୟର୍ସ 30 ଅକ୍ଟୋବର ଦିନ ପୁଣି ଚାପ୍ଲିନ୍‌ଙ୍କୁ ପତ୍ର ଲେଖିଲେ । ଏହି ପତ୍ରରେ କିତ୍ତୁର ଦୁର୍ଗର ଦୃଢ଼ତା ତଥା ସେଠାର ଲଢ଼ୁଆ ବାହିନୀର ପରିମାଣ ସମ୍ପର୍କରେ ପୀୟର୍ସଙ୍କ ଆତଙ୍କ ବିଷୟରେ ସ୍ପଷ୍ଟ ସୂଚନା ଦିଆଯାଇଥିଲା । କିତ୍ତୁର ଆକ୍ରମଣ ସମ୍ପର୍କରେ କୌଣସି ତରବରିଆ ପଦକ୍ଷେପ ନେବାକୁ କର୍ଣ୍ଣେଲ୍ ପୀୟର୍ସ ଯେ ଆଦୌ ପ୍ରସ୍ତୁତ ନଥିଲେ, ଏଥିରୁ ତାହାର ସ୍ପଷ୍ଟ ସୂଚନା ମିଳେ ।

ପତ୍ରର ନିର୍ବାଚିତ ଅଂଶ ନିମ୍ନରେ ଦିଆଗଲା :

କିତ୍ତୁର ସମ୍ପର୍କରେ ନିଜ ଆଦେଶକୁ କାର୍ଯ୍ୟରେ ପରିଣତ କରାଇବାକୁ ଯାଇ ଥାକରେ ଯେଉଁ ପଦକ୍ଷେପ ନେଇଥିଲେ, ତାହାର ଭୟଙ୍କର ପରିଣାମ ମୋର ପତ୍ର ସହିତ ସଂଯୁକ୍ତ କାଗଜପତ୍ରରୁ ସ୍ପଷ୍ଟ ଜଣାଯିବ । ଇଲିୟଟ୍ ତଥା ଷ୍ଟିଭେନ୍‌ସନ୍‌ଙ୍କ ପତ୍ରରୁ ସେମାନଙ୍କ ଦୟନୀୟ ସ୍ଥିତି ସମ୍ପର୍କରେ ବିଚାର ଆଲୋଚନା କରିସାରିବା ପରେ ବିଦ୍ରୋହୀମାନଙ୍କ ସମ୍ପର୍କରେ ଆପଣଙ୍କର ମନୋଭାବ କ'ଣ ହେବ, ତାହା ଜାଣିବା ନିମନ୍ତେ ମୁଁ ଅତ୍ୟନ୍ତ ଉତ୍ସୁକ । ପରିସ୍ଥିତିର ଭୟାବହତା

ହେତୁ ମୁଁ କେବଳ ସେତିକିମାତ୍ର ପଦକ୍ଷେପ ନେଇପାରିଛି, ଯାହା ମୋ ନିକଟରେ ଥିବା ଅଳ୍ପ ପରିମାଣର ସୈନ୍ୟମାନେ କରିପାରିବା ଅବସ୍ଥାରେ ଥିଲେ ।

କିତ୍ତୁର ଦୁର୍ଗ ଅତ୍ୟନ୍ତ ଦୃଢ଼ ହୋଇଥିବାରୁ ଏହାକୁ ଭାଙ୍ଗିବାକୁ ପଡ଼ିପାରେ ବୋଲି କୁହାଯାଉଛି । ଏହି କାର୍ଯ୍ୟ ନିମନ୍ତେ ବିଧ୍ୱଂସକ ଗାଡ଼ି ଆବଶ୍ୟକ । ତା'ସହିତ ସେହି ଗାଡ଼ି ଚଳାଇବା ନିମନ୍ତେ କୁଶଳୀ ବ୍ୟକ୍ତି ଏବଂ ଟାଣିବାପାଇଁ ବଳୁଆ ପଶୁ ପ୍ରୟୋଜନ । ମୋ ପାଖରେ ଏସବୁକିଛି ନାହିଁ ।

ଏହିସବୁ କର୍ମଚାରୀମାନଙ୍କ ଦୁର୍ଦ୍ଦଶା ବ୍ରିଟିଶ୍ ଶାସକମାନଙ୍କର ଚିନ୍ତାର କାରଣ ହୋଇପଡ଼ିଥିଲା । କିତ୍ତୁରର ଶାସକ ନୀରବ ରହିଥିଲେ ତଥା ସେମାନଙ୍କ ଆତ୍ମରକ୍ଷାର ଏକମାତ୍ର ସାଧନା ବ୍ରିଟିଶ୍ ବନ୍ଦୀମାନଙ୍କୁ ଛାଡ଼ିବା ନିମନ୍ତେ ପ୍ରସ୍ତୁତ ନଥିଲେ । ଇଂରେଜମାନେ ଏହାକୁ ଆତ୍ମମର୍ଯ୍ୟାଦାର ପ୍ରଶ୍ନ ରୂପେ ଗ୍ରହଣ କରିନେଇ ବିନା ସର୍ତ୍ତରେ ବନ୍ଦୀମାନଙ୍କୁ ମୁକ୍ତି ଦିଆନଯିବା ପର୍ଯ୍ୟନ୍ତ କିତ୍ତୁରର ଭବିଷ୍ୟତ ସମ୍ପର୍କରେ କୌଣସି ଆଶ୍ୱାସ ଦେବା ନିମନ୍ତେ ପ୍ରସ୍ତୁତ ନଥିଲେ । ଗଭର୍ଣ୍ଣର ଏଲଫିନ୍‌ଷ୍ଟୋନ୍ ଏହି ସ୍ଥାଣୁ ଅବସ୍ଥା ସମ୍ପର୍କରେ ସ୍ୱାଭାବିକ ଭାବରେ ଚିନ୍ତିତ ଥିଲେ ଏବଂ ଏ ବିଷୟରେ ଚାପ୍‌ଲିନ୍‌ଙ୍କ ସହିତ ଆଲୋଚନା କରିବା ନିମନ୍ତେ ଚାହୁଁଥିଲେ । ସେ ପୁନେ ଯାତ୍ରା କଲେ । ସ୍ଥିତି ସମ୍ପର୍କରେ ନିଜର ବିଚାର ତଥା ମତାମତ ଜଣାଇ ଏଲଫିନ୍‌ଷ୍ଟୋନ୍ 31 ଅକ୍ଟୋବର 1824 ରେ ଯେଉଁ ଟିପ୍ପଣୀ ଲେଖିଥିଲେ ତାହା ନିମ୍ନମତେ :

> ଏଠାକୁ ଆସି ମହାମହିମ କମାଣ୍ଡର-ଇନ୍-ଚିଫ ତଥା କମିଶନରଙ୍କ ସହିତ ପରାମର୍ଶ କରିବା ପରେ ନିମ୍ନଲିଖିତ ବିଷୟ ଗୁଡ଼ିକୁ ତାଙ୍କର ଏବଂ ମୋର ନିଜସ୍ୱ ମତବୋଲି ଗ୍ରହଣ କରିନିଆଯାଇପାରେ । ଅନ୍ତିମ ଟିପ୍ପଣୀ ଲେଖିବା ପରେ ମୁଖ୍ୟ ପରିସ୍ଥିତି ସମ୍ପର୍କରେ ମୋର ପ୍ରକୃତ ଧାରଣା ହୋଇଛି । ସେଥିରେ ଶୀଘ୍ର ପଦକ୍ଷେପ ନେବା ନିମନ୍ତେ ଯେଉଁ ପରାମର୍ଶ ଦିଆଯାଇଥିଲା, ସେ ବିଷୟରେ ଏବେ ସନ୍ଦେହ ହେଉଛି । ଅନେକ ସିପାହୀ ତଥା ଅନ୍ୟ ଲୋକଙ୍କ ସହିତ ଷ୍ଟିଭେନ୍‌ସନ୍ ତଥା ଇଲିୟଟ୍ ବିଦ୍ରୋହୀମାନଙ୍କ ଦ୍ୱାରା ବନ୍ଦୀ ହୋଇଛନ୍ତି । ମୋ ନିକଟରେ ପେଶ୍ ହୋଇଥିବାର କୁହାଯାଉଥିବା ଏଭଳି କିଛି ସର୍ତ୍ତ ପାଳନ କରାନଗଲେ, ସେମାନଙ୍କୁ ହତ୍ୟା କରି ଦିଆଯିବ ବୋଲି ଧମକ ଦିଆଯାଉଛି । ବିଦ୍ରୋହ ଆରମ୍ଭ ହେବା ପରେ କୌଣସି ପ୍ରସ୍ତାବ ମିଳିନାହିଁ । ତେବେ ସେମାନେ ଯେ ରାଜ୍ୟକୁ ପୂର୍ବସ୍ଥିତିରେ ଫେରିପାଇବାକୁ ଚାହାଁନ୍ତି, ଏହା ପ୍ରାୟ ନିଶ୍ଚିତ ।

ବନ୍ଦୀମାନଙ୍କର ସ୍ଥିତି ଅତ୍ୟନ୍ତ ଦୟନୀୟ । ଷ୍ଟିଭେନ୍‌ସନ୍ ତଥା ଇଲିୟଟଙ୍କ ଅବସ୍ଥା ତ ଉଦ୍‌ବେଗଜନକ । ଏହି ପରିସ୍ଥିତିରେ ସେମାନେ ଯେଉଁ ଧୈର୍ଯ୍ୟ ଦେଖାଉଛନ୍ତି, ସେଥିରୁ ସେମାନଙ୍କ ଭବିଷ୍ୟତର ଦାୟିତ୍ୱ ଆମ ଉପରେ ପଡୁଛି । ଏମାନଙ୍କ ଜୀବନ ରକ୍ଷା ନିମନ୍ତେ ବିକାକିଣାରେ ଆମେ ଯେତେବଡ଼ ରାଜ୍ୟ ଦେବାକୁ ପ୍ରସ୍ତୁତ ଥାଉନା କାହିଁକି, ସାର୍ବଜନୀନ ହିତ ଦୃଷ୍ଟିରୁ ତଥା ଭାରତରେ ପ୍ରତ୍ୟେକ ୟୁରୋପୀୟରଙ୍କର ନିରାପତ୍ତା ଦୃଷ୍ଟିରୁ ଆମେ ଏଭଳି ବ୍ୟାପାରକୁ ଉତ୍ସାହିତ କରିବା ଉଚିତ ହେବ ନାହିଁ । କାରଣ ଏହା ପରେ ପ୍ରତ୍ୟେକ ହତାଶ ଦୁଃସାହସୀ ବ୍ୟକ୍ତି ଯେକୌଣସି ୟୁରୋପୀୟ ଯୁଦ୍ଧବନ୍ଦୀକୁ ଅଟକ ରଖି ଆପଣାର ଅପରାଧରୁ ଦଣ୍ଡମୁକ୍ତ ନିମନ୍ତେ ଉଦ୍ୟମ କରିବାକୁ ଉତ୍ସାହିତ ହେବେ । ଏହା ବ୍ୟତୀତ ବାଞ୍ଛିତ ଲକ୍ଷ୍ୟ ପ୍ରାପ୍ତି ନିମନ୍ତେ ବିଦ୍ରୋହୀମାନଙ୍କ ଦାବୀ ଯେ ଗ୍ରହଣ କରିନେବାକୁ ପଡ଼ିବ, ଏଥିରେ ମୋର ବିଶ୍ୱାସ ନାହିଁ । ଯଦି କିତ୍ତୁରର ସମ୍ପୂର୍ଣ୍ଣ ପାରିଷଦ କିମ୍ବା ମୁଖ୍ୟ ସର୍ଦ୍ଦାରମାନଙ୍କୁ ନିଜର ନିରାପତ୍ତା ସମ୍ପର୍କରେ ନିରାଶ ହେବାକୁ ପଡ଼େ, ତେବେ ସେମାନେ ନିଜ ବ୍ୟବସ୍ଥା ନିଜେ କରିବା ନିମନ୍ତେ ବାଧ୍ୟ ହୋଇପାରନ୍ତି । କିନ୍ତୁ ଯଦି ସମସ୍ତଙ୍କୁ ନିରାପତ୍ତା ଏବଂ କ୍ଷମାର ପ୍ରତିଶ୍ରୁତି ଦେଇଦିଆଯାଏ.

ତେବେ ମୁଁ ଭାବୁଛି ଯେ, ରାଜ୍ୟ ପ୍ରତ୍ୟର୍ପଣ କିମ୍ବା ନେତାମାନଙ୍କ ଦଣ୍ଡମୁକ୍ତି ବିଷୟ ପ୍ରତ୍ୟାଖ୍ୟାନ କରିଦିଆଗଲେ ମଧ୍ଯ ସେମାନେ ଏହି ପ୍ରସ୍ତାବକୁ ଉପେକ୍ଷା କରିପାରିବେ ନାହିଁ । ସେମାନଙ୍କର ଯେକୌଣସି ଉଦ୍ୟମ କିମ୍ବା ଆତ୍ମବଳିଦ୍ୱାରା ଯେ, ରାଜ୍ୟ ଫେରାଇ ଦିଆଯିବ ନାହିଁ, ଏହି ବିଶ୍ୱାସ ସେମାନଙ୍କର ହୋଇଯିବା ଆବଶ୍ୟକ ।

ବର୍ତ୍ତମାନ ତେଣୁ କେବଳ ଏହା ହିଁ ବିଚାର କରିବାକୁ ବାକିଅଛି ଯେ, ଆମେ ସେମାନଙ୍କୁ କେତେ ପର୍ଯ୍ୟନ୍ତ ଅପରାଧ-ମୁକ୍ତି ନିମନ୍ତେ ପ୍ରତିଶ୍ରୁତି ଦେଇପାରିବା । ସେମାନଙ୍କ ଲାଭରେ ଯେମିତି ଆମର ଦୁର୍ବଳତା ପ୍ରକଟିତ ନହୁଏ କିମ୍ବା ଭବିଷ୍ୟତରେ ଏହି ଭଳି ଉଦ୍ୟମକୁ ପ୍ରୋତ୍ସାହିତ କରାନଯାଏ ତାହା ଲକ୍ଷ୍ୟ କରିବାକୁ ହେବ । କିତ୍ତୁରର ଲୋକଙ୍କର ଅପରାଧ ଯେତେ ଭୟଙ୍କର ହେଉନା କାହିଁକି, ଏହା ସାମୟିକ ଆବେଗ-ଉଦ୍‌ଭୂତ ବୋଲି ଜଣାପଡୁଛି । ଏହା ପଛରେ କୌଣସି ବିଶ୍ୱାସଘାତକତାର ପ୍ରଶ୍ନ ନଥିବା ଭଳି ବୋଧହେଉଛି । ମୁଁ ଯେତେଦୂର ଜାଣେ, ସ୍ୱର୍ଗୀୟ ରାଜାଙ୍କ ମୃତ୍ୟୁ ପୂର୍ବର କେତେକ ତରବରିଆ ପଦକ୍ଷେପରୁ ହିଁ ଏହି ଅଶାନ୍ତିର ସୃଷ୍ଟି ହୋଇଛି । ଚୁନ୍ନମ୍ମରର ପ୍ରଭାବ ଏହାକୁ ଉତ୍ସାହିତ କରିଥାଇପାରେ । ମାତ୍ର ଗୁରୁ ସିଦ୍ଧପ୍ପା ହିଁ ଏହାକୁ ଯଥାର୍ଥରେ କାର୍ଯ୍ୟରେ ପରିଣତ କରିଛନ୍ତି । ଜଣାପଡୁଛି ଯେ, ସେଇ ସର୍ଦ୍ଦାର ସମସ୍ତ ବ୍ୟବସ୍ଥା ପରିଚାଳନା ନିଜ ହାତକୁ ନେଇଯାଇଥିଲେ ଏବଂ ସେ ସବୁର ପ୍ରୟୋଗ ନିଜର ବ୍ୟକ୍ତିଗତ ଶତ୍ରୁମାନଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବା ନିମନ୍ତେ କରିଥିଲେ । ଏବେ ମଧ୍ୟ ସେ ବିଦ୍ରୋହୀମାନଙ୍କର ସର୍ବମାନ୍ୟ ନେତା ଏବଂ ସେ ସ୍ୱର୍ଗୀୟ ରାଜାଙ୍କ ବିମାତା ଚେନାମ୍ମାଙ୍କ ନାମକୁ ବ୍ୟବହାର କରୁଛନ୍ତି । ତେଣୁ ଏହି ସବୁ କାର୍ଯ୍ୟର ଉତ୍ତରଦାୟିତ୍ୱ କେବଳ ମାତ୍ର ଗୁରୁ ସିଦ୍ଧପ୍ପାଙ୍କର । ଚେନାମ୍ମା ସମପରିମାଣରେ ଦୋଷୀ (ଯଦିଓ ଏହାର କୌଣସି ପ୍ରମାଣ ନାହିଁ ) ହୋଇଥିଲେ ମଧ୍ୟ ତାଙ୍କ ସ୍ତରର କୌଣସି ଜଣେ ସ୍ତ୍ରୀଲୋକଙ୍କୁ ଦଣ୍ଡ ଦେବା ଆମ ପରମ୍ପରା ସମର୍ଥିତ ନୁହେଁ । ତେଣୁ ତାଙ୍କ ବିରୁଦ୍ଧରେ ଯେଉଁ ଅଭିଯୋଗମାନ କରାଯାଇଛି ସେ ବିଷୟରେ ଚିନ୍ତିତ ହେବା ଅନାବଶ୍ୟକ । ଅନ୍ୟସବୁ ବିଦ୍ରୋହୀମାନଙ୍କୁ ବିନାସର୍ତ୍ତରେ କ୍ଷମା ଦିଆଯିବାର ପ୍ରସ୍ତାବ ଗ୍ରହଣ କରିନିଆଯିବା ଉଚିତ ତଥା ବିପ୍ଳବ ନହୋଇଥିଲେ ସେମାନେ ଯେଉଁ ସ୍ଥିତିରେ ଥାନ୍ତେ, ସେଇ ସ୍ଥିତି ସେମାନଙ୍କୁ ଦିଆଯିବା ଆବଶ୍ୟକ । ଅଭିଯୁକ୍ତ ସର୍ଦ୍ଦାରମାନଙ୍କୁ ଏହି ସୁଯୋଗ ଦିଆନଯାଇ ସେମାନଙ୍କ ସହିତ ଦୃଢ଼ ବ୍ୟବହାର କରାଯିବା ଉଚିତ ।

ଏହି ଯୋଜନା ଅନୁସାରେ ଅବିଳମ୍ବେ ଏକ ଘୋଷଣା ପ୍ରକାଶ କରିବା ନିମନ୍ତେ ମୁଁ ସୁପାରିଶ କରୁଛି । ସେଥିରେ କୁହାଯାଉ ଯେ, ଯେହେତୁ କିତ୍ତୁର ଦେଶାଇ ନିଃସନ୍ତାନ ଅବସ୍ଥାରେ ମୃତ୍ୟୁବରଣ କରିଛନ୍ତି, ଯେହେତୁ ତାଙ୍କର ଅନୁଚରମାନେ ତାଙ୍କ ମୃତ୍ୟୁପରେ ଦତ୍ତକ ଗ୍ରହଣ କରାଇ ତାଙ୍କ ନାମର ମିଥ୍ୟା ବ୍ୟବହାର କରିଛନ୍ତି ତଥା କପଟପୂର୍ଣ୍ଣ ଉପାୟରେ ତାଙ୍କ ଖଜଣାଖାନା ଅଧିକାର କରିଛନ୍ତି, ତେଣୁ ତାଙ୍କର ରାଜ୍ୟ ଏବଂ ଧନସମ୍ପତ୍ତିର ଦାୟିତ୍ୱ ଗ୍ରହଣ ଥାକରେଙ୍କ ପାଇଁ ଆବଶ୍ୟକ ହୋଇପଡ଼ିଥିଲା । କୌଣସି ରାଜବଂଶଜର ସନ୍ଧାନ ମିଳିଲେ, ରାଜ୍ୟକୁ ପୁନର୍ବାର ନୂତନ ବ୍ୟବସ୍ଥା ତାଙ୍କ ହାତରେ ପ୍ରତ୍ୟର୍ପଣ କରିଦେବା ହିଁ ସରକାରଙ୍କର ଲକ୍ଷ୍ୟ ଥିଲା । କୌଣସି ଉତ୍ତରାଧିକାରୀର ଅବର୍ତ୍ତମାନରେ ସରକାର ରାଜ୍ୟ ଗ୍ରହଣ କରିଥାନ୍ତେ ସତ୍ୟ, କିନ୍ତୁ ବିଧବା ତଥା ରାଜକର୍ମଚାରୀମାନଙ୍କ ନିମନ୍ତେ ପ୍ରଚୁର ବ୍ୟବସ୍ଥା କରିଦିଆଯାଇଥାନ୍ତା ତଥା କମ୍ପାନୀ ଶାସିତ ଅନ୍ୟ ଅଞ୍ଚଳ ଭଳି ଏଠାରେ ମଧ ସନନ୍ଦଧାରୀମାନଙ୍କ ସ୍ଥିତିକୁ ପୂର୍ବଭଳି ରଖାଯାଇଥାନ୍ତା । ଦେଶାଇଙ୍କର ବ୍ୟକ୍ତିଗତ ସମ୍ପତ୍ତି, ଧନଦୌଲତ ଆଦି ଯେକୌଣସି ସ୍ଥିତିରେ ତାଙ୍କ ବିଧବାଙ୍କୁ ଦେଇଦିଆଯିବା ଉଚିତ । ଅନୁସନ୍ଧାନରୁ ଜଣାପଡ଼ିଛି ଯେ, ଗୁରୁ ସିଦ୍ଧପ୍ପା ହିଁ

ଥାକରେଙ୍କ ନିମନ୍ତେ ଦ୍ୱାର ବନ୍ଦ କରିଦେବା ପାଇଁ ଲୋକଙ୍କୁ ଉତ୍ତେଜିତ କରାଇଥିଲେ । ଦ୍ୱାର ଖୋଲାଇବା ନିମନ୍ତେ ଉଦ୍ୟମ କରୁଥିବା ସମୟରେ ତାଙ୍କୁ ଗୁଳି କରିଦିଆଗଲା । ତାଙ୍କ ସହିତ ଯେଉଁ 150 ଜଣ ସିପାହୀ ଏବଂ ଗୋଲନ୍ଦାଜ ଥିଲେ ସେମାନଙ୍କୁ ଘେରାଉ କରାଯାଇ ତୋପ ଛଡ଼ାଇ ନିଆଗଲା ।

କିତ୍ତୁରର ଯେଉଁ ଲୋକେ ରାଜାଙ୍କ ଶାସନାଧୀନ ଥାଇ, କିତ୍ତୁରକୁ ଏକ ସ୍ୱତନ୍ତ୍ର ରାଜ୍ୟ ବୋଲି ଚିନ୍ତା କରିବାର ଶିକ୍ଷା ପାଇଥିଲେ, ବର୍ତ୍ତମାନ ବ୍ରିଟିଶ୍ ସରକାରଙ୍କ ପ୍ରତି ସେମାନଙ୍କର କେତେ ଆନୁଗତ୍ୟ ରହିଛି, ହୁଏତ ଏହା ସେମାନେ ନିଜେ ମଧ୍ୟ ଜାଣନ୍ତି ନାହିଁ । ସେମାନଙ୍କୁ ସ୍ୱର୍ଗୀୟ ରାଜାଙ୍କର ମୁଖ୍ୟ କର୍ମଚାରୀ ଉତ୍ତେଜିତ କରାଇଥିଲେ । ସରକାରୀ ସୈନ୍ୟଦଳ ପ୍ରତି ସେମାନଙ୍କର ବିରୋଧାତ୍ମକ ମନୋଭାବରେ ତେଣୁ ପୂର୍ବଚିନ୍ତା କିମ୍ବା ବିଶ୍ୱାସଘାତକତା ଥିବାର ମନେହେଉନାହିଁ । ଗଭର୍ଣ୍ଣର ଏହି ସବୁ ଉନ୍ମାର୍ଗଗାମୀ ବିଦ୍ରୋହୀଙ୍କୁ ନିଃସର୍ତ୍ତ କ୍ଷମା ପ୍ରଦାନ କରୁଛନ୍ତି । ତେବେ ସେମାନେ ସରକାରୀ ଆଦେଶକୁ ଅବଶ୍ୟ ମାନିବେ ବୋଲି ଆଶା କରାଯାଉଛି । ଏକମାତ୍ର ଗୁରୁ ସିଦ୍ଧପ୍ପା ଏହି କ୍ଷମା ପାଇବାର ହକ୍‌ଦାର ନୁହଁନ୍ତି । ତେବେ ତାଙ୍କୁ ମୃତ୍ୟୁଦଣ୍ଡରୁ ମୁକ୍ତି ଦିଆଯାଇଛି । ସେ ଯଥାଶୀଘ୍ର ଅସ୍ତ୍ର ତ୍ୟାଗକରି ସରକାରଙ୍କ ନିକଟରେ ଆତ୍ମ ସମର୍ପଣ କରିବେ ବୋଲି ଆଶା କରାଯାଏ ।

ଆଗାମୀ 20 ନଭେମ୍ବର ପୂର୍ବରୁ ଯେଉଁ ବିଦ୍ରୋହୀମାନେ ଆତ୍ମ ସମର୍ପଣ କରିବେ ସେମାନେ ନିଜର ପୁରସ୍କାର ତଥା ଦରମା ବଜାୟ ରଖିପାରିବେ ଏବଂ ସନନ୍ଦଧାରୀମାନଙ୍କ ସ୍ଥିତାବସ୍ଥାରେ କୌଣସି ପରିବର୍ତ୍ତନ ହେବ ନାହିଁ । ଯେଉଁ ଅନୁଚରମାନେ ବିଦ୍ରୋହରେ ଅଂଶ ଗ୍ରହଣ କରିନଥିବେ, ସେମାନେ ଭରଣ ପୋଷଣ ନିମନ୍ତେ ଅନୁରୋଧ ଜଣାଇଲେ, ତାହା ବିଚାରକୁ ନିଆଯିବ । ସ୍ୱର୍ଗୀୟ ଦେଶାଇଙ୍କର ବିଧବା ପତ୍ନୀଙ୍କୁ ଉପଯୁକ୍ତ ଭତ୍ତା ଦିଆଯିବ ଏବଂ ସରକାରୀ ଅନୁସନ୍ଧାନ ପରେ, ପରିବାରର ଅନ୍ୟ ନାରୀମାନଙ୍କ ସମ୍ପର୍କରେ ମଧ୍ୟ ଉଚିତ୍ ବ୍ୟବସ୍ଥା କରାଯିବ ।

ସ୍ୱର୍ଗୀୟ ଦେଶାଇଙ୍କ ବ୍ୟକ୍ତିଗତ ସମ୍ପତ୍ତି ତଥା ରାଜକୋଷକୁ ଏବେ ମଧ୍ୟ ତାଙ୍କ ବିଧବା ପତ୍ନୀଙ୍କ ବ୍ୟକ୍ତିଗତ ସମ୍ପତ୍ତି ରୂପେ ମନେକରାଯିବ । ସେଥିରୁ ଯାହା ବଞ୍ଚିଛି ଶୀଘ୍ର ତାଙ୍କୁ ଫେରାଇ ଦିଆଯିବ ।

କିତ୍ତୁରର ସମସ୍ତ ସର୍ଦ୍ଦାର ତଥା ସିପାହୀ ପୂର୍ବୋକ୍ତ ଦୁଇ ଭଦ୍ରଲୋକ ତଥା ଅନ୍ୟ ବନ୍ଦୀମାନଙ୍କ ନିରାପତ୍ତା ନିମନ୍ତେ ଦାୟୀ ରହିବେ । ଯଦି ସେମାନେ ଆହତ ହୁଅନ୍ତି, ତେବେ ସର୍ଦ୍ଦାର ତଥା ଅନ୍ୟ ସମସ୍ତ ଦୋଷୀଙ୍କୁ ଏଭଳି କଠୋର ଦଣ୍ଡ ଦିଆଯିବ ଯେ ଏଥିରେ ଭାବୀ ଅପରାଧୀମାନେ ଆତଙ୍କିତ ହୋଇପଡ଼ିବେ ।

କର୍ଣ୍ଣେଲ ପୀୟର୍ସଙ୍କୁ ସୂଚନା ଦିଆଯାଉ ଯେ ସେ ଘୋଷଣାପତ୍ର ଚାରିଆଡ଼େ ପ୍ରଚାର କରିଦିଅନ୍ତୁ ତଥା ପୂର୍ବସିଦ୍ଧାନ୍ତ ଅନୁସାରେ କାର୍ଯ୍ୟ କରିଯାଆନ୍ତୁ । କମିଶନରଙ୍କ ଦ୍ୱାରା ଜାଗିରିଦାର ତଥା କୋହ୍ଲାପୁର ରାଜାଙ୍କୁ ପତ୍ର ଲେଖାଯାଇ ଯାହାକିଛି ଘଟିଯାଇଛି, ସେସବୁ ତାଙ୍କୁ ଅବଗତ କରାଯାଉ । ତାଙ୍କୁ ସାବଧାନ କରାଇଦିଆଯାଉ ଯେ, ତାଙ୍କର ଆଶ୍ରିତମାନେ ଯେପରି ବିପ୍ଳବୀମାନଙ୍କ ସହିତ ଯୋଗାଯୋଗ ନରଖନ୍ତି । ଏଭଳି ଏକ ସୂଚନା ଡନ୍‌ଲପ୍‌ଙ୍କଦ୍ୱାରା 'ବାରୀ' ପ୍ରେରିତ ହେଉ । କମିଶନରଙ୍କ ପତ୍ରର ଏକ ମରାଠୀ ନକଲ ପୂର୍ବୋକ୍ତ ଭଦ୍ରବ୍ୟକ୍ତିଙ୍କ ସ୍ୱୀକୃତି ନିମନ୍ତେ ପଠାଯାଉ ।

ଚାପ୍‌ଲିନ୍ ପହଞ୍ଚିବା ପର୍ଯ୍ୟନ୍ତ ବିଦ୍ରୋହୀମାନଙ୍କ ସହ ସମସ୍ତ ସମ୍ପର୍କ ରକ୍ଷା ତଥା କିତ୍ତୁର ରାଜ୍ୟ ସମ୍ପର୍କୀୟ ବିଧିବ୍ୟବସ୍ଥା କର୍ଣ୍ଣେଲ ପୀୟର୍ସଙ୍କ ଉପରେ ଛାଡ଼ିଦିଆଯାଉ । ସେ ପର୍ଯ୍ୟନ୍ତ କୌଣସି ଉତ୍ତେଜନାପୂର୍ଣ୍ଣ କାର୍ଯ୍ୟ ନହେଉ ।

ଚାପ୍‌ଲିନ୍ ସମ୍ଭବତଃ 15 କିମ୍ବା 20 ତାରିଖ ବେଳକୁ ବେଲଗାଁଓ ଆସିଯିବେ ଏବଂ ସେତେବେଳେ

ସୁଦ୍ଧା ଯଦି ଆତ୍ମସମର୍ପଣ କରାଯାଇ ନଥାଏ, ତେବେ ପୀୟର୍ସଙ୍କୁ ନିର୍ଦ୍ଦେଶ ଦିଆଯାଉ ଯେ, କିତ୍ତୁରର ସୈନ୍ୟମାନେ ଯେପରି ପଳାଇ ନଯାନ୍ତି କିମ୍ବା ଜଙ୍ଗଲରେ ଆତ୍ମଗୋପନ ନକରନ୍ତି, ତାହା ସେ ଦେଖିବେ । ସମସ୍ତ ସୈନ୍ୟ ଏକତ୍ରିତ ନହେବା ପର୍ଯ୍ୟନ୍ତ ସେ ଆକ୍ରମଣ ବନ୍ଦ ରଖିବା ହିଁ ଉଚିତ ହେବ । ଏଥିରେ ପନ୍ଦର ଦିନ ବିଳମ୍ବ ହେଲେ ହେଉ । କାରଣ କେବଳ ମାତ୍ର ସଂଖ୍ୟା ଗରିଷ୍ଠ ଦୁର୍ବଳ ସୈନ୍ୟଙ୍କୁ ନେଇ ଯୁଦ୍ଧ ଆରମ୍ଭ କରିବାର କୌଣସି ଅର୍ଥ ହୁଏ ନାହିଁ ।

କମାଣ୍ଡର-ଇନ୍-ଚିଫ୍ ଏଥିପାଇଁ ଯେଉଁ ସୈନିକ ବ୍ୟବସ୍ଥା କରିଛନ୍ତି, ମୁଁ ତହିଁରେ ଏକମତ । ନିମ୍ନ ସାରଣୀରେ ସୂଚିତ ସୈନ୍ୟଦଳ କେଉଁଦିନ କେଉଁଠି ତାଙ୍କ ସହିତ ମିଳିତ ହେବେ, ତାହାର ଏକ ବିବରଣୀ ପ୍ରଦାନ କରାଯାଇଛି :

| କୋର | ପ୍ରସ୍ଥାନ ସ୍ଥାନ | ଆଗମନସ୍ଥାନ | ପହଞ୍ଚିବା ତାରିଖ |
|---|---|---|---|
| ୬ଷ୍ଠ ଦେଶୀୟ ପଦାତିକ ବାହିନୀ | ସତାରା | ବେଲଗାଁଓ | 24 ନଭେମ୍ବର |
| ହୋମ୍ ଆର୍ଟିଲରୀ | ପୁନେ | ବେଲ୍‌ଗାଁଓ | 24 ନଭେମ୍ବର |
| 7ମ ମି. ଲାଇଟ୍ କାଭଲ୍‌ରୀ | ଶୋଲାପୁର | ବେଲଗାଁଓ | 11 ନଭେମ୍ବର |
| 23ତମ ଏମ୍. ଏନ୍. ଆଇ. | | | |
| 50 ତୋପଖାନାର ଜୱାନ | ବମ୍ବେ | ବେଙ୍ଗୁରଲା | - |
| ପ୍ରଥମ ୟୁରୋପୀୟ ରେଜିମେଣ୍ଟ | | | |
| 3 ନେଟିଭ୍ ଇନ୍‌ଫାଣ୍ଟରୀ | - | - | - |
| 1 କମ୍ପାନୀ କିମ୍ବା ତୋପଖାନା | | | |
| 2 କମ୍ପାନୀ ହିଜମାଜେଷ୍ଟି | | | |
| 46 ତମ ରେଜିମେଣ୍ଟ | - | - | - |
| ପ୍ରଥମ ରେଜିମେଣ୍ଟ ନେଟିଭ୍ ଇନ୍‌ଫାଣ୍ଟ୍ରି | ବୈଲାରୀ | ବେଲଗାଁଓ | - |

ଯଦି ବମ୍ବେରୁ ପ୍ରାପ୍ତ ବିବରଣୀରୁ ବେଲଗାଁଓରେ ଅର୍ଡ଼ିନାନ୍ସ ତଥା ଷ୍ଟୋର୍‌ର ଅପ୍ରତୁଳତା ହୃଦୟଙ୍ଗମ କରାଯାଏ, ତେବେ ସେସବୁ ପ୍ରେସିଡ଼େନ୍‌ସିରୁ ଯୋଗାଇ ଦିଆଯାଉ ।

ଯାନବାହାନ ଠିକ କରିବା ଅନିଶ୍ଚିତ ହୋଇଥିବାରୁ ବୈଲାରୀ ତଥା ବମ୍ବେରୁ ସୈନ୍ୟ ପହଞ୍ଚିବାର ସଠିକ ତାରିଖ ବିଷୟରେ କୁହାଯାଇ ପାରୁନାହିଁ । ତେବେ ଉଭୟ ଦଳ ନଭେମ୍ବର ଶେଷ ସୁଦ୍ଧା ପହଞ୍ଚିଯିବାର ସମ୍ଭାବନା ରହିଛି ।

ସମୟ ବଡ଼ ମୂଲ୍ୟବାନ ହୋଇଥିବାରୁ ମୁଁ ପୂର୍ବୋକ୍ତ ଉପାୟ ଗ୍ରହଣ କରିନେବା ନିମନ୍ତେ କମିଶନରଙ୍କୁ ଅନୁରୋଧ କରୁଛି । ସୈନ୍ୟ ବ୍ୟବସ୍ଥା ନିମନ୍ତେ ମହାମହିମ କମାଣ୍ଡର -ଇନ୍-ଚିଫ୍ ଆବଶ୍ୟକ ଆଦେଶ ଜାରିକରିସାରିଛନ୍ତି ।

କର୍ଣ୍ଣେଲ୍ କେନେଡ଼ିଙ୍କୁ ମଧ୍ୟ ନିର୍ଦ୍ଦେଶ ଦିଆଯାଇଛି ଯେ, ସେ ନିଜର ଦୁଇଟି ରେଜିମେଣ୍ଟକୁ ନିଜ ଜିଲ୍ଲାର ଦକ୍ଷିଣରେ କୌଣସିଠାରେ ଶିବିର ପକାଇ ଅପେକ୍ଷା କରିବାର ବ୍ୟବସ୍ଥା କରନ୍ତୁ । ବିପ୍ଳବୀମାନେ

ବାରୀ ପ୍ରଦେଶ କିମ୍ବା ନିକଟବର୍ତ୍ତୀ କୌଣସି ଜଙ୍ଗଲରେ ଆତ୍ମଗୋପନ କଲେ, ସେମାନଙ୍କ ସାହାଯ୍ୟ ନିଆଯାଇ ପାରିବ ।

ଦୁଇଟି ରେଜିମେଣ୍ଟ କେନ୍ଦ୍ରୀୟ ସରକାର ନେଇଯାଇଥିବାରୁ, ତିନୋଟି ଦେଶୀ ରେଜିମେଣ୍ଟକୁ ମଉ ତଥା ଅସୀରଗଡ଼ ପଠାଇ ଦିଆଯାଇଥିବାରୁ ଏବଂ ଶୋଲାପୁର ନିମନ୍ତେ ଦକ୍ଷିଣୀ ମରାଠା ପ୍ରଦେଶରୁ ନିଆଯାଇଥିବା ଦୁଇଟି ରେଜିମେଣ୍ଟକୁ ମାନ୍ଦ୍ରାଜ ସରକାର ଫେରାଇ ନଥିବାରୁ ଦେଶର ଏହି ଅଞ୍ଚଳରେ ସୈନ୍ୟ ଅଭାବ ଜନିତ ଅସୁବିଧା ସୃଷ୍ଟି ହୋଇଛି ।

ସମ୍ଭବତଃ ଶୋଲାପୁରରେ ରଖାଯାଇଥିବା ବାଟାଲିୟନଙ୍କୁ ଶୀଘ୍ର ସତାରା ପଠାଇବା ଆବଶ୍ୟକ ହୋଇପାରେ । ଏହି ସ୍ଥାନରେ ସବୁବେଳେ ଦୁଇରୁ କମ୍ ବାଟାଲିୟନ ରହିବା ଉଚିତ୍ ନୁହେଁ ।

ଘୋଷିତ ସର୍ତ୍ତରେ ବିପ୍ଳବୀମାନେ ଆତ୍ମସମର୍ପଣ କରିବା ନିମନ୍ତେ ଯଦି ପ୍ରସ୍ତୁତ ନହୁଅନ୍ତି, ତେବେ ବମ୍ବେରୁ ଗୋଟିଏ ରେଜିମେଣ୍ଟ ଦକ୍ଷିଣକୁ ପଠାଇବା ଆବଶ୍ୟକ ଏବଂ ସେହିସ୍ଥାନରେ ପର୍ତ୍ତୁଗାଲୀ ସୈନ୍ୟ ଅବସ୍ଥାପିତ ହୁଅନ୍ତୁ । ମହାନୁଭବ ଗଭର୍ଣ୍ଣର ଯେଉଁ ଭାଷାରେ ଥାକ୍‌ରେଙ୍କ ଦୁଃଖଦ ମୃତ୍ୟୁର ସୂଚନା ଦେଇଥିଲେ ଠିକ୍ ସେହି ଭାଷାରେ ମାନ୍ଦ୍ରାଜ ସରକାରଙ୍କୁ ତାହା ଜଣାଇ ଦିଆଯାଉ । ଏଭଳି ତୀକ୍ଷ୍ଣ ବୁଦ୍ଧିଶାଳୀ, ଉତ୍ସାହୀ, ଜନସେବୀଙ୍କର ଅକାଳ ମୃତ୍ୟୁ ତାଙ୍କ ନିଜ ପ୍ରେସିଡେନ୍ସି ତଥା ଅନ୍ୟ ଯେଉଁଠାରେ ସେ କାମ କରିଥିଲେ ତାହାପାଇଁ ଏକ ଅପୂରଣୀୟ କ୍ଷତି ।

ବମ୍ବେ ଫେରିଆସି ଗଭର୍ଣ୍ଣର କମାଣ୍ଡର - ଇନ୍-ଚିଫ୍ ଆଲେକ୍‌ଜାଣ୍ଡର କାମ୍ପବେଲ୍‌ଙ୍କୁ ଅନୁରୋଧ କଲେ ଯେ, ପିୟର୍ସ ଯେତେ ସୈନ୍ୟ ଚାହୁଁଛନ୍ତି, ତାହା ତାଙ୍କୁ ଯୋଗାଇ ଦିଆଯାଉ । କିତ୍ତୁର ଅଂଚଳକୁ ସେନା ପ୍ରେରଣ ନିମନ୍ତେ ବେିଲାରୀ, ଗୁଟୀ, ବାଙ୍ଗାଲୋର ତଥା ଆର୍କଟକୁ ସମ୍ବାଦ ପ୍ରେରଣ କରାଯାଉ ସେ ଆହୁରି ମହୀଶୂରର ବ୍ରିଟିଶ୍ ରେସିଡେଣ୍ଟ କୋଲ୍‌ଙ୍କୁ ଶୀଘ୍ର ମହୀଶୂର ସେନାବାହିନୀର 1,000 ଘୋଡ଼ା କିତ୍ତୁର ପଠାଇବା ନିମନ୍ତେ ଅନୁରୋଧ ଜଣାଇବା ପାଇଁ ମୁଖ୍ୟ ସଚିବଙ୍କୁ ଖବର ପଠାଇଲେ । ହାଇଦ୍ରାବାଦର ବ୍ରିଟିଶ୍ ରେସିଡେଣ୍ଟଙ୍କୁ ନଭେମ୍ବର ପ୍ରଥମ ସପ୍ତାହରେ ଦଳେ ସୈନ୍ୟ ପଠାଇବା ନିମନ୍ତେ କୁହାଗଲା । ମାନ୍ଦ୍ରାଜ, ମାଲବାର ତଥା କନାରାର ସେନାଧକ୍ଷ ଲେ. କ. ବାଗଙ୍କୁ ମଧ୍ୟ ହେନାବର ଏବଂ ସଦାଶିବ ଗଡ଼କୁ ସୈନ୍ୟ ପ୍ରେରଣ ନିମନ୍ତେ ପତ୍ର ଲେଖାଗଲା । ପ୍ରୟୋଜନରେ ଏହାକୁ କିତ୍ତୁର ପଠାଯାଇପାରିବ । ଏହି ବ୍ୟବସ୍ଥା ମାଙ୍ଗାଲୋରର କଲେକ୍ଟର ଟି. ବେବିଂଟନ୍‌ଙ୍କ ସହାୟତାରେ କରାଯାଇଥିଲା ।

ଇତିମଧ୍ୟରେ ରାଣୀ ଚେନ୍ନମ୍ମା ତଥା ତାଙ୍କର ସମର୍ଥକମାନେ ବୁଝିଯାଇଥିଲେ ଯେ, ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ନିରର୍ଥକ । ତଥାପି ସେମାନେ ନିଜ ସିଦ୍ଧାନ୍ତରେ ଅଟଳ ରହିଲେ ତଥା ବିନା ପ୍ରତିଶ୍ରୁତିରେ ବନ୍ଦୀମାନଙ୍କୁ ହସ୍ତାନ୍ତର କରିବା ନିମନ୍ତେ ପ୍ରସ୍ତୁତ ନଥିଲେ । ଏଲଫିନ୍‌ଷ୍ଟୋନ୍‌ଙ୍କଠାରୁ ଉତ୍ତର ପାଇବା ପରେ ରାଣୀ ଚେନ୍ନମ୍ମା ନିଜ ଓକିଲ ଶୀନିବାସଙ୍କୁ ଧାରବାରର କାର୍ଯ୍ୟକାରୀ କଲେକ୍ଟର ମୁନ୍‌ରୋଙ୍କ ପାଖକୁ ପଠାଇଲେ । ରାଣୀଙ୍କ ସମସ୍ୟା ବୁଝାଇବା ନିମନ୍ତେ ସେ ପ୍ରେରିତ ହୋଇଥିଲେ । ପରଦିନ ସଦିଚ୍ଛାର ପ୍ରତୀକ ସ୍ୱରୂପ ସେ ଗତ ଯୁଦ୍ଧରେ ବନ୍ଦୀ କରିଥିବା ଚାଳିଶ ଜଣ ୟୁରୋପୀୟ ସୈନ୍ୟଙ୍କୁ ମୁକ୍ତି ଦେଲେ । ଏହି ସୈନ୍ୟମାନେ ଧାରବାର ଫେରିଯାଇ ଲେ. କ. ମାକ୍‌ଲଏଡ୍‌ଙ୍କ ସୈନ୍ୟଦଳରେ ପୁନର୍ବାର ସାମିଲ ହୋଇଗଲେ । ମୁନରୋ ନଭେମ୍ବର ସାତ ତାରିଖରେ ଚାପଲିନ୍‌ଙ୍କୁ ପତ୍ର ଲେଖି ସେଥିରେ ଷ୍ଟିଭେନ୍‌ସନ୍ ତଥା ଇଲିୟଟଙ୍କ ଦୟନୀୟ ଅବସ୍ଥା ସମ୍ପର୍କରେ ସୂଚନା ଦେଲେ । ତରବରିଆ ପଦକ୍ଷେପ ଗ୍ରହଣ ନକରି ବିବେକାନୁମୋଦିତ ପନ୍ଥାରେ କାର୍ଯ୍ୟ କରିବା ନିମନ୍ତେ

ସେ ତାଙ୍କୁ ଅନୁରୋଧ ଜଣାଇଲେ ।

ଇତିମଧ୍ୟରେ ଚାପ୍‌ଲିନ୍ ଇଡନ୍‌ଙ୍କୁ ପରାମର୍ଶ ଦେଲେ ଯେ ସେ ଯଥାସମ୍ଭବ ଅଧିକରୁ ଅଧିକ ଦେଖାଇ କିମ୍ବା ସେମାନଙ୍କର ପ୍ରତିନିଧିଙ୍କୁ ନିମନ୍ତ୍ରଣ କରନ୍ତୁ । କିତ୍ତୁର ବିଦ୍ରୋହକୁ ଦମନ କରିବା ନିମନ୍ତେ ସେମାନଙ୍କଠାରୁ ସାହାଯ୍ୟ ପ୍ରାର୍ଥନା କରାଯାଉ । ସେ ପୁଣି ମୁନରୋଙ୍କୁ ପରାମର୍ଶ ଦେଲେ ଯେ, କିତ୍ତୁର ନେତାମାନଙ୍କୁ ଡାକି ସେ ଆତ୍ମ ସମର୍ପଣ ନିମନ୍ତେ ସେମାନଙ୍କୁ ରାଜି କରାନ୍ତୁ

ମନ୍‌ରୋ ନଭେମ୍ବର ସାତ ତାରିଖରେ ରାଣୀ ଚେନ୍ନମ୍ମାଙ୍କ ପତ୍ରର ଉତ୍ତର ଦେଇ ତାଙ୍କୁ ଜଣାଇ ଦେଲେ ଯେ ଉଭୟ ଅଧିକାରୀଙ୍କୁ ମୁକ୍ତିଦେବା ହିଁ ତାଙ୍କ ପକ୍ଷରେ ବୁଦ୍ଧିମତ୍ତାର କାର୍ଯ୍ୟ ହେବ । ସେ ଲେଖିଲେ,'' ଆପଣଙ୍କର ପତ୍ର ମିଳିଛି ଏବଂ ସେଥିରୁ ଆପଣଙ୍କ ଆଶୟ ବୁଝାଯାଇଛି । ଆପଣ ଉଲ୍ଲେଖ କରିଛନ୍ତି ଯେ, ଆପଣ ମନମୋଟିଆ ଭାବରେ କାର୍ଯ୍ୟ କରିବାକୁ ଚାହାନ୍ତି ନାହିଁ । ମାତ୍ର ଦୁଇ ଜଣ ମୁଖ୍ୟ ପଦାଧିକାରୀଙ୍କୁ ଦୁର୍ଗରେ ବନ୍ଦୀ କରି ରଖିବାଦ୍ୱାରା ଆପଣଙ୍କ ଅପରାଧ ଦିନକୁ ଦିନ ବୃଦ୍ଧି ପାଉଛି । ଏମାନଙ୍କୁ ନଜରବନ୍ଦୀ କରି ରଖିବାଦ୍ୱାରା ଆପଣଙ୍କର କ'ଣ ଲାଭ ହେଉଛି, ତାହା ଆପଣ ଜାଣନ୍ତି । ମାତ୍ର ଏହାଦ୍ୱାରା ସରକାରଙ୍କ ପ୍ରତି ଅସମ୍ମାନ ପ୍ରଦର୍ଶନ କରାଯାଉଛି । ଉଭୟ ବନ୍ଦୀ କିତ୍ତୁରର ଅତୀତ ଘଟଣା ସହିତ ଘନିଷ୍ଠ ଭାବରେ ପରିଚିତ । ସେମାନଙ୍କୁ ଛାଡ଼ିଦେଲେ ସରକାର ସେସବୁ ଘଟଣା ଭଲଭାବରେ ଜାଣିପାରିବେ । ହୋଇପାରେ ସେମାନେ ଆପଣଙ୍କ ତରଫରୁ ଓକିଲାତି କରିପାରନ୍ତି । ତେଣୁ ସେମାନଙ୍କର ମୁକ୍ତି ହେଉଛି ବର୍ତ୍ତମାନ ଏକମାତ୍ର ସାଧନ, ଯାହାଦ୍ୱାରା ଆପଣ ସରକାରଙ୍କଠାରୁ ଉଦାରତା ଆଶା କରିପାରନ୍ତି । ଏଣୁ ମୋର ଆନ୍ତରିକ ଅନୁରୋଧ, ଉଭୟଙ୍କୁ ଶୀଘ୍ର ଏଠାକୁ ପଠାଇ ଦିଅନ୍ତୁ । କିତ୍ତୁରର ଗତିବିଧି ଏବଂ ଆପଣଙ୍କ ଉଦ୍ଦେଶ୍ୟ ସରକାରଙ୍କୁ ଜଣାଇବା ନିମନ୍ତେ ଆପଣଙ୍କ ପ୍ରତିନିଧି ମୋ ସହିତ ସାକ୍ଷାତ୍ କରନ୍ତୁ । ପାରସ୍ପରିକ ବୁଝାମଣା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଏବଂ ମହତ୍ତ୍ୱ ନଥିବା ବ୍ୟକ୍ତିଙ୍କଦ୍ୱାରା ଏହା ସାଧିତ ହୋଇନପାରେ, ଆପଣ ଆପଣଙ୍କର ତିନି କିମ୍ବା ଚାରି ଜଣ ପ୍ରତିନିଧିଙ୍କୁ ମୋ ପାଖକୁ ପଠାଇପାରନ୍ତି । ସେମାନଙ୍କଠାରୁ ମୁଁ ସାମ୍ପ୍ରତିକ ସ୍ଥିତି ସମ୍ପର୍କରେ ଜାଣିପାରିବି । ଯଦି ସେମାନଙ୍କ ଦ୍ୱାରା ଯଦି ସମସ୍ୟାର ସମାଧାନ ହୋଇନପାରିଲା, ତେବେ ସେମାନଙ୍କୁ ନିର୍ବିଘ୍ନରେ ଫେରାଇ ଦିଆଯିବ । ଅପଣ ଜାଣନ୍ତି, ସେମାନଙ୍କ ନିରାପତ୍ତା ବିଘ୍ନିତ ହେବ ନାହିଁ । ଏହାଛଡ଼ା ଆଉ ଅଧିକ କ'ଣ ଲେଖିବି ?

ରାଣୀ ଚେନ୍ନମ୍ମା ତଥା ରାଣୀ ବୀରମ୍ମା ନଭେମ୍ବର ବାର ତାରିଖ 1824 ରେ ଉତ୍ତର ପଠାଇଲେ । ଏହି ପତ୍ର ଉଭୟଙ୍କର ଅଦମ୍ୟ ଶୌର୍ଯ୍ୟ ତଥା ଗଭୀର ଆତ୍ମସମ୍ମାନବୋଧର ଏକ ସୁନ୍ଦର ଦୃଷ୍ଟାନ୍ତ । ଏଥିରେ କୂଟନୈତିକ ସୌହାର୍ଦ୍ଦ୍ୟ ତଥା ବିନମ୍ରତାର ଅଭାବ ମଧ୍ୟ ନାହିଁ । ପତ୍ରର ସାରାଂଶ :

ଆପଣଙ୍କ ପତ୍ରରୁ ଏହାର ତାତ୍ପର୍ଯ୍ୟ ବୁଝିପାରିଲୁ । ଆପଣ ଲେଖିଛନ୍ତି ଯେ, ପୂର୍ବୋକ୍ତ ଦୁଇ ପଦାଧିକାରୀଙ୍କୁ ବନ୍ଦୀ କରି ରଖିବାଦ୍ୱାରା ଆମର କୌଣସି ଲାଭ ହେଉନାହିଁ ଏବଂ ଏଥିରୁ ସରକାରଙ୍କ ପ୍ରତି ବୈରତା ପ୍ରକଟିତ ହେଉଛି । ଏହାର ଉତ୍ତରରେ ଆମର ବକ୍ତବ୍ୟ ହେଉଛି ଯେ, ରାଜ୍ୟ ପାଇଁ ସେମାନଙ୍କୁ ବନ୍ଦୀକରି ରଖିବା ଏକାନ୍ତ ଉପଯୋଗୀ । ସେମାନଙ୍କ ମାଧ୍ୟମରେ ତଥା ସରକାରଙ୍କୁ ପଠାଯାଉଥିବା ସେବାନଙ୍କ ବୟାନରେ, ଆମେ ଚାହୁଁଛୁ, ରାଜ୍ୟର ପ୍ରାଚୀନ ପରମ୍ପରାନୁସାରେ ରାଜ୍ୟକୁ ଜାରିରଖିବାର ବ୍ୟବସ୍ଥା କରାଯାଉ । ସେଇ ଆଶାରେ ସେମାନଙ୍କୁ ଅଟକାଇ ରଖିଛୁ । ଉଭୟ ଦୟାଳୁ ମହାନୁଭବଙ୍କୁ ମାମଲାର ସମସ୍ତ ପରିସ୍ଥିତି ଜଣାଅଛି । ଥାକ୍‌ରେ ଏମାନଙ୍କୁ ରାଜକାର୍ଯ୍ୟ ଚଳାଇବା ନିମନ୍ତେ ନିଜର ଏଜେଣ୍ଟ ରୂପେ ନିଯୁକ୍ତ କରିଥିଲେ ।

ଉଭୟଙ୍କୁ ବନ୍ଦୀ କରି ରଖିବାଦ୍ୱାରା ସରକାରଙ୍କୁ ଅପମାନିତ କରାଯାଉଛି । ଆପଣଙ୍କର ଏହି ଅଭିଯୋଗର ଉତ୍ତରରେ ଆମର ବକ୍ତବ୍ୟ ହେଉଛି ଯେ, ଆମେ କେବେ ଏଭଳି ଚାହିଁ ନାହୁଁ । ଅନ୍ୟଥା ଆମେ ଏତେ ଦିନ ଧରି ବ୍ରିଟିଶ ସରକାରଙ୍କ ବନ୍ଧୁ ହୋଇ ରହିପାରିନଥାନ୍ତୁ । ଏଥି ପାଇଁ ଆମେ ଏ ପର୍ଯ୍ୟନ୍ତ ଥାକ୍‌ରେଙ୍କ ଇଚ୍ଛାନୁରୂପ କାର୍ଯ୍ୟ କଲୁ । ତାହା ସତ୍ତ୍ୱେ ସେ ଆମକୁ ଏଭଳି ଦୟନୀୟ ସ୍ଥିତିରେ ପହଞ୍ଚାଇ ଦେଲେ । ଏହାର ପ୍ରତିକାର ଆମେ କିଭଳି କରିପାରିଥାନ୍ତୁ ?

ପ୍ରତିନିଧି ପଠାଇବା ନିମନ୍ତେ ଆପଣ ଅନୁରୋଧ କରିଛନ୍ତି । ଏ ସମ୍ପର୍କରେ ଆମର ବକ୍ତବ୍ୟ ହେଉଛି ଯେ, ସମସ୍ତ ବିଷୟରେ ନିଷ୍ପତ୍ତିର ଦାୟିତ୍ୱ ଆପଣଙ୍କର । ପତ୍ରଦ୍ୱାରା ଆମେ ଆପଣଙ୍କୁ ଏଠାକାର ପରିସ୍ଥିତି ବିସ୍ତୃତ ଭାବରେ ବୁଝାଇ ଦେଇଛୁଁ । ଅବଶ୍ୟ ପ୍ରତିନିଧିମାନଙ୍କ ନିରାପତ୍ତା ବିଷୟରେ ଆମର କୌଣସି ସନ୍ଦେହ ନାହିଁ । ରାଜ୍ୟ ପୂର୍ବ ଭଳି ରହିବ, ଯଦି ଆପଣ ଏ ପ୍ରତିଶ୍ରୁତି ଆମକୁ ଦିଅନ୍ତି, ତେବେ ଆମ ପ୍ରତିନିଧି ଆପଣଙ୍କ ନିକଟରେ ହାଜିର ହୋଇଯିବେ । ରାଜ୍ୟ ପ୍ରତି ଆପଣଙ୍କ ପୂର୍ବର ଶୁଭଚିନ୍ତା ସର୍ବଦା ରହିଥାଉ । ଏହା ବ୍ୟତୀତ ଆଉ କ'ଣ ଲେଖିବୁଁ ? ଆପଣ ଆମକୁ ଏହି ସ୍ଥିତିରେ ପକାଇଦେଇଛନ୍ତି । ଆମେ ଆଶା କରୁଛୁ ଆପଣ ସରକାରଙ୍କୁ ତାହାହିଁ ପ୍ରାର୍ଥନା କରିବେ, ଯାହା ରାଜ୍ୟ ନିମନ୍ତେ ଶୁଭପ୍ରଦ ହେବ । ଏ ବିଷୟରେ ଆମର କୌଣସି ସନ୍ଦେହ ନାହିଁ । ଅନ୍ୟ ସମ୍ବାଦ ଗୋବିନ୍ଦ ଶ୍ରୀନିବାସ ନିଜେ ଆପଣଙ୍କୁ ଦେବେ ।''

ନଭେମ୍ବର 14 ତାରିଖ (1824) ରେ କାର୍ଯ୍ୟବାହୀ କଲେକ୍ଟର ମୁନ୍‌ରୋ ନିଜ ମନ୍ତବ୍ୟ ସହିତ ଏହାକୁ ଚାପ୍‌ଲିନ୍‌ଙ୍କ ନିକଟକୁ ପଠାଇଦେଲେ । ସେ ଲେଖିଲେ, ''ପତ୍ରରେ ପ୍ରଦର୍ଶିତ ମନୋଭାବ ନିମନ୍ତେ ମୋର ଦୁଃଖ ହେଉଛି । ତଥାପି ମୋର ଆଶା, ସେନା କିତ୍ତୁର ପହଞ୍ଚିଗଲେ ପ୍ରବନ୍ଧକମାନଙ୍କର କ୍ରୋଧ ଶାନ୍ତ ହୋଇଯିବ । ସଂଲଗ୍ନ ପତ୍ରରେ ଭୂତପୂର୍ବ ଦୁଃଖଦ ଘଟଣାରେ ସର୍ଦ୍ଦାରମାନଙ୍କର ମନୋଭାବ ସଂପର୍କରେ ଉଲ୍ଲିଖିତ ହୋଇଛି । ଏମାନେ ଆଜ୍ଞାବହ ହୋଇ ରହିବେ, ଏହା ଅବଶ୍ୟ ଆଶା କରାଯାଉନାହିଁ । ତେବେ ଯେଉଁ କାରଣରୁ ଚାରି ଜଣ ପ୍ରତିଶ୍ରୁତିସମ୍ପନ୍ନ ପଦସ୍ଥ କର୍ମଚାରୀଙ୍କୁ ହରାଇବାକୁ ପଡ଼ିଲା, ଏଭଳି ଘଟଣା ସରକାର କେବେ ଭୁଲିବେ ନାହିଁ । ଏହା ସେମାନେ ଜାଣିପାରିବେ । ଓକିଲଙ୍କ ସହିତ ମୋର କୌଣସି କଥାବାର୍ତ୍ତା ହୋଇନାହିଁ । ସେ କହିଲେ ଯେ ତାଙ୍କର ବକ୍ତବ୍ୟ ପତ୍ରରେ ଲେଖାଯାଇଛି । ସେ ଯେଉଁ ପତ୍ର ଆଣିଥିଲେ, ମୁଁ ତା'ର ଉତ୍ତର ଦେଇନାହିଁ । ବିଦ୍ରୋହୀମାନଙ୍କ ଯୁକ୍ତିତର୍କର ଉତ୍ତର ଦେବା ନିମନ୍ତେ ଆମ ପାଖରେ ଆଉ କିଛି ଉପାଦାନ ନାହିଁ । ତେଣୁ ବର୍ତ୍ତମାନ ଅବସ୍ଥାରେ ଏହି ଆଲୋଚନାର କୌଣସି ଅର୍ଥ ହେଉନାହିଁ । ଅନ୍ତତଃ ଏଥିରୁ ଏହା ହିଁ ଜଣାଯାଉଛି ।

ଚାପ୍‌ଲିନ୍ ଏହି ପତ୍ର ପାଇ ଅତ୍ୟନ୍ତ ଅସନ୍ତୁଷ୍ଟ ହେଲେ । ସେ ସ୍ୱୟଂ ବମ୍ବେ ଯାଇ ଏଲ୍‌ଫିନ୍‌ଷ୍ଟୋନ୍‌ଙ୍କ ସହିତ ପରାମର୍ଶ କଲେ । ବେଲଗାଁଓ ପ୍ରତ୍ୟାବର୍ତ୍ତନ କରି ନିକଟରୁ ପରିସ୍ଥିତି ଅନୁଧ୍ୟାନ କରିବା ନିମନ୍ତେ ଗଭର୍ଣ୍ଣର ତାଙ୍କୁ ପରାମର୍ଶ ଦେଲେ । ବିଦ୍ରୋହୀମାନଙ୍କୁ ଦମନ କରିବାନିମନ୍ତେ ଯାହା କରିବାର କଥା ସେ କରନ୍ତୁ ବୋଲି ମଧ୍ୟ ଅନୁମତି ଦେଲେ । ସେମାନେ ଏହି ସିଦ୍ଧାନ୍ତରେ ଏକମତ ହେଲେ ଯେ, ବ୍ରିଟିଶ୍ ସୈନ୍ୟ ସମ୍ପୂର୍ଣ୍ଣ ପ୍ରସ୍ତୁତି ହୋଇଯିବା ପରେ କିତ୍ତୁରକୁ ଚାରିଆଡୁ ଘେରିନିଆଯିବ । ଇତିମଧ୍ୟରେ ଦକ୍ଷିଣାଞ୍ଚଳର ସମସ୍ତ ସାମନ୍ତଙ୍କୁ ଜଣାଇ ଦିଆଯିବ ଯେ, କିତ୍ତୁର ଦେଶାଇଙ୍କ ମୃତ୍ୟୁ ପରେ ରାଜ୍ୟକୁ ବ୍ରିଟିଶ୍ ଅଂଚଳରେ ମିଶାଇ ଦିଆଯାଇଛି । କାରଣ ଏହି ରାଜ୍ୟର କୌଣସି ନ୍ୟାୟୋଚିତ ଉତ୍ତରାଧିକାରୀ ନାହାନ୍ତି । ପୂର୍ବ ନିଷ୍ପତ୍ତି ଅନୁସାରେ ଚାପ୍‌ଲିନ୍‌ଙ୍କୁ ପରାମର୍ଶ ଦିଆଗଲା ଯେ, କେବଳ ମାତ୍ର ଗୁରୁ ସିଦ୍ଧପ୍ପାଙ୍କୁ ଛାଡ଼ି ଅନ୍ୟ ସମସ୍ତ ବିଦ୍ରୋହୀଙ୍କର କ୍ଷମାଦାନ ବିଷୟ ସେ ଘୋଷଣା କରିଦିଅନ୍ତୁ ।

ଏହି ସିଦ୍ଧାନ୍ତ ଅନୁସାରେ ଚାରିଆଡ଼ୁ କିତ୍ତୁରକୁ ସୈନ୍ୟ ପ୍ରେରଣର ପ୍ରୟୋଜନ ଥିଲା । ନଭେମ୍ବର ସତର ତାରିଖ (1824) ରେ ଚାପ୍‌ଲିନ୍ ବମ୍ବେ ତଥା ପୁନେରେ ଉପଲବ୍ଧ ବ୍ରିଟିଶ୍ ସୈନ୍ୟବାହିନୀ ଏବଂ ନିକଟବର୍ତ୍ତୀ ଅଧୀନସ୍ଥ ଜାଗୀରଦାରମାନଙ୍କର ସୈନ୍ୟ ସହ ବେଲଗାଁଓ ଯାତ୍ରା କଲେ ।

ନଭେମ୍ବର ତୃତୀୟ ସପ୍ତାହ ବେଳକୁ ବ୍ରିଟିଶ୍ ସୈନ୍ୟ ଅଗ୍ରସର ହେଉଥିବା ସମ୍ବାଦ ରାଣୀ ଚେନମ୍ମାଙ୍କ ଲୋକମାନେ ପାଇସାରିଥିଲେ । ଗୋଟିଏ ବିଧ୍ୱଂସକ ଗାଡ଼ି କିତ୍ତୁର ଦୁର୍ଗକୁ ଉଡ଼ାଇ ଦେବା ନିମନ୍ତେ ବେଙ୍ଗୁରଲାରୁ ଅଣାଯାଉଛି ବୋଲି ମଧ୍ୟ ସେମାନେ ଶୁଣିଲେ । ଚାରିଆଡ଼େ ନୈରାଶ୍ୟର ବାତାବରଣ ସୃଷ୍ଟି ହୋଇଥିଲା । କିଲ୍ଲା ରକ୍ଷା ନିମନ୍ତେ ସେମାନେ ମଧ୍ୟ କ୍ରୋଧୋନ୍ମତ ହୋଇ ସୈନ୍ୟ ସଂଗ୍ରହରେ ଲାଗିପଡ଼ିଲେ ।

ସେହି ସମୟରେ କୋହ୍ଲାପୁରର ରାଜା କିତ୍ତୁର-ରାଣୀଙ୍କୁ ସାହାଯ୍ୟ କରିବା ବିଷୟରେ ଚିନ୍ତା କରୁଥିଲେ । ରାଜା ଥିଲେ ଅତ୍ୟନ୍ତ ଦୂରଦର୍ଶୀ । ବମ୍ବେରୁ ବେଲଗାଁଓ ଗଲାବେଳେ ଚାପ୍‌ଲିନ୍ ଯେତେବେଳେ କୋହ୍ଲାପୁର ନିକଟ ଦେଇ ଯାଉଥିଲେ, ରାଜା ସେତେବେଳେ ତାଙ୍କ ସହିତ ସାକ୍ଷାତ୍ କଲେ ନାହିଁ । କହିପଠାଇଲେ ଯେ ଅସୁସ୍ଥ ଅଛନ୍ତି । ମାତ୍ର କମିଶନରଙ୍କ ସହିତ ସାକ୍ଷାତ୍ କରିବା ନିମନ୍ତେ, ତଥା ତାଙ୍କର ସେବା ନିମନ୍ତେ ସେ ନିଜ କର୍ମଚାରୀମାନଙ୍କୁ ପଠାଇଦେଲେ । ଏହାର ପ୍ରକୃତ କାରଣ ଥିଲାଯେ, ସେ ପରେ ଚାପ୍‌ଲିନ୍‌ଙ୍କ ସହିତ ଯୋଗଦେବା ବାହାନାରେ ଯଥା ସମୟରେ କିତ୍ତୁର ନିକଟରେ ପହଞ୍ଚିଯିବାକୁ ଚାହୁଁଥିଲେ । ଅନୁକୂଳ ପରିସ୍ଥିତିରେ କିତ୍ତୁରର ବିଦ୍ରୋହୀମାନଙ୍କ ସହିତ ମିଶି ଇଂରେଜମାନଙ୍କୁ ପରାସ୍ତ କରିଦେବାର ଏକ ଗୋପନ କାମନା ତାଙ୍କର ରହିଥିଲା । ଚାପ୍‌ଲିନ୍ କୋହ୍ଲାପୁର ଛାଡ଼ିବାମାତ୍ରେ ରାଜା 5,000 ପଦାତିକ, 1,000 ଅଶ୍ୱାରୋହୀ ଏବଂ ସାତଟି ତୋପ ନେଇ ଯାତ୍ରା ଆରମ୍ଭ କଲେ । କିଛି ବାଟ ଯାଇ ସେ ଯମକଣମରଡୀଠାରେ ଶିବିର ସ୍ଥାପନ କଲେ । ସେହିଠାରୁ ସେ ଚାପ୍‌ଲିନ୍‌ଙ୍କୁ ସମ୍ବାଦ ପଠାଇ ଜଣାଇ ଦେଲେ ଯେ, ସେ ତାଙ୍କ ସହିତ ସାକ୍ଷାତ୍ କରିବା ନିମନ୍ତେ ଆସିଛନ୍ତି । ମାତ୍ର ତୀକ୍ଷ୍ଣବୁଦ୍ଧି ରାଜାଙ୍କର ଏହି ପ୍ରତାରଣାରେ ଭୁଲିଲେ ନାହିଁ । ସେ ଖବର ପଠାଇଲେ ଯେ, ବର୍ତ୍ତମାନ ତାଙ୍କ ସହିତ ସାକ୍ଷାତ୍ କରିବାକୁ ଚାପ୍‌ଲିନ୍‌ଙ୍କର ସମୟ ନାହିଁ କିମ୍ବା ରାଜାଙ୍କର ଆସିବାର ଆବଶ୍ୟକତା ମଧ୍ୟ ନାହିଁ । ଏହା ପରେ ରାଜା ନିଜର ସେନା ସହିତ ମନୋଲୀଆଡ଼କୁ ଅଗ୍ରସର ହେଲେ ଏବଂ ସେଠାରେ ଶିବିର ପକାଇ ପିରସ୍ଥିତି ଲକ୍ଷ୍ୟ କରିବାକୁ ଲାଗିଲେ ।

ଚାପ୍‌ଲିନ୍ କେତେକ ସ୍ଥାନରେ ଅଟକି ଦକ୍ଷିଣାଞ୍ଚଳର କେତେକ ଅନୁଗତ ସାମନ୍ତଙ୍କ ସହିତ ଯୋଗାଯୋଗ କଲେ । ସେମାନଙ୍କଠାରୁ ସଂଗୃହୀତ ସୈନ୍ୟକୁ ଏକତ୍ର କରି ସେ ବେଲଗାଁଓ ଯାତ୍ରା କଲେ । ସାଙ୍ଗଲୀର ପଟ୍ଟବର୍ଦ୍ଧନ, ଜମଖଣ୍ଡିର ସାମନ୍ତ, ମୁଧୋଳର ଜାଗିରଦାର ତଥା ଅନ୍ୟ କେତେକ ଜମିଦାର ଏମାନଙ୍କର ଅନ୍ତର୍ଭୁକ୍ତ । ଚାପ୍‌ଲିନ୍ ବାଇଶ ନଭେମ୍ବର ଦିନ ବେଲଗାଁଓ ପହଞ୍ଚିଲେ ।

କ୍ଷମାଦାନ ନିମନ୍ତେ ବିପ୍ଳବୀମାନଙ୍କର ଯେଉଁ ତାଲିକା ପ୍ରସ୍ତୁତ ହୋଇଥିଲା, ତହିଁରେ ଆବଶ୍ୟକୀୟ ପରିବର୍ତ୍ତନ କରିବାର କ୍ଷମତା ଗଭର୍ଣ୍ଣର ଚାପ୍‌ଲିନ୍‌ଙ୍କୁ ଦେଇଥିଲେ । ପ୍ରୟୋଜନ ବୋଧରେ ସାମରିକ ଆଇନ୍ ଜାରିକରିବାର କ୍ଷମତା ମଧ୍ୟ ତାଙ୍କୁ ଅର୍ପିତ ହୋଇଥିଲା । ନଭେମ୍ବର ବାଇଶ ତାରିଖରେ ସଚିବ ନ୍ୟୁହମ ଚାପ୍‌ଲିନ୍‌ଙ୍କୁ ଗଭର୍ଣ୍ଣରଙ୍କ ଆଦେଶ ଜଣାଇ ଦେଇଥିଲେ । ପତ୍ରଟି ନିମ୍ନଭଳି :

> ବର୍ତ୍ତମାନ କିତ୍ତୁର ସମ୍ପର୍କରେ ଆପଣଙ୍କ ପଦକ୍ଷେପକୁ ଆଇନାନୁମୋଦିତ କରିବା ନିମନ୍ତେ ଗଭର୍ଣ୍ଣରଙ୍କ ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ । ଆପଣଙ୍କୁ ଜଣାଇ ଦେବା ନିମନ୍ତେ ମୋତେ ନିର୍ଦ୍ଦେଶ ଦିଆଯାଇଛି ଯେ, ବିଦ୍ରୋହୀମାନଙ୍କର ଗତିବିଧି ଏବଂ ଆଚରଣ ସମ୍ପର୍କରେ ଆପଣ ସମ୍ବାଦ

ପାଇବା ପରେ ସେମାନଙ୍କ ସମ୍ପର୍କୀୟ ସରକାରୀ ସିଦ୍ଧାନ୍ତର କିଛି କିଛି ପରିବର୍ତ୍ତନ ପ୍ରୟୋଜନ ହୋଇପାରେ । ଅତଏବ ଗଭର୍ଣ୍ଣର ଏହିଭଳି ସମୀଚୀନ ପରିବର୍ତ୍ତନ ନିମନ୍ତେ ଆପଣଙ୍କୁ କ୍ଷମତା ଦେଉଛନ୍ତି, କିନ୍ତୁ ଆପଣ ଏହି ମନ୍ତବ୍ୟର ଅନୁରୂପ କାର୍ଯ୍ୟପନ୍ଥା ଗ୍ରହଣ କରିବେ । ଆପଣଙ୍କ ହାତମୁଠା ଟାଣ କରିବା ନିମନ୍ତେ ଗଭର୍ଣ୍ଣର ଏହା ମଧ୍ୟ ଆଦେଶ ଦେଉଛନ୍ତି ଯେ, ପ୍ରୟୋଜନ ହେଲେ ଆପଣ ଦକ୍ଷିଣୀମରାଠା ଅଞ୍ଚଳରେ ସାମରିକ ଆଇନ୍ ଜାରି କରିପାରନ୍ତି । ଆପଣଙ୍କ ସୂଚନା ନିମନ୍ତେ ତଥା ଏହି ବ୍ୟାପାରରେ ଦିଗ୍‌ଦର୍ଶନ ଦେବା ନିମନ୍ତେ ସେ ମୋତେ ରେଗୁଲେସନ୍ ଏ.ଡି. 1820 ର ଗୋଟିଏ ନକଲ ଆପଣଙ୍କୁ ପଠାଇବା ନିମନ୍ତେ ନିର୍ଦ୍ଦେଶ ଦେଇଛନ୍ତି । ଏହି ରେଗୁଲେସନ୍ ଆମ ଶାସନାଧୀନ ପ୍ରାଚୀନ ରାଜ୍ୟାଞ୍ଚଳ ସମ୍ପର୍କରେ ଲାଗୁହୁଏ ।

ବିଚାର ଆଲୋଚନା ଚାଲିଥିବା ବେଳେ ଇଂରେଜମାନେ ଯୁଦ୍ଧ ନିମନ୍ତେ ପ୍ରସ୍ତୁତିରେ ହେଳା କଲେ ନାହିଁ । ଅବଶ୍ୟ ଗଣ୍ଡଗୋଳ ଅଚିରେ ବନ୍ଦ ହୋଇଯିବ ବୋଲି ଗୋପନରେ ବିଶ୍ୱାସ କରାଯାଉଥିଲା । କର୍ଣ୍ଣେଲ ମାକଲଏଡ୍‌ଙ୍କ ଅଧୀନସ୍ଥ ବ୍ରିଟିଶ୍ ସୈନ୍ୟଦଳ ଧାରବାରରୁ ଯାତ୍ରା କରି ତାଡ୍‌କୋଡ୍‌ଠାରେ ପହଞ୍ଚି ସେଠାରେ ଶିବିର ସ୍ଥାପନ କଲେ । ଏହା କିତ୍ତୁରର ପୂର୍ବ ଦିଗରେ ସାତ ମାଇଲ ଦୂରବର୍ତ୍ତୀ ଗୋଟିଏ ଗ୍ରାମ ମାତ୍ର । କର୍ଣ୍ଣେଲ୍ ପାୟର୍ସ କିତ୍ତୁର ଦୁର୍ଗର ଦୃଢ଼ତା ସମ୍ପର୍କରେ ଭଲ ଭାବରେ ଜାଣିଥିଲେ । ଦୁର୍ଗ ଭାଙ୍ଗିବାକୁ ବିଧ୍ୱଂସକ ଗାଡ଼ିର ପ୍ରୟୋଜନ ହେବ ବୋଲି ମଧ୍ୟ ତାଙ୍କୁ ଜଣାଥିଲା । ଏଣୁ ସେ ମାଡ୍ରାଜ ରେଜିମେଣ୍ଟର ଭାରପ୍ରାପ୍ତ ବ୍ୟକ୍ତି କର୍ଣ୍ଣେଲ୍ ସୀଲିଙ୍କୁ ବିଧ୍ୱଂସକ ଗାଡ଼ି କିତ୍ତୁର ପ୍ରେରଣ ନିମନ୍ତେ ବ୍ୟବସ୍ଥା କରିବାକୁ ଆଦେଶ ଦେଲେ । ଇତିମଧ୍ୟରେ ପାୟର୍ସ ଗୁରୁତର ଅସୁସ୍ଥ ହୋଇପଡ଼ିଲେ । ତାଙ୍କ ସ୍ଥାନରେ ଶୋଲାପୁରସ୍ଥିତ କର୍ଣ୍ଣେଲ ଡ଼େକେନ୍‌ଙ୍କୁ ନିଯୁକ୍ତ କରାଗଲା । କର୍ଣ୍ଣେଲ ସୀଲି ଚବିଶ ତାରିଖରେ ବେଲଗାଉଁ ଆସି ପଶ୍ଚିମଘାଟ ପର୍ବତରେ ବିଧ୍ୱଂସକ ଗାଡ଼ିକୁ ଟାଣି କିତ୍ତୁର ପର୍ଯ୍ୟନ୍ତ ପହଞ୍ଚାଇଦେବା ନିମନ୍ତେ ପର୍ଯ୍ୟାପ୍ତ ପରିମାଣର ବଳଦ ନେଇ ସେଇଦିନ ଫେରିଗଲେ । ଚାପ୍‌ଲିନ୍‌ଙ୍କ ଶିବିର ବେଲଗାଁଓରେ ଥିଲା । ସେ ନଭେମ୍ବର ଚବିଶ ତାରିଖ (1824) ରେ ପରିସ୍ଥିତି ସମ୍ପର୍କରେ ନ୍ୟୁହମ୍‌କୁ ପତ୍ର ଲେଖିଲେ, "କାଲି ଆପଣଙ୍କୁ ପତ୍ର ଲେଖିସାରିବା ପରେ ମୋତେ କିତ୍ତୁରରୁ କିଛି ବିଶ୍ୱାସ ଯୋଗ୍ୟ ସମ୍ବାଦ ମିଳିଛି । ଖବରରୁ ଜଣାପଡୁଛି ଯେ, ତିନୋଟି ଦଳ ଦୁର୍ଗ ବାହାରକୁ ପଠାଇ ଦିଆଯାଇଛି ଏବଂ ଦଳରେ ପ୍ରାୟ 1,000 ଲୋକ ରହିଥିବା ଅନୁମାନ କରାଯାଉଛି । ଅଗ୍ରସର ହେଉଥିବା ଆମଲୋକଙ୍କୁ ବାଧାଦେବା କିମ୍ବା ଧ୍ୱଂସ କରିଦେବା ଏମାନଙ୍କର ଲକ୍ଷ୍ୟ ବୋଲି କୁହାଯାଉଛି । ମାତ୍ର ମୋର ବିଶ୍ୱାସ ଏହି ସୂଚନା ମିଥ୍ୟା ।

2. କର୍ଣ୍ଣେଲ୍ ସୀଲିଙ୍କର ଦଳ ବେଙ୍ଗୁରଲାରୁ ଆସି ଆଜି ସକାଳେ ଏଠାରେ ପହଞ୍ଚିଛନ୍ତି । ଆଶା କରାଯାଉଛି, ତାଙ୍କ ସାଥିରେ ଆସିଥିବା ପଶୁମାନଙ୍କ ସାହାଯ୍ୟରେ ବିଧ୍ୱଂସକ ଗାଡ଼ିକୁ ଦୁଇଥରରେ କିତ୍ତୁର ଆଡ଼କୁ ଅଗ୍ରସର କରାଇବାରେ ବିଶେଷ ବିଳମ୍ବ ହେବନାହିଁ । ମାଲ୍ ଟାଣିବା ପାଇଁ ବଳଦ ଅଭାବ ହେତୁ ଥରକରେ ଏହି କାର୍ଯ୍ୟ କରାଯାଇ ପାରିବ ନାହିଁ । ବିଦ୍ରୋହୀମାନଙ୍କ ବିରୁଦ୍ଧରେ ନିଶ୍ଚିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାର ଠିକ୍ ସମୟ ଜଣାପଡ଼ିଗଲେ, ମୁଁ ମାନନୀୟ ଗଭର୍ଣ୍ଣରଙ୍କ ନିର୍ଦ୍ଦେଶରେ ଘୋଷଣା କରିବାରେ ଆଉ ବିଳମ୍ବ କରିବି ନାହିଁ ।

3. ଗତ ଚାରିଦିନର ଘଟଣାବଳୀର ପରିଣାମ ସ୍ୱରୂପ ଷ୍ଟିଭେନ୍‌ସନ୍ ତଥା ଇଲିଅଟଙ୍କ ଚାରିପଟେ ପହରା ବ୍ୟବସ୍ଥାକୁ ଆହୁରି କଡ଼ା କଡ଼ି କରିଦିଆଯାଇଛି । ତାଡ଼କୋଡ଼ ଠାରେ କର୍ଣ୍ଣେଲ ମାକଲଏଡ୍‌ଙ୍କର ଆଚରଣ ଦୃଷ୍ଟିରୁ ଏହା କରିବାକୁ ପଡ଼ିଲା ବୋଲି କୁହାଯାଉଛି । ତାଡ଼କୋଡ଼ କିତ୍ତୁରଠାରୁ ଛଅ ମାଇଲ୍

ପୂର୍ବରେ ଥିବା ଆମ ସୀମା ମଧ୍ୟବର୍ତ୍ତୀ ଗ୍ରାମ ।

4. ଖବର ମିଳିଛି ଯେ, ଜଣେ ଓକିଲ କିତ୍ତୁରରୁ ମୋ ପାଖକୁ ଆସିବେ । କୋଡ଼ିଏ ତାରିଖରୁ ଏହି ଗୁଜବ ପ୍ରଚାରିତ ହେଉଛି । ଏ ପର୍ଯ୍ୟନ୍ତ କେହି ଆସି ନାହାନ୍ତି ।

ଯୋଜନା ଅନୁସାରେ ନଭେମ୍ବର 25 ତାରିଖ (1824) ସୁଦ୍ଧା ପ୍ରାୟ ସମସ୍ତ ବ୍ରିଟିଶ୍ ସୈନ୍ୟଦଳ ପହଞ୍ଚିଗଲେ ଏବଂ ସେମାନେ ପୂରାପୂରି ପ୍ରସ୍ତୁତ ମଧ୍ୟ ଥିଲେ । ମାଡ୍ରାଜ ରେଜିମେଣ୍ଟର ଲେ. କର୍ଣ୍ଣେଲ ବାକରଙ୍କୁ ଖାନାପୁରଠାରେ ତୋପର ଦାୟିତ୍ୱରେ ରହିବା ନିମନ୍ତେ ଆଦେଶ ଦିଆଗଲା । ଖାନାପୁର ଥିଲା ଇଂରେଜମାନଙ୍କ ଅଧୀନରେ । ମେଜର ଟ୍ରମ୍ପସନ୍ ବେଲଗାଁଓ ୟୁନିଟ୍‌ର କମାଣ୍ଡର ଥିଲେ । ତିନି ଦିଗରୁ ତ୍ରିକୋଣୀୟ ଆକ୍ରମଣ ଚଳାଇବା ହିଁ ଇଂରେଜମାନଙ୍କର ଲକ୍ଷ୍ୟଥିଲା । ଉତ୍ତରରୁ ବେଲଗାଁଓ ଆଡୁ, ଦକ୍ଷିଣ ପୂର୍ବଦିଗରୁ ତାଡ଼କୋଡ଼ ଦେଇ ଧାରବାରରୁ (କର୍ଣ୍ଣେଲ ମାକଲଏଡ଼ ଅଧୀନସ୍ଥ ସୈନ୍ୟବାହିନୀ କିତ୍ତୁରଠାରୁ ମାତ୍ର 10 କି:ମି ଦୂରବର୍ତ୍ତୀ ତାଡ଼କୋଡ଼ଠାରେ ପୂର୍ବରୁ ଅବସ୍ଥାପିତ ହୋଇଥିଲେ) ତଥା ପଶ୍ଚିମଦିଗରୁ ଖାନାପୁର ଆଡୁ ଏହି ଆକ୍ରମଣ ଚଳାଇବାର ଯୋଜନା କରାଯାଇଥିଲା । ସେନା ବାହିନୀ ଯଥାଶୀଘ୍ର ଦୁର୍ଗ ଆରୋହଣ କରି ତିନି ଦିଗରୁ ତାକୁ ଅବରୋଧ କରିବା ନିମନ୍ତେ ଚାହୁଁଥିଲେ । ବେଲଗାଁଓ ସ୍ଥିତ ହେଡ୍‌କ୍ୱାର୍ଟର୍ସରୁ ସେନାର ଅଗ୍ରଗତି ସମ୍ବନ୍ଧୀୟ ନିର୍ଦ୍ଦେଶ କ୍ୱାର୍ଟର ମାଷ୍ଟର ଜେନେରାଲ୍ ଆଇ. ଆଇ. ଓ. ଡୁନୋଙ୍କ ଦ୍ୱାରା ନିମ୍ନ ଭାବରେ ପ୍ରଚାରିତ ହୋଇଥିଲା :

ଗୁରୁଗ୍ ପରେ ଖାନାପୁର ପଡ଼ିବ । ସେନା ସହିତ ଆପଣ ସେଠାରେ ପହଞ୍ଚିବାପରେ ତତ୍ରତ୍ୟ ମୁଖ୍ୟ-ପଦାଧିକାରୀ ଲେ. କର୍ଣ୍ଣେଲ୍ ମାକଲଏଡ଼ଙ୍କ ଅଧୀନରେ ସୈନ୍ୟଦଳର ଦାୟିତ୍ୱ ବହନ କରିବେ । ବେଲଗାଁଓ ତଥା ଧାରବାରରୁ ଆସୁଥିବା ସେନା ଆପଣଙ୍କ ଦଳରେ ସାମିଲ୍ ହୋଇଯିବା ପରେ (ଯାହାର ବିବରଣ ପାଖରେ ଦିଆଯାଇଛି) ସମସ୍ତେ ଏକାଠି ମିଶି କିତ୍ତୁର୍ ଆଡ଼କୁ ଅଗ୍ରସର ହେବେ । ନିରାପଦ ବ୍ୟବଧାନରେ ରହି ଆପଣ କିତ୍ତୁର ଦୁର୍ଗକୁ ଚାରିଆଡୁ ଅବରୋଧ କରିବେ । ଦେଖିବେ, କୌଣସି ମତେ ଯେମିତି ଜଣେ ହେଲେ ବିଦ୍ରୋହୀ ଦୁର୍ଗରୁ ବାହାରି ପଶ୍ଚିମ ଜଙ୍ଗଲ ମଧ୍ୟବର୍ତ୍ତୀ ଦୁର୍ଗକୁ କିମ୍ବା ସମଶେରଗଡ଼ ଦୁର୍ଗକୁ ପଳାଇନଯାଏ । ପଡ଼ୋଶୀ ଗ୍ରାମମାନଙ୍କରେ ବିଦ୍ରୋହୀମାନଙ୍କର ପରିବାର ଅଛନ୍ତି । ପଦାତିକ ବାହିନୀର ସହାୟତାରେ ହର୍ସ ଆର୍ଟିଲାରୀ ତଥା କାଭଲ୍‌ରୀକୁ ସାବଧାନରେ ଉପରକୁ ଚଢ଼ାଯିବ ।

ଆକସ୍ମିକ ଆକ୍ରମଣର ସମ୍ଭାବନା ଆଶଙ୍କାରେ ଆମର ଆଗୁଆ ବାହିନୀକୁ ଦୃଢ଼ କରିଯିବା ଆବଶ୍ୟକ । ଏମାନେ ଶୃଙ୍ଖଳିତ ତଥା ଦୃଢ଼ ହେବା ଦରକାର । ନିଃଶଙ୍କଚିତ୍ତରେ ଏମାନେ ଆତ୍ମଗୋପନକାରୀ ଶତ୍ରୁମାନଙ୍କୁ ଜବତ୍ କରି ନେବା ନିମନ୍ତେ ସମର୍ଥ ହୋଇଥିବା ପ୍ରୟୋଜନ । ପ୍ରୟୋଜନରେ ସେମାନଙ୍କ ଉପରେ ଗୋଳା ବର୍ଷଣ କରାଯାଇପାରେ । ତେଣୁ ସେମାନଙ୍କ ନିକଟରେ ପ୍ରଚୁର ଗୋଳାବାରୁଦ ରହିଥିବା ଆବଶ୍ୟକ । ରୋଷେଇ କିମ୍ବା ସେଇଭଳି ଅନ୍ୟ କାର୍ଯ୍ୟ କରିବା ନିମନ୍ତେ ସେମାନଙ୍କୁ ଅନୁମତି ନଦିଆଯିବା ଉଚିତ ।

ମେଜର ଟ୍ରମ୍ପସନ୍‌ଙ୍କ ନେତୃତ୍ୱରେ କାଲି ସକାଳେ ବେଲଗାଁଓର ସୈନ୍ୟଦଳ ଯାତ୍ରା ଆରମ୍ଭ କରିବେ ଏବଂ ଯଦି ପ୍ରତ୍ୟାଶିତ 1,000 ଅଶ୍ୱ ମହୀଶୁରରୁ ଧାରବାର ପହଞ୍ଚିଯାଆନ୍ତି, ତେବେ କିତ୍ତୁର୍ ଚଢ଼ାଇରେ ଆପଣ ସେମାନଙ୍କୁ ବ୍ୟବହାର କରିପାରନ୍ତି ।

ସୈନ୍ୟ ସଂଚାଳନ ବ୍ୟବସ୍ଥାର ପରିଦର୍ଶନ ନିମନ୍ତେ ସ୍ୱୟଂ ଚାପଲିନ୍ ନଭେମ୍ବର ଅଠେଇଶ ତାରିଖ 1824 ରେ ତାଡ଼କୋଡ଼ ଆସିଲେ । କିତ୍ତୁର ଅବରୋଧର ଦାୟିତ୍ୱ ସେ ମାଡ୍ରାଜ ସେନାର

କର୍ଣ୍ଣେଲ ବାକରଙ୍କୁ ଅର୍ପଣ କଲେ । କିତ୍ତୁର ଆକ୍ରମଣ ନିମନ୍ତେ ତିନୋଟି ବ୍ରିଟିଶ୍ ସୈନ୍ୟ - ୟୁନିଟ୍‌ରେ ତୀବ୍ର ଆଲୋଡ଼ନ ଚାଲିଥିଲା । ଅଣତ୍ରିଶ ତାରିଖରେ ଚାପଲିନ୍ ନ୍ୟୁହନଙ୍କୁ ପତ୍ର ଲେଖି ସେଥିରେ 17 ତାରିଖରେ ବମ୍ବେରୁ ଯାତ୍ରା କରିବା ପରେ ଘଟିଯାଇଥିବା ସମସ୍ତ ଘଟଣାର ବିବରଣୀ ଦେଲେ । ନିମ୍ନରେ ତାହାର ସଂକଳିତ ଅଂଶ ଦିଆଗଲା ।

ବାଟରେ ସ୍ଥାନେ ସ୍ଥାନେ ଅଧିକାଂଶ ପଟ୍ଟବର୍ଦ୍ଧନ ତଥା କେତେକ ଜାଗୀରଦାର ମୋତେ ସାକ୍ଷାତ କରିବାକୁ ଆସିଥିଲେ । ସେମାନେ ଏବେ ନିଜ ନିଜ ଘରକୁ ଫେରିଗଲେଣି । ମୋ ସହିତ ସାକ୍ଷାତ୍ ନ କରିବା ନିମନ୍ତେ, ଚିନ୍ତାମଣି ରାଓ ନିଜ ପୁତ୍ରର ଅସୁସ୍ଥତାର ଛଳନା କରିଛନ୍ତି । ଜମଖଣ୍ଡିର ଗୋପାଳ ରାଓ ବେଲଗାଁଓ ସଡ଼କରେ ମୋ ସହିତ ଦେଖା କରିପାରିଲେ ନାହିଁ ସତ୍ୟ, ମାତ୍ର ସେ ଆଗରୁ ମୋ ଶିବିରରେ ପହଞ୍ଚିଯାଇ, ମୋ ସହିତ ଦେଖା କରିବା ନିମନ୍ତେ ଏତେ ଅନୁରୋଧ କଲେ ଯେ, ମୁଁ ଆଉ ମନା କରିପାରିଲି ନାହିଁ । ତାଙ୍କର ବନ୍ଧୁତ୍ୱପୂର୍ଣ୍ଣ ଆଚରଣ ସମ୍ପର୍କରେ ମୋର କୌଣସି ସନ୍ଦେହ ନାହିଁ । ବର୍ତ୍ତମାନ ସେ 250 ଟି ଘୋଡ଼ା ସହିତ ମୋ ପାଖରେ ଛାଉଣି ପକାଇଛନ୍ତି ।

ଦୁଃଖର ବିଷୟ କୋହ୍ଲାପୁର ରାଜାଙ୍କର ଆଚରଣ ସନ୍ତୋଷଜନକ ନୁହେଁ । ବେଲଗାଁଓ ଯାତ୍ରା କାଳରେ ମୁଁ ଯେତେବେଳେ ତାଙ୍କ ରାଜଧାନୀ ପାଖ ଦେଇ ଯାଉଥିଲି, ସେତେବେଳେ ସେ ଅସୁସ୍ଥ ଥିଲେ କିମ୍ବା ଅସୁସ୍ଥତାର ଛଳନା କରିଥିଲେ । ମାତ୍ର ଯେହେତୁ ସେ ନିଜର କିଛି ପ୍ରମୁଖ କର୍ମଚାରୀଙ୍କୁ ମୋ ପାଖକୁ ପଠାଇଥିଲେ, ସେ ନିଜେ ନଆସି ପାରିଥିବା ହେତୁ କ୍ଷମା ଚାହିଁଥିଲେ । ତାଙ୍କ ଉପରେ ଏହି କାରଣରୁ କ୍ରୁଦ୍ଧ ହେବାର କୌଣସି କାରଣ ନାହିଁ । ବେଲଗାଁଓରେ ପହଞ୍ଚିବାପରେ ମୁଁ ଦେଖିଲି ଯେ, ସେ ଗୁରୁତର ଅସୁସ୍ଥତାରୁ ହଠାତ୍ ସୁସ୍ଥହୋଇ ବେଇ ଦେଆଗରଙ୍କ ପରାମର୍ଶ ବିରୁଦ୍ଧରେ ମୋ ସହିତ ସାକ୍ଷାତ୍ କରିବା ନିମନ୍ତେ 5,000 ପଦାତିକ, 1000 ଅଶ୍ୱାରୋହୀ ଏବଂ ସାତଟି ତୋପ ନେଇ କୋହ୍ଲାପୁରରୁ ଯାତ୍ରା କରିଛନ୍ତି । ଏକଥା ଶୁଣିବା ପରେ ମୁଁ ତାଙ୍କୁ ପତ୍ରଦ୍ୱାରା ଜଣାଇ ଦେଲି ଯେ, ତାଙ୍କ ସହିତ ସାକ୍ଷାତ୍ କରିପାରିଲେ ମୁଁ ଅତ୍ୟନ୍ତ ଖୁସିହୁଅନ୍ତି । ମାତ୍ର ବର୍ତ୍ତମାନ ମୋତେ ଏତେ ବ୍ୟସ୍ତ ରହିବାକୁ ପଡୁଛି ଯେ, ସାକ୍ଷାତ୍ ହେବା ଅସାଧ । ଏଣୁ ବର୍ତ୍ତମାନ ଏହି ସାକ୍ଷାତ୍‌ବନ୍ଦରଖିବା ନିମନ୍ତେ ମୁଁ ତାଙ୍କୁ ଅନୁରୋଧ କରିଛି । ସର୍ବଶେଷ ସମ୍ବାଦ ଅନୁସାରେ ସେ ଯମକଣମରଡ଼ୀ କିମ୍ବା ତାର ନିକଟବର୍ତ୍ତୀ ଅଞ୍ଚଳରେ ରହିଛନ୍ତି । ମୋ ପତ୍ର ପାଇବା ପରେ ସେ ସେଠାରେ ଅଟକି ରହିଛନ୍ତି ବୋଲି ଖବର ମୋ ପତ୍ର ପାଇବାପରେ ମଧ ସେ ଅଗ୍ରସର ହେଉଥିବାର ସମ୍ବାଦ ପାଇ ମୁଁ ଏଠାରେ ଥିବା ତାଙ୍କର ଓକିଲଙ୍କୁ କହିଲି ଯେ ଏଭଳି ସମୟରେ ଏତେ ଅଧିକ ସୈନ୍ୟ ସାମନ୍ତ ନେଇ ଚଲାଯରା କରିବା ରାଜାଙ୍କ ପକ୍ଷରେ ଯୁକ୍ତିଯୁକ୍ତ ହେଉନାହିଁ । ଏହାପରେ ସେ ଯଦି ଅଗ୍ରସର ହୁଅନ୍ତି ତେବେ ମୁଁ ବିଶ୍ୱାସ କରିବା ନିମନ୍ତେ ବାଧ ହେବି ଯେ, ସେ କିତ୍ତୁରର ବିଦ୍ରୋହୀମାନଙ୍କୁ ଉତ୍ସାହିତ କରିବା ନିମନ୍ତେ ଏଭଳି କରୁଛନ୍ତି । ଆଜି ଜଣାପଡ଼ିଛି ଯେ ସେ ହୁଏତ ମନୁଲୀ ଯାତ୍ରା କରିଛନ୍ତି କିମ୍ବା ଯାତ୍ରା ନିମନ୍ତେ ପ୍ରସ୍ତୁତ ହେଉଛନ୍ତି । ଏହ ସ୍ଥାନ ଏଠାରୁ ପ୍ରାୟ 25 ମାଇଲ୍ ଉତ୍ତରପୂର୍ବ ଦିଗରେ ତଳ ଆଡ଼କୁ ଅବସ୍ଥିତ ଏବଂ ତାଙ୍କ ରାଜ୍ୟ ମଧରେ । ଯଦି ଏହି ସମ୍ବାଦ ସତ୍ୟ ହୋଇଥାଏ, ସାବଧାନ କରିଦେବା ସତ୍ତ୍ୱେ ସେ ଯଦି ନିଜ ଇଚ୍ଛାନୁସାରେ କାର୍ଯ୍ୟ କରିଯାନ୍ତି, ତେବେ ମୁଁ ବିଶ୍ୱାସ କରିବାକୁ ବାଧ ହେବି ଯେ, ସେ ହୁଏତ ବିଦ୍ରୋହୀମାନଙ୍କୁ ସାହାଯ୍ୟ ଦେବାକୁ କିମ୍ବା ଅନ୍ତତଃ ସେମାନଙ୍କୁ ଭରସା ଦେବାକୁ ବଦ୍ଧପରିକର । କିତ୍ତୁର ବ୍ୟାପାର ନିଷ୍ପତ୍ତି ହୋଇଯିବାପରେ, ମୋ ବିଚାରରେ ନିଜ ଆଚରଣ ସମ୍ପର୍କରେ ସ୍ପଷ୍ଟୀକରଣ ଦେବା ନିମନ୍ତେ ତାଙ୍କୁ ଡକାଯିବା ଉଚିତ ହେବ । ବର୍ତ୍ତମାନ ତାଙ୍କର ଗତିବିଧ ଉପରେ କଡ଼ା ନଜର

ରଖାଯିବା ଆବଶ୍ୟକ, କାରଣ ଏହି ସଙ୍କଟ ଜନକ ମୁହୂର୍ତ୍ତରେ ସେ ଶତ୍ରୁତା କରୁନଥିଲେ ମଧ୍ୟ, ଏହା କରିବା ନିମନ୍ତେ ଚିନ୍ତା କରୁଛନ୍ତି ।

ନଭେମ୍ବର ତିରିଶ୍ ତାରିଖରେ କର୍ଣ୍ଣେଲ ମାକଲଏଡ଼ଙ୍କ ନେତୃତ୍ୱରେ ଇଂରେଜ ସୈନ୍ୟ କିତ୍ତୁରର ବହୁତ ନିକଟରେ ପହଞ୍ଚିଗଲେ । ଧାରବାରର ସହାୟକ କଲେକ୍ଟର ମୁନରୋ ତାଙ୍କ ସହିତ ଥିଲେ । ବିଗତ ଯୁଦ୍ଧମାନଙ୍କର ଏକ ବୀର ଯୋଦ୍ଧା ରୂପରେ ମୁନରୋଙ୍କର ଖ୍ୟାତି ଥିଲା ତଥା 'ପେନିନ୍‌ସୁଲା ଇଣ୍ଡିୟା'ର ଜଣେ ସୁଯୋଗ୍ୟ ସାମରିକ-ଶାସକରୂପେ ସେ କୃତିତ୍ୱ ଦେଖାଇଥିଲେ । କର୍ଣ୍ଣେଲ୍ ଟ୍ରମ୍ପସନ୍‌ଙ୍କ ନେତୃତ୍ୱରେ ବେଲଗାଁଓ ସେନା ଏବଂ ଲେ. କର୍ଣ୍ଣେଲ ବାକରଙ୍କ ନେତୃତ୍ୱରେ ଖାନାପୁର ସେନା ମଧ୍ୟ ଉପସ୍ଥିତ ହୋଇଗଲେ । ସେମାନେ କିତ୍ତୁର ସମୀପବର୍ତ୍ତୀ ଅଞ୍ଚଳରେ ଛାଉଣି ପକାଇଲେ । ବିଧ୍ୱଂସକ ଗାଡ଼ି ଡିସେମ୍ବର ପହିଲା ଦିନ ପ୍ରତ୍ୟାଶିତ ଥିଲା । ଇତି ମଧ୍ୟରେ କିତ୍ତୁରଠାରୁ ମାତ୍ର 1-1/2 ମାଇଲ ଦୂରରେ ମହୀଶୁର, ଚିତ୍ରଦୁର୍ଗ, ମାଦ୍ରାଜ, ଆର୍କଟ, ଶୋଲାପୁର, ସତାରା, ବମ୍ବେ, ପୁନେ ତଥା ବେଙ୍ଗୁରଲାଠାରୁ ଆଗତ ସମସ୍ତ ସେନା ଠୁଳ ହୋଇଗଲେ । ନିଜ ଲୋକଙ୍କଠାରୁ ରାଣୀ ଏ ସମସ୍ତ ବିଷୟ ଅବଗତ ହେଲେ । ପ୍ରାୟ 25,000 ଇଂରେଜ ସୈନ୍ୟ କିତ୍ତୁର ଅବରୋଧ କରିଥିବା ବିଷୟ ସେ ଜାଣିଥିଲେ । ଏଥିରେ ସନ୍ଦେହ ନଥିଲା ଯେ, ଇଂରେଜ ସୈନ୍ୟଙ୍କ ନିକଟରେ କିତ୍ତୁରର ଅଳ୍ପସଂଖ୍ୟକ ସୈନ୍ୟ ଅନୁଲ୍ଲେଖ୍ୟ ଥିଲେ । ତଥାପି ରାଣୀ ଆଶା ଛାଡ଼ିନଥିଲେ । ସେ ସଙ୍ଗେ ସଙ୍ଗେ ମନୋଲୀ ଦୂତ ପଠାଇଲେ, କାରଣ ତାଙ୍କୁ ଖବର ମିଳିଥିଲା ଯେ, କୋହ୍ଲାପୁର ସୈନ୍ୟ ସେଠାରେ ତାଙ୍କୁ ସାହାଯ୍ୟ ଦେବା ନିମନ୍ତେ ଅପେକ୍ଷା କରୁଛନ୍ତି । ବର୍ତ୍ତମାନ ଅବସ୍ଥାରେ ସେଇମାନେ ଥିଲେ ରାଣୀଙ୍କର ଶେଷ ଆଶା ।

ତୀକ୍ଷ୍ଣ ବୁଦ୍ଧି ରାଜନୀତିଜ୍ଞ ଚାପଲିନ୍ ଏହି ଗତିବିଧିକୁ ସୂକ୍ଷ୍ମଭାବରେ ପରୀକ୍ଷା କରିଦେଖୁଥିଲେ । ସେ ପୂର୍ବରୁ ଆଶଙ୍କା କରୁଥିଲେ ଯେ, କୋହ୍ଲାପୁର କିତ୍ତୁରକୁ ସାହାଯ୍ୟ କରିପାରେ । ସେ ଡିସେମ୍ବର ପହିଲାରେ ମହୀଶୁର ହର୍ସ ଆର୍ଟିଲାରୀର କ୍ୟାପ୍ଟେନ୍ କୁକ୍‌ଙ୍କୁ ପତ୍ର ଲେଖି ଜଣାଇଲେ, ''କିତ୍ତୁର କିଲ୍ଲାର ବୁରୁଜ୍ ଉପରୁ ସାରାଦିନ ଗୁଳିଚାଳି ପ୍ରଥମେ ଆମ ଉପରେ ଆକ୍ରମଣ କରାଯାଇଛି । ମୁଁ ଆଶଙ୍କା କରୁଛି କୋହ୍ଲାପୁର ରାଜା କିତ୍ତୁରକୁ ସାହାଯ୍ୟ କରିବା ନିମନ୍ତେ ଅଗ୍ରସର ହେବାର ସମ୍ଭାବନା । ତେଣୁ ମୋର ଅନୁରୋଧ ଯେ, ଆପଣ 500 ପଦାତିକ ସହିତ ଅଶ୍ୱସେନାର ଗୋଟିଏ ଦଳ ପଠାଇଦେବେ । ଯଦି ଆପଣଙ୍କ ପାଖରେ ବ୍ଲାଜପେଟ୍ ଘୋଡ଼ା ଏବଂ ତୋପଥିବ, ତେବେ ଯେ କୌଣସି ଶତ୍ରୁର ସମ୍ମୁଖୀନ ହେବା ନିମନ୍ତେ ଏହା ଖୁବ୍ କାମରେ ଲାଗିବ । ଯେଉଁମାନେ ଏଠାରେ ଆମକୁ ବାଧା ଦେବେ, ଆମେ ସେମାନଙ୍କ ବିରୁଦ୍ଧରେ ଏହାକୁ ପ୍ରୟୋଗ କରିପାରିବା ।

ରାଣୀ ଚେନ୍ନାମ୍ମାଙ୍କ ଦୂତ ଦୁର୍ଗର ଉତ୍ତର ପୂର୍ବଦ୍ୱାରବାଟେ ମନୋଲୀ ଯାତ୍ରାକରିବା ନିମନ୍ତେ ବହୁପ୍ରଯତ୍ନ କଲେ, ମାତ୍ର ବ୍ରିଟିଶ୍ ସୈନ୍ୟ ସେମାନଙ୍କୁ ବାଟରୁ ଧରିନେଲେ । କିଛି ଧସ୍ତାଧସ୍ତି ହେଲା ଏବଂ ଦୁର୍ଗ ଉପର ମୀନାରରୁ ସୈନିକମାନେ ଗୁଳି ଚଳାଇଲେ । ଏହି ଗୁଳିଚାଳନା ଫଳରେ ଅଶ୍ୱ ତୋପଖାନାର ଦୁଇଜଣ ଇଂରେଜ ଜବାନ୍ ଏବଂ ଦୁଇଟି ଘୋଡ଼ାଙ୍କର ମୃତ୍ୟୁ ହେଲା । ଏଥିରେ ଇଂରେଜମାନେ ଉତ୍ତେଜିତ ହୋଇ ଉଠିଲେ । ସେମାନେ ଦୁର୍ଗ ଉପରକୁ ଗୁଳି ବର୍ଷଣ କରିବାକୁ ଆରମ୍ଭ କଲେ । ଶୀଘ୍ର ଏହାର ପ୍ରତିକ୍ରିୟା ହେଲା । ସାରା ଦିନ ଦୁଇ ତରଫରୁ ମଝିରେ ମଝିରେ ଗୁଳି ବର୍ଷଣ ଚାଲିଲା ।

କିତୁରର ଓକିଲ୍ ଏବେ ମଧ୍ୟ ଅଧିକ ଅନୁକୂଳ ସର୍ତ୍ତ ନିମନ୍ତେ ଚାପଲିନ୍‌ଙ୍କ ସହିତ ଆଲୋଚନା ଚଳାଇଥିଲେ । କ୍ରୁଦ୍ଧ ଚାପ୍‌ଲିନ୍ ସ୍ପଷ୍ଟ ଜଣାଇ ଦେଲେ, ଯଦି ଡିସେମ୍ବର ପହିଲା ମଧ୍ୟ ରାତ୍ରି ପୂର୍ବରୁ

ବିଦ୍ରୋହୀମାନେ ଆତ୍ମସମର୍ପଣ ନ କରନ୍ତି, ତେବେ ସେ ଦୁର୍ଗ ଉପରେ ଚାରିଆଡୁ ଆକ୍ରମଣ କରିବା ନିମନ୍ତେ ନିଜ ସେନାକୁ ଆଦେଶ ଦେବେ । ସମସ୍ତଙ୍କୁ ଧ୍ୱଂସ କରିଦିଆଯିବ । ସେ ତତ୍କାଳୀନ ପରିସ୍ଥିତି ବିଷୟରେ ନ୍ୟୁହମ୍‌ଙ୍କୁ ରିପୋର୍ଟ ଲେଖି, ସେମାନେ ସେଇ ମୁହୂର୍ତ୍ତରେ ଯାହା କରିବାକୁ ଯାଉଛନ୍ତି, ତାହା ଜଣାଇ ଦେଲେ । କିତ୍ତୁରର ବିଦ୍ରୋହୀମାନେ ଅସ୍ତ୍ର ସମ୍ବରଣ ନକଲେ କିମ୍ବା ବନ୍ଦୀଦ୍ୱୟଙ୍କୁ ମୁକ୍ତି ନଦେଲେ, ଏହାଛଡ଼ା ସେମାନଙ୍କର ଅନ୍ୟ ଉପାୟ ନାହିଁ ବୋଲି ମଧ ଉଲ୍ଲେଖ କଲେ ।

ସେଇଦିନ ସକାଳେ ଚାପ୍‌ଲିନ୍ ରାଣୀ ଚେନ୍ନାମ୍ମାଙ୍କୁ ଖବର ପଠାଇଲେ ଯେ, ଯଦି ଦୁଇଜଣଯାକ ଇଂରେଜ ପଦାଧିକାରୀଙ୍କୁ ସକାଳ ଦଶଟା ସୁଦ୍ଧା ମୁକ୍ତି ଦିଆ ନଯାଏ ତେବେ କିତ୍ତୁରର ସମସ୍ତ ସୈନ୍ୟଙ୍କୁ ହତ୍ୟା କରାଯିବ । ରାଣୀ ନିଜର ପରାମର୍ଶ ଦାତାଙ୍କ ସହିତ ଆଲୋଚନା କରିବା ପରେ ଠିକ୍ କେଲେ ଯେ, ସାମୟିକ ଭାବରେ ସମସ୍ତ ଶତ୍ରୁତାକୁ ସ୍ଥଗିତ ରଖି କିଛି ସମୟ ନିଆଯାଉ । ତେଣୁ ସେ ନିଜର ଓକିଲଙ୍କ ଦ୍ୱାରା ଖବର ପଠାଇଲେ ଯେ, ଯଦି ପୂର୍ବୋକ୍ତ ଦୁଇଜଣ ଇଂରେଜଙ୍କୁ ଫେରାଇ ଦେବା ପରେ ଯୁଦ୍ଧ ନହେବାର ପ୍ରତିଶ୍ରୁତି ଦିଆଯାଏ, ତେବେ ସେ ସେମାନଙ୍କୁ ମୁକ୍ତି ଦେବା ନିମନ୍ତେ ପ୍ରସ୍ତୁତ ଅଛନ୍ତି । ଚାପ୍‌ଲିନ୍ ସମ୍ମାନର ସହିତ ଓକିଲଙ୍କୁ ପ୍ରତିଶ୍ରୁତି ଦେଲେ ଯେ, ଉଭୟ ଇଂରେଜଙ୍କୁ ଯଦି ଅକ୍ଷତ ଅବସ୍ଥାରେ ସେମାନଙ୍କୁ ଫେରାଇ ଦିଆଯାଏ, ଏବଂ ଆଲୋଚନା ଜାରି ରହେ, ତେବେ ଆକ୍ରମଣ ବନ୍ଦ କରିଦିଆଯିବ । ତେଣୁ ଦୁଇ ତାରିଖ ରାତି ନଟାରେ ଷ୍ଟିଭେନ୍‌ସନ୍ ତଥା ଇଲିଅଟ୍‌ଙ୍କୁ ନିରାପଦରେ ବ୍ରିଟିଶ୍ ଶିବିରରେ ପହଞ୍ଚାଇ ଦିଆଗଲା । କିତ୍ତୁର ଓକିଲ ଏବେ ମଧ୍ୟ ପୂର୍ବୋକ୍ତ ଘୋଷଣା (ରାଜତ୍ୱର ସମାପ୍ତି ସୂଚକ) ରଦ୍ଦକରି ଏହାକୁ ଜାରି ରଖିବାର ଆଦେଶ ଦିଆଯିବା ଉପରେ ଗୁରୁତ୍ୱ ଦେଉଥିଲେ । ଷ୍ଟିଭେନ୍‌ସନ୍ ତଥା ଇଲିୟଟ୍ ମଧ ଏହି ପ୍ରାର୍ଥନାକୁ ସହାନୁଭୂତିର ସହିତ ବିଚାର କରାଯିବା ନିମନ୍ତେ ନିବେଦନ ଜଣାଇଲେ । ଚାପ୍‌ଲିନ୍ ଏ ସଂକ୍ରାନ୍ତରେ ଡିସେମ୍ବର ଦୁଇ ତାରିଖରେ ନ୍ୟୁହମ୍‌ଙ୍କୁ ଲେଖିଲେ, "ଦୁଇଜଣଯାକ ମହାନ୍-ପଦାଧିକାରୀ ନିରାପଦରେ ଆଜି ରାତି ନ'ଟାରେ ଆମ ପାଖରେ ପହଞ୍ଚିଯାଇଛନ୍ତି । ଏହା ଆପଣଙ୍କୁ ଜଣାଇ ମୁଁ ଆନନ୍ଦିତ । କିତ୍ତୁରର ବିଦ୍ରୋହୀମାନେ ମୋ ନିର୍ଦ୍ଦେଶର ଶେଷ ଅଂଶକୁ ପାଳନ କରିବା ନିମନ୍ତେ ଆଗ୍ରହୀ ଥିବାର ଏଥିରୁ ଜଣାଯାଉଛି । ତଥାପି ରାଜ-ପଦ ଜାରି ରଖିବା ନିମନ୍ତେ ତଥା କ୍ଷମାଦାନର ଏକ ଅଧିନିୟମ ପ୍ରଣୟନ କରିବା ନିମନ୍ତେ କିତ୍ତୁରର ଓକିଲ ଏବେ ମଧ ଜୋର ଦେଉଛନ୍ତି । ସେ ଆହୁରି ମଧ କହୁଛନ୍ତି ଯେ, ଘୋଷଣାର ସର୍ତ୍ତ ଅଧିକ ଅନୁକୂଳ ନ ହେବା ପର୍ଯ୍ୟନ୍ତ ଦୁର୍ଗ ମଧସ୍ଥ ସେନା, ପ୍ରତିରୋଧ କରିବା ନିମନ୍ତେ ବଦ୍ଧ ପରିକର । ମୁଁ ତାଙ୍କୁ ଶେଷଥର ପାଇଁ କହି ଦେଉଛି ଯେ, ମୁଁ ଘୋଷଣାର କୌଣସି ବିଶେଷ ପରିବର୍ତ୍ତନ କରିପାରିବି ନାହିଁ । କିନ୍ତୁ ଯେହେତୁ ସେମାନେ ଷ୍ଟିଭେନ୍‌ସନ୍ ତଥା ଇଲିୟଟ୍‌ଙ୍କ ସହିତ ଭଲ ବ୍ୟବହାର କରିଛନ୍ତି ତଥା ଶେଷରେ ସେମାନଙ୍କୁ ମୁକ୍ତି ଦେଇଛନ୍ତି, ତେଣୁ ସର୍ତ୍ତର ପ୍ରତ୍ୟେକ ଅକ୍ଷରକୁ ମୁଁ ଉଦାରତା ପୂର୍ବକ ଅର୍ଥ କରିବି । ଏଥିପାଇଁ ଗାରିସନ୍ କାଲି ସକାଳ ଦଶଟା ସୁଦ୍ଧା ଆତ୍ମସମର୍ପଣ କରିବା ତଥା ଦୁର୍ଗ ତ୍ୟାଗ କରିଯିବା ଆବଶ୍ୟକ ।

ଷ୍ଟିଭେନ୍‌ସନ୍, ଇଲିଅଟ୍, ଓକିଲ ତଥା ଅନ୍ୟ ବହୁତ ଲୋକ ମୋ ପାଖରେ ଥିବା ସମୟରେ ଦୁର୍ଗରୁ ବହୁତ ଗୁଳି ଚଳାଗଲା ଏବଂ ପଦାତିକ ସେନାର ଗୋଟିଏ ଦଳ ଯେତେବେଳେ ଆମର ପ୍ରହରୀମାନଙ୍କ ଆଡ଼କୁ ଆସୁଥିଲେ, ସେତେବେଳେ ସେମାନେ ଆମର ଛ'ପାଉଣ୍ଡ ବିଶିଷ୍ଟ ଗୋଟିଏ ତୋପର ଛୁରାକୁ ଭୟକରି ପଳାଇଲେ । ସେତେବେଳ୍‌ଠାରୁ ଆଉ କୌଣସି ଗୁଳି ଚାଲିନାହିଁ । ଉଭୟ ତରଫର ଶତ୍ରୁତାପୂର୍ଣ୍ଣ କାର୍ଯ୍ୟ କଳାପ ବନ୍ଦରଖିବାକୁ ବୁଝାମଣା କରାଯାଇଛି । କାଲି ପର୍ଯ୍ୟନ୍ତ ଉଭୟପକ୍ଷ

ନିଜ ନିଜ ସୀମା ମଧ୍ୟରେ ରହିବେ । ଦୁଃଖର ସହିତ କହିବାକୁ ପଡୁଛି ଯେ, ଏହି ବୁଝାମଣାକୁ ଶତ୍ରୁପକ୍ଷ ସମ୍ମାନ ଦେବେବୋଲି ମୁଁ ମନେ କରିପାରୁନାହିଁ । କାରଣ ସେମାନଙ୍କ ଲୋକ ବର୍ତ୍ତମାନ ଆଉ କୌଣସି ନିୟମ ମାନିବାର ଅବସ୍ଥାରେ ନାହାନ୍ତି ।

ଘୋଷଣା-ପ୍ରଚାର ନିମନ୍ତେ ସମସ୍ତ ପ୍ରକାର ଉଦ୍ୟମ କରାଯାଇଥିଲେ ମଧ୍ୟ, ଏଥିରେ ସନ୍ଦେହ ନାହିଁ ଯେ, ଆମେ ଆମ ଯୋଜନାରେ ଆଂଶିକ ମାତ୍ର ସଫଳ ହୋଇଛେ । କାରଣ ବାହାରେ ଥିବା ଗ୍ରାମମାନଙ୍କ ସହିତ ଦୁର୍ଗର ସମ୍ପର୍କ ଛିନ୍ନ ହୋଇଛି ଏବଂ ଗୁରୁସିଦ୍ଧପ୍ପାଙ୍କ ଅଦେଖାରେ କୌଣସି କାଗଜ ଦୁର୍ଗ ମଧ୍ୟକୁ ଯାଇପାରୁନାହିଁ । ତାହାର ଯେତେ ନକଲ, ତାଙ୍କ ହାତରେ ପଡ଼ିଲା, ସେ ସବୁକୁ ସେ ଜବତ୍ କରିଛନ୍ତି । କାରଣ ସେହି, ହେଉଛନ୍ତି ଏକମାତ୍ର ବ୍ୟକ୍ତି, ଯାହାଙ୍କୁ ସାର୍ବଜନୀନ କ୍ଷମାର ଅନ୍ତର୍ଭୁକ୍ତ କରାଯାଇନାହିଁ । ଅବଶ୍ୟ ମୁଁ ଷ୍ଟିଭେନ୍‌ସନ୍ ତଥା ଇଲିୟଟ୍‌ଙ୍କୁ ଛାଡ଼ିବା ନିମନ୍ତେ ଯେତେଲୋକ ଆମ ଶିବିରକୁ ଆସିଥିଲେ, ଆଜି ତାହା ପଢ଼ି ସମସ୍ତଙ୍କୁ ଶୁଣାଇ ଦେଇଛି । ସେମାନେ ସଂଖ୍ୟାରେ ଅନେକ ଥିବାରୁ, କାଗଜର ବିଷୟବସ୍ତୁ ଅଚିରେ ସମସ୍ତେ ଜାଣିଯିବାର ସମ୍ଭାବନା ରହିଛି । ଏହା ଆମପାଇଁ ଶୁଭଙ୍କର ହେବ ।

ବନ୍ଦୀ ଦୁଇ ବୀରଙ୍କୁ ଛାଡ଼ିବା ପୂର୍ବରୁ ସେମାନଙ୍କୁ ରାଜ୍ୟ ତରଫରୁ ମଧ୍ୟସ୍ଥତା କରିବା ନିମନ୍ତେ ଶପଥ ଦିଆଯାଇଛି । ଗୁରୁ ସିଦ୍ଧପ୍ପା ସେମାନଙ୍କ ସହିତ ଭଲ ବ୍ୟବହାର କରିଥିବାରୁ ଏବଂ ସେମାନଙ୍କୁ ହତ୍ୟା କରାଯାଇନଥିବାରୁ ସେମାନେ କୃତଜ୍ଞ ଚିତ୍ତରେ ଯାହା କହିବାର କହିଛନ୍ତି । ବିଧ୍ୱଂସକ ଗାଡ଼ି ସହିତ କର୍ଣ୍ଣେଲ ଡେକାନ୍ ଆଜି ସକାଳେ ଶିବରର ଚାରିମାଇଲ ମଧ୍ୟରେ ପହଞ୍ଚି ଯାଇଛନ୍ତି । ଗୋଟିଏ କାଦୁଆଜମିକୁ ପାରି ହେବାରେ ବହୁତ ଅସୁବିଧା ହେବାରୁ, ତୋପର ଗତି ବାଧାପ୍ରାପ୍ତ ହୋଇଛି ।

ଡିସେମ୍ବର ଦୁଇ ତାରିଖ ସକାଳେ କର୍ଣ୍ଣେଲ ଡେକାନ୍‌ଙ୍କ ନେତୃତ୍ୱରେ ବିଧ୍ୱଂସକ ଗାଡ଼ି ପହଞ୍ଚିଗଲା । ବନ୍ଦୀମାନେ ନିରାପଦରେ ପ୍ରତ୍ୟାବର୍ତ୍ତନ କରିଥିବାରୁ ଚାପଲିନ୍ ଆକ୍ରମଣ ବନ୍ଦ କରିବା ସମ୍ପର୍କରେ ନିଜର ପ୍ରତିଶ୍ରୁତିକୁ ପ୍ରାୟ ଭୁଲିଗଲେ । ଚାପଲିନ୍ ଥିଲେ ଅତ୍ୟନ୍ତ ଧୂର୍ତ୍ତ ତଥା ନିର୍ଲଜ । ଏଥର ସେ ନିଜ ସ୍ୱରୂପ ପ୍ରକାଶ କଲେ । ଘୋଷଣାର ପ୍ରତ୍ୟେକ ଶବ୍ଦକୁ ସମ୍ମାନ ଦିଆଯିବା ନିମନ୍ତେ କିତ୍ତୁରର ସେନା ଆତ୍ମ ସମର୍ପଣ କରିବା ନିମନ୍ତେ ତଥା ଘୋଷଣାରେ ଉଲ୍ଲିଖିତ ପ୍ରତ୍ୟେକ ସର୍ତ୍ତକୁ ମାନିନେବା ନିମନ୍ତେ ସେ କିତ୍ତୁରର ଶାସକମାନଙ୍କୁ ପରାମର୍ଶ ଦେଲେ । ପୁଣି ସେ ଧମକ ଦେଇ କହିଲେ ଯେ, ଯଦି ଡିସେମ୍ବର ତିନି ତାରିଖ ସକାଳ 10ଟା ସୁଦ୍ଧା ସେନା ଆତ୍ମସମର୍ପଣ ନ କରନ୍ତି, ତେବେ ଦୁର୍ଗକୁ ତୋପ ସାହାଯ୍ୟରେ ଉଡାଇ ଦିଆଯିବ । ଡିସେମ୍ବର ଦୁଇ ତାରିଖରେ ଇତସ୍ତତଃ ଗୁଳି ଚାଲୁରହିଲା । ତିନି ତାରିଖ ସକାଳେ ରାଣୀ ଚେନ୍ନାମ୍ମା ତଥା ବୀରଦ୍ୱୀ ଚାପଲିନ୍‌ଙ୍କୁ ଏକ ଯୁକ୍ତ-ପତ୍ର ଲେଖି ସେ ନିଜର ପ୍ରତଶ୍ରୁତି ପାଳନ ନକରି ବିଶ୍ୱାସ ଘାତକତା କରିଛନ୍ତି ବୋଲି ଅଭିଯୋଗ କଲେ । ରାଜ-ପଦ ଜାରି ରଖିବା ସମ୍ପର୍କରେ ତାଙ୍କର ପ୍ରତିଶ୍ରୁତିକୁ ସେମାନେ ମନେ ପକାଇ ଦେଲେ । ପତ୍ରର ଅନୁବାଦ :-

ଆପଣଙ୍କର ଗତକାଲିର ପତ୍ର ମିଳିଛି ତଥା ନରସିଂହ ରାଓଙ୍କ ମାର୍ଫତରେ ଯେଉଁ ସୂଚନା ଦିଆଯାଇଥିଲା, ତାହା ଆମେ ଜାଣିପାରିଛୁଁ । କୌଣସିଥିରେ ରାଜ୍ୟର ହିତ ଚିନ୍ତା ଥିବାର ଜଣାଗଲା ନାହିଁ । ଆପଣ ଲେଖିଛନ୍ତି ଯେ, ଦୁର୍ଗର ସମସ୍ତ ଲୋକ ସରକାରଙ୍କ ପ୍ରତି ଆନୁଗତ୍ୟ ଦେଖାଇବା ନିମନ୍ତେ ବାହାରକୁ ଚାଲି ଆସନ୍ତୁ ଏବଂ ଏପରି ନକଲେ, ସେମାନେ ବଞ୍ଚି ପାରିବେ ନାହିଁ ବୋଲି ମଧ୍ୟ ଆପଣ ସୂଚାଇଛନ୍ତି ।

ଥାକରେଙ୍କ ଅବିମୃଶ୍ୟକାରିତାରୁ ଆଜି ଆମର ଏହି ଦଶା ହୋଇଛି । ଆମର ଦୃଢ଼ ଆଶା ଥିଲା

ଯେ, ଆପଣଙ୍କ ହସ୍ତକ୍ଷେପରେ ଆମେ ଆମର ହୃତ ସମ୍ମାନ ଫେରିପାଇବୁ । ମାତ୍ର ଆପଣ ଆମକୁ ନିରାଶ କରିଛନ୍ତି । ଦୁଇ ବନ୍ଦୀଙ୍କୁ ମୁକ୍ତିଦେଲେ ଯୁଦ୍ଧ ହେବନାହିଁ ବୋଲି ଆପଣ ଲେଖିଥିଲେ । ତାହା ଉପରେ ବିଶ୍ୱାସ କରି ଆମେ ସେମାନଙ୍କୁ ଛାଡ଼ି ଦେଲୁ । ତଥାପି ଆପଣଙ୍କର ବାହିନୀ ଆଗେଇ ଚାଲିଲେ, ତଥା ଆମ ଉପରେ ତୋପ ଚଳାଇବା ନିମନ୍ତେ ତୋପକୁ ପ୍ରସ୍ତୁତ କରି ରଖାଗଲା । ସେତେବେଳେ ଆମର ରକ୍ଷୀବାହିନୀ ବାହାରକୁ ଗଲେ ଏବଂ ସେମାନଙ୍କ ଉପରେ ଚାରିଥର ଗୁଳି ଚଳାଗଲା । ବାଧହୋଇ ଆମେ ଦୁଇଥର ତୋପ ଚଳାଇଲୁ । ଆପଣ ଆମ ଉପରେ ପ୍ରଥମେ ଆକ୍ରମଣ କରିବା ପର୍ଯ୍ୟନ୍ତ ଆମେ ଆଦୌ ଆକ୍ରମଣ କରିନଥିଲୁ ।

ଆପଣ ଦୁର୍ଗ ଖାଲି କରିଦେବା ନିମନ୍ତେ କହୁଛନ୍ତି । ଆପଣ ଆମର ଗୁରୁଜନ । ଆମର ଏଭଳି ଅବସ୍ଥା ହେବ ବୋଲି ଆମେ ସ୍ୱପ୍ନରେ ସୁଦ୍ଧା ଭାବିନଥିଲୁ । ଆପଣ ଲେଖିଛନ୍ତି, ଯଦି ଆମେ ଆତ୍ମସମର୍ପଣ ନକରୁ ଏବଂ ଆଜି 10 ଟା ସୁଦ୍ଧା ନିଜକୁ ସରକାରଙ୍କର ଅନୁଗତ ପ୍ରଜା ରୂପେ ଘୋଷିତ ନକରୁ, ତେବେ ଆପଣ ଆମ ଉପରେ ଆକ୍ରମଣ ଚଳାଇବେ । ଆପଣ ପ୍ରଥମରୁ କହିଥିଲେ ଯେ ଯୁଦ୍ଧ ହେବନାହିଁ ଏବଂ ଥାକରେଙ୍କ କାର୍ଯ୍ୟ ସମ୍ପର୍କରେ ଅନୁସନ୍ଧାନ ହେବ ଜାଣି ଆମେ ସନ୍ତୁଷ୍ଟ ଥିଲୁ । ରାଜ୍ୟ ସ୍ଥାୟୀ ଭାବରେ ଆମ ନିକଟରେ ରହିବ ବୋଲି ଆମର ବିଶ୍ୱାସ ଥିଲା । ଆପଣଙ୍କ ଶେଷପତ୍ରରେ ଏଭଳି କୌଣସି ଉଦ୍ୟମ ହେଉଥିବାର ସୂଚନା ନଦେଖି ଆମେ ନିରାଶ ହୋଇଛୁ । ଆଜି ଆପଣ ଚାହୁଁଛନ୍ତି ଯେ ଆମେ ବ୍ରିଟିଶ୍ ସରକାରଙ୍କ ପ୍ରତି ଆମର ଆନୁଗତ୍ୟ ଘୋଷଣା କରୁଁ । ଆମେ ଜେନେରାଲ୍ ୱେଲେସଲିଙ୍କୁ ନିଜର ଅସ୍ତ୍ରଶସ୍ତ୍ରଦ୍ୱାରା ସାହାଯ୍ୟ କରିଥିଲୁଁ । ବେଲଗାଁଓର ଗଭର୍ଣ୍ଣର ମେଜର ଜେନେରାଲ ମୁନରୋଙ୍କ ସହିତ ଆମେ ବନ୍ଧୁତ୍ୱ ପୂର୍ଣ୍ଣ ବ୍ୟବହାର କରିଥିଲୁଁ ଏବଂ ସେଥିରେ ସନ୍ତୁଷ୍ଟ ହୋଇ ସେ ଆମ ରାଜବଂଶ ପୁରୁଷ ପୁରୁଷ ଧରି ଚାଲିବ ବୋଲି ଆମକୁ ସନନ୍ଦ ଦେଇଥିଲେ । ଆପଣଙ୍କ ଅନୁଗ୍ରହରୁ ସେଇ ସନନ୍ଦ ଆଜି ପର୍ଯ୍ୟନ୍ତ ମଧ୍ୟ ଲାଗୁ ରହିଛି । ଏସବୁ ବିଷୟ ଅନୁସନ୍ଧାନ ନକରି ଆପଣ ଆମ ଉପରେ ଆକ୍ରମଣ ଚଳାଇବେ ବୋଲି ଲେଖିଛନ୍ତି, ତା'ର ଉତ୍ତର ଆମେ କେଉଁ ଭାଷାରେ ଦେବୁ ? ଆପଣ ଆଜି ଶ୍ରେଷ୍ଠର ଆସନରେ ଉପବିଷ୍ଟ । ସେଇଠୁ ଆପଣ ଆମକୁ ତଥା ଆମର 1,000 ଆଶ୍ରିତଙ୍କୁ ସାହାଯ୍ୟ କରିପାରନ୍ତି । ଏଭଳି କଲେ ଆପଣଙ୍କ ସମ୍ମାନ ବୃଦ୍ଧି ପାଇବ । ଆମେ ଯୁଦ୍ଧ ଚାହୁଁନା ବୋଲି ଆପଣଙ୍କୁ ଜଣାଇ ଦେଇଛୁ । ଆପଣ ଆମର ଏହି ମନୋଭାବକୁ ନବୁଝି ଶତ୍ରୁତା ପୂର୍ଣ୍ଣ ମନୋବୃତ୍ତି ପ୍ରକାଶ କରୁଛନ୍ତି । ଆମକୁ ଯେଉଁ ସମୟ ଦିଆ ଯାଇଛି ସେତକ ସରିଯିବା ପରେ ଆମ ପାଖରେ କି ପ୍ରତିକାର ଅଛି ?

ଆଶା କରୁଛୁଁ ରାଜ୍ୟ ପ୍ରତି ଆପଣଙ୍କର କୃପା ଦୃଷ୍ଟି ବଳବତ୍ତର ରହିବ ।

ଚାପ୍‌ଲିନ୍ ଏହି ପତ୍ରକୁ ଆଦୌ ଗୁରୁତ୍ୱ ଦେଲେ ନାହିଁ । ସେ ନିଜର ମତ ସ୍ଥିର କରିସାରିଥିଲେ ଏବଂ ତହିଁରେ ଅଟଳ ରହିଲେ । ସେ ଡିସେମ୍ବର ତିନି ତାରିଖ ଏଗାରଟା ପର୍ଯ୍ୟନ୍ତ ପ୍ରତୀକ୍ଷା କରି କର୍ଣ୍ଣେଲ୍ ଡେକାନ୍‌ଙ୍କୁ ଆଦେଶ ଦେଲେ, ଯେତେବେଳ ପର୍ଯ୍ୟନ୍ତ କିତ୍ତୁର ସୈନ୍ୟ ଆତ୍ମସମର୍ପଣ କରି ନାହାନ୍ତି, ଏବଂ କିତ୍ତୁର ଅଧିକୃତ ହୋଇନାହିଁ, ସେତେବେଳ ଯାଏ, ଅଭିଯାନ ଚାଲୁଥାଉ । ସେଇଦିନ ସେ କିତ୍ତୁର ଅଧିବାସୀମାନଙ୍କୁ ଭୟଭୀତ କରିବା ପାଇଁ ସାମରିକ ଆଇନ୍ ମଧ୍ୟ ଜାରି କରିଦେଲେ ।

ଯେତେବେଳେ ପୂର୍ବୋକ୍ତ ପତ୍ର ଲେଖାଯାଉଥିଲା, ସେତେବେଳେ ତାଙ୍କୁ ଦୁର୍ଗରୁ ଉତ୍ତର ମିଳିଲା କି ଉପସ୍ଥାପିତ ସର୍ତ୍ତ ସ୍ୱୀକାର୍ଯ୍ୟ ନୁହେଁ । ସେ ପତ୍ର ସହିତ ସେଇ ସୂଚନାର ଅନୁବାଦ ମଧ୍ୟ ପଠାଇ ଦେଲେ । ପତ୍ରରେ ଆଦେଶ ଦିଆଯାଇଥିଲା ।

ସରକାର ନିଷ୍ପତ୍ତି କରିଛନ୍ତି ଯେ, ଯଦି ପ୍ରୟୋଜନ ହୁଏ, ତେବେ ଦକ୍ଷିଣୀ ମରାଠାପ୍ରଦେଶର

ଯେକୌଣସିଠାରେ ସାମରିକ ଆଇନ୍ ଜାରି କରାଯିବ । ମୁଁ ଭାବୁଛି ସେଇ ସମୟ ଆସିଯାଇଛି । ମୁଁ ଶୀଘ୍ର ଏ ସମ୍ପର୍କରେ ଘୋଷଣା କରିବି । ଏହି ଦଲୀଲ ଦ୍ୱାରା, ଆପଣ ବ୍ରିଟିଶ୍ ସରକାରଙ୍କର ଅନନୁଗତ ଯେକୌଣସି ବ୍ୟକ୍ତି ବିରୁଦ୍ଧରେ କୋର୍ଟ ମାର୍ଶଲଙ୍କ ଇଜଲାସରେ ମକଦ୍ଦମା କରିପାରିବେ ବୋଲି ଆପଣଙ୍କୁ ଅଧିକାର ଦିଆଯାଉଛି । ଯେଉଁମାନେ ଖୋଲାଖୋଲି ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କରିବେ, ରାଜ୍ୟ ବାହାରେ ବା ଭିତରେ ସରକାରୀ-ଶତ୍ରୁମାନଙ୍କୁ ସାହାଯ୍ୟ ଦେବେ କିମ୍ବା ଅସ୍ତ୍ର ଉତ୍ତୋଳନ ନିମନ୍ତେ ଉତ୍ତେଜିତ କରିବେ, ସେମାନେ ସମସ୍ତେ ପୂର୍ବୋକ୍ତ ଉପାୟରେ ଦଣ୍ଡନୀୟ ।

ବନ୍ଧୁତ୍ୱ-ପୂର୍ଣ୍ଣ ମିଳାମିଶାର ସମସ୍ତ ଆୟୋଜନ ବ୍ୟର୍ଥ ହେବାପରେ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହେବାକୁ ରାଣୀ ସ୍ଥିର କଲେ । କୋହ୍ଲାପୁର ସେନା ସେମାନଙ୍କ ସହାୟତା ନିମନ୍ତେ ଆସୁଛନ୍ତି କିମ୍ବା ନାହିଁ ଏହା ଅନୁଧ୍ୟାନ କରିବାକୁ ମଧ୍ୟ ଠିକ୍ ହେଲା । ତାହାପରେ ସେ ନିଜର ସର୍ଦ୍ଦାରମାନଙ୍କୁ ଡକାଇ ସେମାନଙ୍କୁ ଉତ୍ସାହିତ କଲେ । ଅନୁଗତ ସର୍ଦ୍ଦାର ତଥା ସୈନିକ ବୃନ୍ଦ ଶପଥ ଗ୍ରହଣ ପୂର୍ବକ ରାଣୀଙ୍କୁ ପ୍ରତିଶ୍ରୁତି ଦେଲେ ଯେ, ସେମାନେ ସମ୍ମାନନୀୟା ରାଣୀ ତଥା କିତ୍ତୁରର ସ୍ୱାଧୀନତା ନିମନ୍ତେ ନିଜ ଶରୀରର ଶେଷ ରକ୍ତ ବିନ୍ଦୁଦେଇ ସଂଗ୍ରାମ କରିବେ । ସେମାନେ ନିଜର ସ୍ଥାନ ଅଧିକାର କରିବାକୁ ଫେରିଗଲେ ।

ଏ ମଧ୍ୟରେ ବ୍ରିଟିଶ୍ ସେନାର ଗୋଟିଏ ଦଳ କେମ୍ପନମରଡୀର ପଶ୍ଚିମଦିଗ ଆଡ଼କୁ ଅଗ୍ରସର ହୋଇସାରିଥିଲା । ସେଠାରେ ରାଣୀଙ୍କର କଡ଼ା ପହରା ଥିଲା । ବ୍ରିଟିଶ୍ ସୈନ୍ୟଙ୍କର ସଂଖ୍ୟା 25.000 ରୁ ମଧ୍ୟ ଅଧିକ ଥିଲା । କିଛି ସୈନ୍ୟକୁ ରାଣୀ ଗଟ୍ଟୀ ପୁଷ୍କରଣୀ ବାଟେ ଉତ୍ତରକୁ ତଥା ଅନ୍ୟ କେତେକଙ୍କୁ ଦକ୍ଷିଣରେ ତୁମ୍ବୀକେରୀ ଆଡ଼କୁ ପଠାଇ କେମ୍ପନମରଡୀର ଚାରିପଟରୁ ଅବରୋଧ କରିଦିଆଗଲା । ତିନି ତରଫରୁ ଦୁର୍ଗ ଉପରେ ଆକ୍ରମଣ ଚାଲିଲା । କର୍ଣ୍ଣେଲ ଡେକାନ୍, କର୍ଣ୍ଣେଲ୍ ବାକର, ଲେ. କର୍ଣ୍ଣେଲ ମାକଲଏଡ଼, ଲେ. କର୍ଣ୍ଣେଲ ମୁନରୋ ଏବଂ ଲେ. ଟ୍ରିନସନ ପ୍ରଭୃତିଙ୍କ ସହାୟତାରେ ବ୍ରିଟିଶ ବାହିନୀର ନେତୃତ୍ୱ ଗ୍ରହଣ କଲେ । କିତ୍ତୁର ସେନାର ସଂଚାଳନ ଆବରଦୀ ବୀରପ୍ପା, ଗୋଲନ୍ଦାଜ ହିମ୍ମତ ସିଂହ, ନରସିଂହ ରାଓ, ଗୁରୁପୁତ୍ରପ୍ପା, ଅପନ୍ନା ଦେଶଗାବ, ସଂଗୋଲୀ ରାୟଣା, ବିଚାରୁଟ୍ଟୀ ଚନେପ୍ପା, ଗଜବୀର ତଥା ଗୁରୁ ସିଦ୍ଧପ୍ପା ପ୍ରଭୃତି କରୁଥିଲେ । ଏମାନେ ସମସ୍ତେ କିତ୍ତୁରର ପ୍ରସିଦ୍ଧ ଯୋଦ୍ଧା ଥିଲେ ।

ଡିସେମ୍ବର ତିନି ତାରିଖ ଦିନସାରା ଗୁଳି ବର୍ଷଣ ଚାଲିଲା । ବିଦ୍ରୋହୀମାନଙ୍କୁ ଧରିବା ନିମନ୍ତେ କେମ୍ପନ ମରଡୀ ଅବରୋଧ କରିବା ପ୍ରୟୋଜନ ହୋଇ ପଡ଼ିଲା ବୋଲି ସରକାର ପକ୍ଷରୁ କୁହାଗଲା । ଇଂରେଜମାନଙ୍କର ବିଶାଳ ସୈନ୍ୟବାହିନୀ କିତ୍ତୁରର ଦେଶପ୍ରେମୀ ଯୋଦ୍ଧାମାନଙ୍କ ନିକଟରେ ନିତାନ୍ତ ତୁଚ୍ଛ ଥିଲେ । ସେମାନେ ସଂଖ୍ୟାନ୍ୟୂନ ଥିଲେ, ସେମାନଙ୍କ ନିକଟରେ ଉନ୍ନତ ଅସ୍ତ୍ରଶସ୍ତ୍ର ନଥିଲା ସତ୍ୟ, ମାତ୍ର ମାତୃଭୂମି ନିମନ୍ତେ ଗଭୀର ପ୍ରେମ କିତ୍ତୁରର ଯୋଦ୍ଧାମାନଙ୍କୁ ଅପୂର୍ବ ଶକ୍ତି ଓ ସାହସ ଯୋଗାଇ ଦେଇଥିଲା । ସବୁଥର ଭଳି ଏଥର ମଧ୍ୟ ସେମାନେ ବୀରତ୍ୱର ସହିତ ଯୁଦ୍ଧ କରିବାକୁ ଲାଗିଲେ । ସେମାନଙ୍କର ସାହସ ଏଭଳି ଦୁର୍ଦ୍ଦମନୀୟ ଥିଲା ଯେ, ମୃତ୍ୟୁ ପୂର୍ବରୁ ସେମାନେ ପ୍ରତ୍ୟେକେ ଅନେକ ଇଂରେଜ ସୈନ୍ୟଙ୍କୁ ହତ୍ୟା କଲେ । ରାଣୀଙ୍କର ଧୀର ଗମ୍ଭୀର ବାଣୀ ଏବେ ମଧ୍ୟ ସେମାନଙ୍କ କର୍ଣ୍ଣ ପଟହରେ ନିନାଦିତ ହେଉଥିଲା । ସେମାନେ ହତାଶ ହୋଇ ଇଂରେଜ ସୈନ୍ୟଙ୍କ ଉପରକୁ ଲମ୍ଫଦେଇ ନାରକୀୟ କାଣ୍ଡ ସୃଷ୍ଟିକଲେ । ଉଭୟ ପକ୍ଷର ଅନେକ ମୃତାହତଙ୍କ ଦ୍ୱାରା କେମ୍ପନମରଡୀ ଯୁଦ୍ଧଭୂମି ପୂର୍ଣ୍ଣ ହୋଇଗଲା । ଡିସେମ୍ବର ତିନି ତାରିଖ ରାତି ସୁଦ୍ଧା କେମ୍ପନମରଡୀ ଦୁର୍ଗ ବୁରୁଜର ଆକାର ମାତ୍ର ବାକିରହିଲା । କିଛି ଜୀବିତ ସୈନିକ କିତ୍ତୁର ଦୁର୍ଗ ଆଡ଼େ ପୂର୍ବଦିଗରେ ଗାଞ୍ଜମରଡୀଠାରୁ ପୂର୍ବଆଡ଼େ ଲେଉଟିଗଲେ । ଚାରି ତାରିଖ ସକାଳେ ସରକାରୀ ସୈନ୍ୟ ଗାଞ୍ଜମରଡୀ ଆକ୍ରମଣ କଲେ । କିତ୍ତୁର

ଯୋଦ୍ଧାମାନଙ୍କ ସହିତ ସେଠାରେ ସେମାନଙ୍କର ଭୀଷଣ ସଂଗ୍ରାମ ହେଲା । ସର୍ଦ୍ଦାର ଗୁରୁ ସିଦ୍ଧପ୍ପା ଗାଞ୍ଜମରଡୀର ଦୁର୍ଗ ପ୍ରାଚୀର ଉପରୁ ସୈନ୍ୟ ପରିଚାଳନା କରୁଥିଲେ । ଦୁର୍ଗ ମଧ୍ୟରେ ରାଣୀ ଚେନ୍ନାମ୍ମା ନିଜ ସେନାଙ୍କୁ ଧରି ପରବର୍ତ୍ତୀ ଆକ୍ରମଣ ନିମନ୍ତେ ସେମାନଙ୍କୁ ପ୍ରସ୍ତୁତ କରୁଥିଲେ । ଚାରି ତାରିଖ ସକାଳସାରା କିତ୍ତୁର-ସୈନିକ ଗାଞ୍ଜମରଡୀକୁ ରକ୍ଷା କରିବା ନିମନ୍ତେ ଉଦ୍ୟମ ଚଳାଇଗଲେ । ମାତ୍ର ଶୀଘ୍ର ପରାଜିତ ହୋଇଗଲେ । କିତ୍ତୁରର ଅଧିକାଂଶ ସୈନିକ ଶହୀଦ୍ ହେଲେ । ଯେଉଁ କେତେକ ବଂଚିଲେ, ସେମାନେ ହୃଦୟରେ ଶେଷ ଆଶା ପୋଷଣ କରି ଦୁର୍ଗ ମଧ୍ୟକୁ ଫେରିଗଲେ ।

ଶତ୍ରୁ ସଂହାର କରି ସାରିବା ପରେ କର୍ଣ୍ଣେଲ ଡେକାନ୍ ନିଜ ସୈନିକଙ୍କୁ ଦୁର୍ଗ ଆଡ଼କୁ ଅଗ୍ରସର ହେବାକୁ ତଥା ବିଧ୍ୱଂସକ ଗାଡ଼ିକୁ ଚାଲୁକରିବାକୁ ଆଦେଶ ଦେଲେ । ଗାଡ଼ିକୁ ଦୁର୍ଗର ମୁଖ୍ୟ ପ୍ରବେଶ ଦ୍ୱାର ପର୍ଯ୍ୟନ୍ତ ନିଆଗଲା । ଦିନସାରା ଦୁର୍ଗ ଉପରେ ଭାରି ଗୋଳା ବର୍ଷଣ ଚାଲିଲା ଉଭୟ ତରଫରୁ ତୋପ ଚାଲିଲା । ଯେତେବେଳେ କିତ୍ତୁର ସୈନ୍ୟ ଦୁର୍ଗ ରକ୍ଷା କରିବା ନିମନ୍ତେ ଉଦ୍ୟମ କରୁଥିଲେ, ସୈନ୍ୟଦଳରେ କେତେକ ବିଶ୍ୱାସ ଘାତକ ମଧ୍ୟ ଥିଲେ । ବାରୁଦରେ ଭେଜାଲ୍ ମିଶାଇ ଦିଆଗଲା ଏବଂ ସେଗୁଡ଼ିକ ବେକାର ହୋଇଗଲା । ଶେଷ ସମୟ ପାଖେଇ ଆସୁଥିଲା । ବାହାରୁ ସାହାଯ୍ୟ ପାଇବେ ବୋଲି ରାଣୀ ଯେଉଁ ଆଶା କରିଥିଲେ, ତାହା ଛିନ୍ନଭିନ୍ନ ହୋଇ ଯାଇଥିଲା । କୋହ୍ଲାପୁରର ଛତ୍ରପତି ସମୟ ଗଡାଉ ଥିଲେ ଏବଂ ସେ କୌଣସି ନିଷ୍ପତ୍ତିରେ ପହଞ୍ଚିବା ପୂର୍ବରୁ ହିଁ ଇଂରେଜସେନା କିତ୍ତୁରକୁ ପରାଜିତ କଲା । ରାଣୀ ଚେନ୍ନାମ୍ମା ଆଶାର କୌଣସି ଝଲକ ଦେଖିବାକୁ ପାଉନଥିଲେ । ଯୁଦ୍ଧରେ ମୃତ୍ୟୁ ବରଣ କରିଥିଲେ ସେ ଆନନ୍ଦିତା ହୋଇ ଥାଆନ୍ତେ, ମାତ୍ର ମୃତ୍ୟୁ ତାଙ୍କୁ ସ୍ପର୍ଶ ମଧ୍ୟ କଲାନାହିଁ । କିତ୍ତୁରର ଗମ୍ଭୀରନାଦୀ ତୋପ ନିଜ ଲୋକଙ୍କର ବିଶ୍ୱାସଘାତକତାରେ ଶୀତଳ ହୋଇଗଲା । କିନ୍ତୁ ଦେଶଦ୍ରୋହୀମାନେ ରକ୍ଷା ପାଇ ପାରିଲେ ନାହିଁ । ସର୍ଦ୍ଦାରମାନେ କଲ୍ଲୁର ବୀରସଂଗାପ୍ପା ତଥା ହୁରାକଡଲୀ ମଲ୍ଲପ୍ପା ନାମଧେୟ ଦୁଇଜଣ ବିଶ୍ୱାସଘାତକଙ୍କୁ ଖୋଜି ବାହାର କରି ସେମାନଙ୍କୁ ହାତୀ ପାଦରେ ଦଳାଇ ଦେଲେ ।

କିତ୍ତୁର ସୈନ୍ୟ ପୂର୍ଣ୍ଣ ପ୍ରାଣରେ ସଂଗ୍ରାମ ଚଳାଇଗଲେ । ଡିସେମ୍ବର ଚାରି ତାରିଖର ବିଳମ୍ବିତ ରାତିରେ ଦୁର୍ଗ ଭାଙ୍ଗି ପଡ଼ିଲା ଏବଂ ଇଂରେଜମାନେ ଭିତରକୁ ପ୍ରବେଶ କଲେ । ଭିତରେ କିଛି ସୈନିକ ଏମାନଙ୍କୁ ବାଧାଦେବାପାଇଁ ଚେଷ୍ଟା କରି ଶୀଘ୍ର ପରାଜିତ ହୋଇଗଲେ । କେତେକଙ୍କୁ ବନ୍ଦୀ କରାଗଲା, କେତେକ ପଳାଇଗଲେ । ଅଧିକାଂଶ କିନ୍ତୁ ମାତୃଭୂମିର ସ୍ୱାଧୀନତା ନିମନ୍ତେ ଯୁଦ୍ଧ କରୁ କରୁ ପ୍ରାଣ ବିସର୍ଜନ କଲେ । ପାଞ୍ଚ ତାରିଖ ଭୋର ସମୟରେ ଦୁର୍ଗ ଇଂରେଜମାନଙ୍କ ଅଧିକାରକୁ ଆସିଗଲା । ହଜାର ହଜାର ହାଣ ଖାଇଲେ । ଅନେକ ଇଂରେଜ ପକ୍ଷୀୟ ସୈନିକ ମଧ୍ୟ ମୃତ୍ୟୁ ବରଣ କଲେ । କାର୍ଯ୍ୟକାରୀ କଲେକ୍ଟର ମୁନରୋ ଗୁରୁତର ଭାବରେ ଆହତ ହେବାରୁ ତାଙ୍କୁ ଧାରବାର ନିଆଗଲା ଏବଂ ସେଠାରେ ଡିସେମ୍ବର ଏଗାର ତାରିଖରେ ତାଙ୍କର ମୃତ୍ୟୁ ହେଲା ।

କିତ୍ତୁରକୁ ରକ୍ଷା କରିବା ନିମନ୍ତେ ସମସ୍ତ ପ୍ରକାର ଉଦ୍ୟମ ବ୍ୟର୍ଥ ହୋଇ ଯିବାରୁ ତଥା ସୈନ୍ୟବାହିନୀ ପରାସ୍ତ ହୋଇଯିବାରୁ ଦୁର୍ଗର କେତେକ ସର୍ଦ୍ଦାର ପଳାଇଗଲେ । ଏମାନଙ୍କ ମଧ୍ୟରେ ଆବରଦୀ ବୀରପ୍ପା, କିକେରୀ ବେଙ୍କନ୍ନା ତଥା କୁମ୍ଭା ଇନାମ ପ୍ରଭୃତି ଅନ୍ତର୍ଭୁକ୍ତ । ସେମାନେ ଶମସେରଗଡ଼ର ପଶ୍ଚିମ ଦିଗସ୍ଥ ଅରଣ୍ୟରେ ଆତ୍ମ ଗୋପନ କଲେ । ଲୁଚିଥିବା ଅବସ୍ଥାରେ ଯେଉଁମାନେ ତଥାପି ଜୀବିତ ରହିଲେ, ସେମାନଙ୍କୁ ଆତ୍ମସମର୍ପଣ ନିମନ୍ତେ ବାଧ୍ୟ କରାଗଲା । ଏମାନଙ୍କ ମଧ୍ୟରେ ଗୁରୁ ସିଦ୍ଧପ୍ପା ତଥା ସଙ୍ଗୋଲୀ ରାୟଣ୍ଣ ଥିଲେ । ଲୁଣ୍ଠନକାରୀ ବ୍ରିଟିଶ୍‌ମାନଙ୍କର ଅପର୍ଯ୍ୟାପ୍ତ ଧନରାଶି ହିଁ

ଏଠାରେ କାମଦେଖାଇଲା । ସର୍ଦ୍ଦାରମାନେ ବହୁତ ଅନୁନୟ ବିନୟ କରିବାପରେ ରାଣୀ ଚେନ୍ନାମ୍ମା ନିଜର ପୁତ୍ରବଧୂ ବୀରଶ୍ମା ତଥା ଜାନକୀ ଦେବୀଙ୍କୁ ନେଇ ଦୁର୍ଗର ଉତ୍ତର ପୂର୍ବ ଦ୍ୱାରବାଟେ ସଂଗୋଲ୍ଲୀ ଆଡ଼କୁ ଚାଲିଯିବା ନିମନ୍ତେ ଚେଷ୍ଟାକଲେ । ମାତ୍ର ବ୍ରିଟିଶ୍ ସୈନ୍ୟମାନେ ସେମାନଙ୍କୁ ବନ୍ଦୀ କଲେ । ଏହି ବିଜୟ ନିମନ୍ତେ ଚାପଲିନ୍ ସ୍ୱାଭାବିକ ଭାବରେ ଅତ୍ୟନ୍ତ ଖୁସିଥିଲେ । ସେଇଦିନ ନ୍ୟୁହମ୍‌ଙ୍କୁ ଏକ ବିସ୍ତୃତ ପତ୍ର ଲେଖି ସେ ଘଟଣାର ବିସ୍ତୃତ ବିବରଣ ଜଣାଇଲେ । ସେ ଲେଖିଲେ, '' ଗତକାଲି ଡ଼ାକରେ ମୁଁ କିତ୍ତୁରର ଆତ୍ମ ସମର୍ପଣ ବିଷୟରେ ସୂଚନା ଦେଇଛି । ଗଭର୍ଣ୍ଣରଙ୍କ ଗୋଚରାର୍ଥେ ଜଣାଉଛି ଯେ, ଗତକାଲି କର୍ଣ୍ଣେଲ ଡ଼େକାନ୍ ଆତ୍ମ ସମର୍ପଣ ନିମନ୍ତେ କଠିନ ଉଦ୍ୟମ କଲେ, ମାତ୍ର ବିଦ୍ରୋହୀମାନେ ତାହାର ପ୍ରବଳ ପ୍ରତିରୋଧ କଲେ । ପ୍ରାଣ ରକ୍ଷା ସର୍ତ୍ତରେ ଅବଶେଷରେ ରାତିରେ ବିଦ୍ରୋହୀ ସର୍ଦ୍ଦାରମାନେ ଆତ୍ମସମର୍ପଣ କଲେ, ଅବଶିଷ୍ଟ ସୈନିକ, ଯେଉଁମାନେ ପ୍ରଥମରୁ ପଳାଇ ନଥିଲେ, ପ୍ରବଳ ଆକ୍ରମଣରେ ହତାଶ ହୋଇ ଆଜି ସକାଳେ ଅସ୍ତ୍ର ତ୍ୟାଗ କରିବା ନିମନ୍ତେ ରାଜି ହୋଇଗଲେ । ପରିଣାମରେ ଆଜି ସକାଳ ପ୍ରାୟ ୪ଟା ବେଳେ ଆମ ସୈନ୍ୟମାନେ ଦୁର୍ଗର ତଳ ଏବଂ ଉପର ଅଂଶକୁ ଅଧିକାର କରିଛନ୍ତି । ଯେଉଁ ସର୍ଦ୍ଦାରମାନେ ଆତ୍ମସମର୍ପଣ କରିଛନ୍ତି, ସେମାନଙ୍କ ନାମ ପାଖରେ ଲେଖାଯାଇଛି । ଅନୁମାନ କରାଯାଉଛି ଯେ, ଯେଉଁ ସୈନ୍ୟମାନେ ପଳାଇ ଯାଇଛନ୍ତି, ଆବରଦୀ ବୀରପ୍ପା ହେଉଛନ୍ତି ସେମାନଙ୍କର ସର୍ଦ୍ଦାର । ଯୁଦ୍ଧ ସମୟରେ ସେଇଥିଲେ ସୈନ୍ୟମାନଙ୍କର ନେତା । ପ୍ରଥମରୁ ଉତ୍ପୀଡ଼ନ ନିମନ୍ତେ ତାଙ୍କୁ ଅଭିଯୁକ୍ତ କରାଯାଇପାରେ ବୋଲି, ତାଙ୍କର ଆଶଙ୍କା ଥିଲା । ସେ ସର୍ବଦା ସରକାରଙ୍କର ବିରୋଧୀ ଥିଲେ । ଅନୁମାନ କରାଯାଉଛି ଯେ ସେ ମୁନ୍‌ସୀମାନଙ୍କର ନେତା କିକେରୀ ବେଙ୍କନ୍ ତଥା ଗୋବିନ୍ଦାୟା, ନାରାୟଣ ଏବଂ ଯଶବନ୍ତ ନାମକ ତିନିଜଣ ଗୁମାସ୍ତାଙ୍କୁ ନେଇ ସମଶେର ଗଡ଼ ଆଡ଼କୁ ଚାଲି ଯାଇଛନ୍ତି । କୁହାଯାଉଛି ଯେ, ଦେବଗାଁଓର ବିଦେଶୀ ନେତା କୁମ୍ଭାଇମାମ୍ ମଧ ସେଇ ଆଡ଼କୁ ପଳାଇଛି । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ଧରିବା ନିମନ୍ତେ ମୁଁ ପୁରସ୍କାର ଘୋଷଣା କରିଦେଇଛି । ଅନୁମାନ କରାଯାଉଛି, ଅଧିକ ଖୋଜାଖୋଜି କଲେ ଆତ୍ମଗୋପନକାରୀ ଘାଟୀ ପାରି ହୋଇ ଗୋଆ ରାଜ୍ୟରେ ପ୍ରବେଶ କରିପାରନ୍ତି । ସମଶେରଗଡ଼କୁ ରକ୍ଷା କରିବା ନିମନ୍ତେ ସେମାନେ ଉଦ୍ୟମ କରିବେ ବୋଲି ମୁଁ ଭାବୁନାହିଁ । ତାକୁ ଅଧିକାର କରିବାକୁ ଦଳେ ସୈନ୍ୟ ପଠାଇବା ନିମନ୍ତେ ମୁଁ କର୍ଣ୍ଣେଲ ଡେକାନ୍‌ଙ୍କୁ ଅନୁରୋଧ ଜଣାଇଛି ।

ମୋର ପରାମର୍ଶରେ କର୍ଣ୍ଣେଲ ଡେକାନ୍ ରାଜ-ପରିବାରର ମହିଳାମାନଙ୍କର ନିରାପତ୍ତାର ବ୍ୟବସ୍ଥା କରିଛନ୍ତି । ମୋର ଇଚ୍ଛା ଯେ, ସେଇସବୁ ମହିଳମାନଙ୍କର ଭରଣ ପୋଷଣ ନିମନ୍ତେ ଉପଯୁକ୍ତ ଭତ୍ତା ଦିଆଯିବା ପାଇଁ ସୁପାରିଶ୍ କରାଯାଉ । ଯେଉଁ ସମ୍ପତ୍ତି ଏବଂ ଧନରାଶି ଆମେ ଅଧିକାର କରିଛୁ । ମୋ ଅନୁମାନରେ ତାହାର ପରିମାଣ ବିପୁଳ । ତାହାର ତାଲିକା ପ୍ରସ୍ତୁତ କରିବା ନିମନ୍ତେ ସମ୍ପୃକ୍ତ କର୍ମଚାରୀ ବୃନ୍ଦ ଗୋଟିଏ ସମିତି ନିଯୁକ୍ତ କରିଛନ୍ତି । ମୋତେ ସୂଚନା ମିଳିଛି ଯେ, ଥାକରେ ଯାହାକୁ ଜଉମୁଦ ଦେଇଥିଲେ, ବିଦ୍ରୋହୀମାନେ ସେଥିରୁ ଖୁବ୍ ଅଳ୍ପ ବାହାର କରିନେଇଛନ୍ତି । ଷ୍ଟିଭେନ୍‌ସନ୍‌ଙ୍କୁ ଅନୁରୋଧ କରାଯାଇଛି ଯେ, ସ୍ୱର୍ଗୀୟ ଥାକରେ କିତ୍ତୁର ରାଜ୍ୟ ଶାସନ ସମ୍ପର୍କରେ ଯେଉଁ ନିର୍ଦ୍ଦେଶ ଦେଇଥିଲେ, ତାହାକୁ ସେ କାର୍ଯ୍ୟକାରୀ କରାନ୍ତୁ । କିତ୍ତୁରର ମୁଖ୍ୟ ବିଦ୍ରୋହୀମାନଙ୍କୁ ବେଲଗାଁଓଠାରେ ବନ୍ଦୀ କରି ରଖିବାକୁ ମୋର ଇଚ୍ଛା । ସେମାନେ ଯେଉଁ ସର୍ତ୍ତରେ ଆତ୍ମ ସମର୍ପଣ କରିଥିଲେ, ତାହା ସରକାରଙ୍କ ଦ୍ୱାରା ଅନୁମୋଦିତ ହୋଇ ମୋର ହସ୍ତଗତ ହେବା ପର୍ଯ୍ୟନ୍ତ ସେମାନଙ୍କର ପ୍ରାଣରକ୍ଷା କରାଯାଉ । କିନ୍ତୁ ମାନନୀୟ ଗଭର୍ଣ୍ଣର ଏହି ବିଦ୍ରୋହ ନିମନ୍ତେ ସେମାନଙ୍କୁ ଯେଉଁ ଦଣ୍ଡ ଦେବେ, ତାହା

ସେମାନଙ୍କୁ ଭୋଗିବାକୁ ପଡ଼ିବ । ଏହି ବିଦ୍ରୋହରେ ସେମାନେ ଅପରାଧୋନ୍ମତ୍ତ ହୋଇ ଅଂଶ ଗ୍ରହଣ କରିଛନ୍ତି । ମାତ୍ର ସେମାନଙ୍କ ଆଗରେ ଅସାଧାରଣ ଉଦାର ପ୍ରସ୍ତାବ ରଖାଯାଇଥିଲା । ତଥାପି ସେମାନେ ପ୍ରତିରୋଧ ଛାଡ଼ି ଆନୁଗତ୍ୟ ପ୍ରଦର୍ଶନ କରିନାହାନ୍ତି ।

ଅଷ୍ଟମ ମାଡ୍ରାଜର କର୍ଣ୍ଣେଲ ବାକର୍ଙ୍କ ନିକଟରେ ମୋର କୃତଜ୍ଞତା ଆନନ୍ଦର ସହିତ ସ୍ୱୀକାର କରୁଛି । କାରଣ କର୍ଣ୍ଣେଲ ଡ଼େକାନ୍ ପହଞ୍ଚିବା ପୂର୍ବରୁ ସେ ବଡ଼ ତତ୍ପରତାର ସହିତ ମୋ ସହିତ ସହଯୋଗ କରିଥିଲେ । କର୍ଣ୍ଣେଲ ଡ଼େକାନ୍ଙ୍କ ନିକଟରେ ମଧ୍ୟ ମୁଁ ସମଭାବରେ ଋଣୀ, କାରଣ ଆଲୋଚନା ଚାଲିଥିବା ସମୟରେ ସେ ଆନ୍ତରିକ ଭାବରେ ମୋତେ ସାହାଯ୍ୟ କରିଥିଲେ । ଯେଉଁଭଳି ସୁବ୍ୟବସ୍ଥା ତଥା ସୁକୌଶଳରେ କର୍ଣ୍ଣେଲ୍ ଡ଼େକାନ୍ କିତ୍ତୁରର ସୁଦୃଢ଼ ଦୁର୍ଗକୁ ଉଡାଇ ଦେଲେ, ସେଥିରେ ତାଙ୍କର ପ୍ରଶଂସା କରିବାକୁ ମୁଁ ଭାଷା ପାଉନାହିଁ । ଦୁର୍ଗରକ୍ଷା ନିମନ୍ତେ ଅତ୍ୟନ୍ତ ଦୃଢ଼ ବ୍ୟବସ୍ଥା କରାଯାଇଥିଲା । ମୋର ବିଶ୍ୱାସ, ମାନନୀୟ ଗଭର୍ଣ୍ଣର ଏହାର ପ୍ରଚୁର ପ୍ରଶଂସା କରିବେ ।

ଚତୁର୍ଥ ମାଡ୍ରାଜ କାଭଲ୍‌ରୀର କର୍ଣ୍ଣେଲ୍ ମାକଲଏଡ୍‌ଙ୍କ ନେତୃତ୍ୱରେ, ଆମର ସୈନ୍ୟ ଯେଉଁ ଭଳି ପରାକ୍ରମ ସହକାରେ ଶତ୍ରୁର ଗଡ଼ଖାଇ ମଧ୍ୟରେ ଅବସ୍ଥିତ କାଞ୍ଚନମରଡ଼ୀ ଘାଟି ଆକ୍ରମଣ କଲେ ସେ ବିଷୟ ଯଥାଯଥ ଭାବରେ ସରକାରଙ୍କୁ ଜଣାଇ ଦିଆଯିବ । ମୁଁ ଏହି ଆକ୍ରମଣକୁ ନିକଟବର୍ତ୍ତି ଏକ ଉଚ୍ଚ ସ୍ଥାନରୁ ପର୍ଯ୍ୟବେକ୍ଷଣ କରି ଆତ୍ମହରା ହୋଇପଡ଼ିଥିଲି ।

ନିଜ ଦଳର କାପ୍ଟେନ୍ ସ୍ପିଲର୍ ତଥା ଜେମସନ୍‌ଙ୍କର ଉତ୍ସାହ ଏବଂ କର୍ମପ୍ରବଣତାର ପ୍ରଶଂସା ନକରି ମୁଁ ଏହି ପତ୍ରକୁ ଶେଷ କରିପାରୁନାହିଁ ।

ଏହିଭଳି ଆମ ଦେଶର ଗୋଟିଏ ଗୌରବ ପୂର୍ଣ୍ଣ ଅଧ୍ୟାୟର ପରିସମାପ୍ତି ହୋଇଗଲା କିତ୍ତୁର ଦୁର୍ଗର ବିସ୍ତୃତ ଉନ୍ମୁକ୍ତ ପ୍ରାଙ୍ଗଣ ସ୍ୱାଧୀନତା କାମୀ ବୀର ଶହୀଦ୍ ମାନଙ୍କ ଶବରେ ପୂର୍ଣ୍ଣହୋଇଥିଲା । ଡ଼ିସେମ୍ବର 25 ତାରିଖ ସକାଳେ (1824) ଏହି ଶବରାଶି ଉପରେ ତୋପ ଧୂଆଁ ଆଚ୍ଛାଦିତ ବିଶାଳ ଆକାଶ ତଳେ ୟୁନିୟନ୍ ଜାକ୍ ଉଡ଼ାଇ ଦିଆଗଲା । ବିଧ୍ୱସ୍ତ କିତ୍ତୁର 1 ଦୁର୍ଗର କୋଠାଉପରୁ ତାହା ଫର ଫର ହୋଇ ଉଡୁଥିଲା । ନିଶ୍ଚିତ ଭାବରେ ପ୍ରବଳ ପରାକ୍ରାନ୍ତ ବ୍ରିଟିଶ୍ ସରକାର ଏଇ କ୍ଷୁଦ୍ର କିଲ୍ଲାକୁ ପଶୁ ବଳ ସାହାଯ୍ୟରେ ଦଖଲ କରିନେଇଥିଲେ । କିତ୍ତୁର ଶୂନ୍ୟ ହୋଇଗଲା । ଦେଶ ପାଇଁ ତାହା ଥିଲା, ଅନ୍ଧକାରତମ ଦିବସ । ତେବେ ଏହି ମହାନ୍ ଯୁଦ୍ଧରେ ରାଣୀ ଚେନ୍ନାମ୍ମାଙ୍କ ନେତୃତ୍ୱ, ଦେଶପ୍ରୀତି, ସାହସ ତଥା ପରାକ୍ରମର କାହାଣୀ ଭବିଷ୍ୟତ୍ ବଂଶଧର ମାନଙ୍କ ନିମନ୍ତେ ଯୁଗ ଯୁଗ ଧରି ପ୍ରେରଣାର ଉତ୍ସ ହୋଇ ରହିଥିବ । ଦେଶ ପ୍ରେମର ଯେଉଁ ଦିବ୍ୟ ଜ୍ୟୋତି ରାଣୀ ଚେନ୍ନାମ୍ମା ସେଦିନ ପ୍ରଜ୍ୱଳିତ କରିଥିଲେ । ଏହି ପରାଜୟରେ ତାହା ଲିଭିନାହିଁ, ଅଳ୍ପ ସମୟ ପାଇଁ ମ୍ଳାନ ହୋଇଯାଇଥିଲା ମାତ୍ର ।

# ଯୁଦ୍ଧପରେ

କିତ୍ତୁର ପତନ ପରେ ପରେ ଚାପଲିନ୍ ଅବଶିଷ୍ଟ ଲୋକଙ୍କୁ ବନ୍ଦୀ କରିନେଲେ । ଏମାନଙ୍କ ମଧ୍ୟରେ ସର୍ଦ୍ଦାର ଗୁରୁ ସିଦ୍ଦପ୍ପା ତଥା ସଙ୍ଗୋଲ୍ଲୀ ରାୟଣ୍ଣଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଏହା ପରେ କମିଶନର ଷ୍ଟିଭେନ୍‌ସନ ପ୍ରମୁଖଙ୍କର ସହାୟତାରେ ରାଜପ୍ରାସାଦ ତଲାସ କରି ସମସ୍ତ ସମ୍ପତ୍ତି ଆତ୍ମସାତ୍ କଲେ । କୁହାଯାଉଛି ଯେ, ଇଂରେଜ ମାନେ 16 ଲକ୍ଷ ନଗଦ ଟଙ୍କା ତଥା 4 ଲକ୍ଷ ଟଙ୍କାର ଅଳଙ୍କାର ନେଇ ଯାଇଥିଲେ । କିତ୍ତୁର ସେନାବାହିନୀର 3,000 ଘୋଡ଼ା, 2,000 ଓଟ ଏବଂ ପ୍ରାୟ 1,00 ହାତୀ, ପ୍ରଚୁର ଗୋଳାବାରୁଦ, 38ଟି ବନ୍ଧୁକ, 56ଟି ତୋପର ସମସ୍ତ ଭଣ୍ଡାର, ତଲବାର, ଧନୁବାଣ, ବର୍ଚ୍ଛା ପ୍ରଭୃତି ଅସ୍ତ୍ର ଶସ୍ତ୍ରକୁ ମଧ୍ୟ ଇଂରେଜମାନେ ଅଧିକାର କଲେ । ସେତେବେଳେ କିତ୍ତୁର ରାଜ୍ୟରେ 286 ଗ୍ରାମ ଏବଂ 72ଟି କ୍ଷୁଦ୍ର ଜନ ବସତି ରହିଥିଲା । ଏହାର ବାର୍ଷିକ ଆୟ ଥିଲା ପ୍ରାୟ 4ଲକ୍ଷ ଟଙ୍କା ।

ରାଣୀ ଚେନ୍ନାମ୍ମା, ଶିବଲିଙ୍ଗ ରୁଦ୍ର ସର୍ଜାଙ୍କର ବିଧବା ବୀରବ୍ବା ତଥା ଶିବାସବରାଜଙ୍କ ପତ୍ନୀ ଜାନକୀଙ୍କୁ ତା'ହା ପରେ ପ୍ରାୟ ସପ୍ତାହ ପର୍ଯ୍ୟନ୍ତ କିତ୍ତୁର ରାଜ ମହଲରେ ବନ୍ଦୀ କରି ରଖାଗଲା । ରାଜ୍ୟ ଇଂରେଜ ମାନଙ୍କୁ ହସ୍ତାନ୍ତର କରିଦେବାର ଦଲିଲ୍ ଉପରେ ଜବର ଦସ୍ତି ସେମାନଙ୍କର ଦସ୍ତଖତ ନିଆଗଲା । ତାହାପରେ ସତର୍କ ରକ୍ଷୀ ପରିବେଷ୍ଟିତ ହୋଇ ସେମାନେ ଅଭେଦ୍ୟ ବେଲ ହୋଙ୍ଗଲ୍ ଦୁର୍ଗକୁ ଯାତ୍ରା କଲେ । ସେଠାରେ ସେମାନେ ରାଜନୈତିକ ବନ୍ଦୀ ହିସାବରେ ରହିଲେ । ଏହି ତିନି ମହିଳାଙ୍କ ନିମନ୍ତ ବାର୍ଷିକ ଟ40,000ର ଭତ୍ତା ମଞ୍ଜୁର କରିଦିଆଗଲା ।

କିଛି ସମୟ ପର୍ଯ୍ୟନ୍ତ କିତ୍ତୁର ଅସ୍ୱାଭାବିକ ଭାବରେ ଶାନ୍ତ ରହିଲା । ତଥାପି କିତ୍ତୁରର ଅନେକ ଲୋକ ରାଜ୍ୟ ଫେରି ଆସିବାର ସ୍ୱପ୍ନ ଦେଖୁଥିଲେ । ରମଣୀୟ ଦୁର୍ଗ, ରାଜ ପ୍ରାସାଦର ମୀନାର ପ୍ରଭୃତି କିତ୍ତୁରର ଅତୀତ ଗୌରବର ପ୍ରତୀକ ଥିଲା । ଏଥିରୁ ଲୋକଙ୍କ ମତରେ ଆଶା ଚେଇଁ ରହିଲା । ଚାପଲିନ୍ ଭାବୁଥିଲେ ଏହି ବିଶାଳ ଦୁର୍ଗ ରାଣୀ ଚେନମାଙ୍କ ସ୍ମୃତି ସେଠାକାର ଲୋକମାନଙ୍କ ମନରେ ବଂଚାଇ ରଖିଛି । ତାକୁ ମାଟିରେ ମିଶାଇ ଦେଲେ, ତା' ଆଉ ଅତୀତ ଗୌରବର ସ୍ମାରକୀ ହୋଇ ରହିବ ନାହିଁ । ତେଣୁ ରାଜ ପ୍ରସାଦର ସିଂହଦ୍ୱାରକୁ ଭାଙ୍ଗିଦେବା ନିମନ୍ତେ ଆଦେଶ ଦିଆଗଲା । ରମଣୀୟ ଦ୍ୱାର- ମଣ୍ଡପର ବହୁ ବଡ଼ ବଡ଼ ଟୀକ କାଠର ସ୍ତମ୍ଭ ଖୁବ୍ ଅଳ୍ପ ମୂଲ୍ୟରେ ନିଲାମ ଦ୍ୱାରା ବିକ୍ରି କରିଦିଆଗଲା । ଅନ୍ୟ ମୂଲ୍ୟବାନ କାଷ୍ଠ ନର୍ମିତ ବାତାୟନ,ଅଳଙ୍କୃତ ଦ୍ୱାର ବନ୍ଧ, କବାଟ, ଚୌକାଠ ଇତ୍ୟାଦି ବିକ୍ରି କରିଦିଆଗଲା କିମ୍ୱା ବାଣ୍ଟି ଦିଆଗଲା । ରାଜମହଲର ସମ୍ପତ୍ତିକୁ ଏହିଭଳି ଭାବରେ ନଷ୍ଟ କରିଦିଆଗଲା ।

ବେଲ୍‌ହୋଙ୍ଗଲ୍ ବନ୍ଦୀଶାଳାରେ ହୃତସର୍ବସ୍ୱ କ୍ଷିର୍ଣ୍ଣ ରାଣୀ ଚେନନ୍ମା ଏବଂ ବୀରବ୍ବା ସେତେବେଳେ ନିଜର ଦେଶପ୍ରେମୀ ସର୍ଦ୍ଦାରମାନଙ୍କ ସାହାଯ୍ୟରେ ଆଉ ଏକ ବିଦ୍ରୋହ ଏବଂ ରାଜତ୍ୱ ଫେରିପାଇବାର ସ୍ୱପ୍ନ ଦେଖୁଥିଲେ । ସଂଗୋଲ୍ଲୀ ରାୟଣ୍ଣଙ୍କ ଭଳି କେତେକ ବିଦ୍ରୋହୀ ଗୋପନରେ ସେମାନଙ୍କ ସହିତ

ସାକ୍ଷାତ୍ କରିଥିଲେ ଏବଂ କିତ୍ତୁରର ସମସ୍ତ ସମ୍ବାଦ ଜଣାଇଥିଲେ । ଦ୍ୱିତୀୟ ଏକ ବିଦ୍ରୋହ ନିମନ୍ତେ ରାଣୀ ତାଙ୍କୁ ଉତ୍ସାହିତ କରିଥିଲେ, ମାତ୍ର ଏହା ଆଉ ସମ୍ଭବ ହେଲା ନାହିଁ । କାରଣ କିତ୍ତୁର ଯୁଦ୍ଧର ଶୋଚନୀୟ ପରାଜୟ, ହଜାର ହଜାର ଲୋକଙ୍କର ନିର୍ମମ ହତ୍ୟା ଲୋକଙ୍କର ମନୋବଳକୁ ସମ୍ପୂର୍ଣ୍ଣ ରୂପେ ଭାଙ୍ଗି ଦେଇଥିଲା ।

ରାଣୀ ପୂଜା ଅର୍ଚ୍ଚନା ଚିନ୍ତନମନନରେ ନିଜର ଅଧିକାଂଶ ସମୟ କଟାଉଥିଲେ । କିତ୍ତୁରର ସ୍ୱାଧୀନତା ନିମନ୍ତେ ଚିନ୍ତା ଦିନକୁ ଦିନ ତାଙ୍କୁ କ୍ଷୀଣ କରିବାକୁ ଲାଗିଲା । ଆଶା ସେ କରିଥିଲେ ସତ୍ୟ, ମାତ୍ର ସେ ଆଶା ତାଙ୍କର ପୂର୍ଣ୍ଣ ହେଲା ନାହିଁ । ବେଲ୍‌ହୋଙ୍ଗଲ୍ ଦୁର୍ଗର ଗୋଟିଏ ଅପରିଚ୍ଛନ୍ନ ସ୍ୱଳ୍ପାଲୋକିତ କୋଠରୀରେ ବସି ବସି ସେ ପୁନର୍ବାର ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାର ସ୍ୱପ୍ନ ଦେଖୁଥିଲେ । କିତ୍ତୁରକୁ ସ୍ୱାଧୀନ କରିବା ନିମନ୍ତେ ଚିନ୍ତା କରୁଥିଲେ । ଏହି ଭଳିଭାବରେ ତାଙ୍କର ଦିନ କଟିଗଲା । ସେଠାରେ ପ୍ରାୟ ପାଞ୍ଚ ବର୍ଷ ବନ୍ଦୀ ଜୀବନ କଟାଇବାପରେ ଫେବୃୟାରୀ ଦୁଇ ତାରିଖ (1829)ରେ ତାଙ୍କର ଦେହାନ୍ତ ହୋଇଗଲା ।

ପୂର୍ଣ୍ଣ ସାମରିକ ମର୍ଯ୍ୟାଦା ସହକାରେ ବେଲ୍‌ହୋଙ୍ଗେଲ୍‌ଠାରେ ରାଣୀଙ୍କର ଶେଷ ସଂସ୍କାର କରାଗଲା । କିଛି ମାସ ପରେ ଜୁଲାଇ 2 ତାରିଖ (1829)ରେ ତାଙ୍କର ପୁତ୍ରବଧୂ ଜାନକୀ ବାଇ ମଧ୍ୟ ସେଠାରେ ମୃତ୍ୟୁ ବରଣ କଲେ । ପରାଧୀନତାର ଘୋର ଅନ୍ଧକାର ମଧ୍ୟରେ ଯେଉଁ ମହୀୟସୀ ନାରୀ ସ୍ୱାଧୀନତା ରୂପୀ ଆଲୋକର ବିପ୍ଳବୀ ଶିଖା ପ୍ରଜ୍ୱଳିତ କରାଇବା ନିମନ୍ତେ ଉଦ୍ୟମ କରିଥିଲେ । ପ୍ରବଳ ପରାକ୍ରାନ୍ତ ବ୍ରିଟିଶ୍ ସରକାରଙ୍କୁ ମଧ୍ୟ ଥରାଇ ଦେଇ ପାରିଥିଲେ । ଏହିଭଳି ଦୟନୀୟ ଭାବରେ ତାଙ୍କର ମୃତ୍ୟୁ ଘଟିଲା ।

# ସ୍ଫୁଲିଙ୍ଗ

ରାଣୀ ଚେନାମ୍ମା ପରାସ୍ତ ହୋଇଥିଲେ । କିତ୍ତୁର ସେନାବାହିନୀ ପରାଜୟ ବରଣ କରିଥିଲେ । କିତ୍ତୁର ରାଜ୍ୟ ବ୍ରିଟିଶ୍ ଶାସନାଧୀନ ହୋଇଥିଲା । ତଥାପି କିତ୍ତୁରର ଲୋକମାନଙ୍କ ମନରେ ସେମାନଙ୍କର ପୂର୍ବ ଶାସକମାନଙ୍କ ପାଇଁ ପୂର୍ବଭଳି ଶ୍ରଦ୍ଧା ଭକ୍ତି ଜାଗରୂକ ରହିଲା । କିତ୍ତୁର ରାଜ୍ୟପାଇଁ ସେମାନଙ୍କର ମମତା ସୁଦ୍ଧା ପୂର୍ବଭଳି ରହିଲା । ଫଳରେ ବିଦ୍ରୋହର ନିଆଁ କୁହୁଳିବାକୁ ଲାଗିଲା । ଇଂରେଜମାନଙ୍କ ବିରୁଦ୍ଧରେ ହୁତ୍ କରି ଜଳିଉଠିବା ନିମନ୍ତେ ଏହା କେବଳ ସୁଯୋଗର ପ୍ରତୀକ୍ଷା କରିବାକୁ ଲାଗିଲା ।

ଅନେକ ଥର ଏଠି ସେଠି ବିଦ୍ରୋହର ସ୍ଫୁଲିଙ୍ଗ ପ୍ରକାଶ ପାଇଲା । ଏଥି ମଧ୍ୟରୁ 1829-30 ମସିହାରେ ସାଙ୍ଗୋଲୀ ରାୟଣ୍ଣାଙ୍କ ନେତୃତ୍ୱରେ ହୋଇଥିବା ବିଦ୍ରୋହ ଅତ୍ୟନ୍ତ ମହତ୍ୱପୂର୍ଣ୍ଣ । ରାୟଣ୍ଣା ଥିଲେ ରାଣୀଙ୍କର ଅତ୍ୟନ୍ତ ଅନୁରାଗୀ । ରାଣୀଙ୍କ ମୃତ୍ୟୁପରେ ସୁଦ୍ଧା ଯୁଦ୍ଧ ଚଳାଇବାକୁ ସେ ପ୍ରତିଶ୍ରୁତି ବଦ୍ଧ ଥିଲେ । ରାଣୀଥିଲେ ତାଙ୍କର ଏକମାତ୍ର ଆଦର୍ଶ । ରାୟଣ୍ଣାଥିଲେ ସଂଗୋଲୀ ଗ୍ରାମର ଚୌକିଦାର । ସେଇ ଗାଁଟି କିତ୍ତୁରଠାରୁ ପ୍ରାୟ ତେର ମାଇଲ ଉତ୍ତରରେ ଅବସ୍ଥିତ । ରାୟଣ୍ଣା ଥିଲେ କିତ୍ତୁର ରାଜାଙ୍କର ଅନୁଚର । ତେବେ ବିଦ୍ରୋହରେ ଅଂଶ ଗ୍ରହଣ ନିମନ୍ତେ ତାଙ୍କୁ କ୍ଷମା କରିଦିଆଯାଇଥିଲା । ସେ ଶିବଲିଙ୍ଗ ରୁଦ୍ରସର୍ଜାଙ୍କ ଦତ୍ତକ ପୁତ୍ର ତଥା କିତ୍ତୁର ରାଜ୍ୟର ନ୍ୟାୟୋଚିତ ଉତ୍ତରାଧିକାରୀ ଶିବଲିଙ୍ଗପ୍ପାଙ୍କୁ ରାଜ୍ୟ ଫେରାଇ ଦେବାକୁ କୃତ ସଂକଳ୍ପ ହୋଇ ରାଣୀଙ୍କର କିଛି ଅନୁଗତ ବ୍ୟକ୍ତିଙ୍କୁ ଏକତ୍ରିତ କରିଥିଲେ । ଦୁଇବର୍ଷ ଧରି ସେ ଇଂରେଜମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ସେଇ ସମୟ ମଧ୍ୟରେ ସେ ଅନେକ ବ୍ରିଟିଶ୍ ଶିବିର ଆକ୍ରମଣ କଲେ । ବାଲାଗୁଣ୍ଡ ତଥା ହାଣ୍ଡି ବଡ଼ଗାନାଥ ପାହାଡ଼ରେ ଆଡ୍ଡା ଜମାଇ ସେ ଏହି ସବୁ ଆକ୍ରମଣ ପରିଚାଳନା କରିଥିଲେ । 1830 ମସିହାରେ କ୍ରମାଗତ ଚାରିମାସ ଧରି ସେ କିତ୍ତୁର ରାଜ୍ୟର ଖଜଣାଖାନା ତଥା କାର୍ଯ୍ୟାଳୟ ଉପରେ ଆକ୍ରମଣ ଚଳାଇ ଲୁଟତରାଜ ଜାରି ରଖିଲେ । ଖାନାପୁର, ସମ୍ପାଗାଁଓ, ବିଦ୍ଦୀ ତଥା ନନ୍ଦଗଡ଼ ଉପରେ ହୋଇଥିବା ଆକ୍ରମଣ ଅତ୍ୟନ୍ତ ସଫଳ ହୋଇଥିଲା । ଏଥିରେ ଆତଙ୍କିତ ହୋଇପଡ଼ି ଇଂରେଜମାନେ ବ୍ୟସ୍ତ ହୋଇ ପଡ଼ିଲେ ।

ରାୟଣ୍ଣାଙ୍କ ବିଦ୍ରୋହୀ କାର୍ଯ୍ୟକଳାପ ପ୍ରତି କିତ୍ତୁର ରାଜ୍ୟର ଲୋକମାନଙ୍କର ସହାନୁଭୂତି ଥିଲା । ବ୍ରିଟିଶ୍ ଅଧିକାରୀମାନେ ସୈନ୍ୟ ସାହାଯ୍ୟରେ ତାଙ୍କୁ ଧରିବା ନିମନ୍ତେ ଯେତେ ପ୍ରଯତ୍ନ କଲେ, ସେ ସବୁ ବିଫଳ ହୋଇଗଲା । ତାଙ୍କୁ ଧରାଇ ଦେବା ପାଇଁ ପୁରସ୍କାରର ଘୋଷଣା ମଧ୍ୟ କରାଯାଇଥିଲା । ତଥାପି କୌଣସି ସଫଳତା ମିଳିଲା ନାହିଁ । ତାହାପରେ ସେମାନେ କେତେକ ଅସନ୍ତୁଷ୍ଟ ରାଜଦ୍ରୋହୀଙ୍କ ସହାୟତାରେ ରାୟଣ୍ଣାଙ୍କୁ ଧରିବା ନିମନ୍ତେ ଏକ ଷଡ଼ଯନ୍ତ୍ର କଲେ । ଖୋଡ଼ନ୍‌ପୁରର ଲିଙ୍ଗନ୍ ଗୌଡ ଥିଲେ କିତ୍ତୁର ରାଜ ପରିବାରର ଦୂର ସମ୍ପର୍କୀୟ ଆତ୍ମୀୟ । ସେ ନିଜ ପୁତ୍ରକୁ କିତ୍ତୁର ରାଜାଙ୍କର ଦତ୍ତକରୂପେ ଗ୍ରହଣ କରାଇବା ନିମନ୍ତେ ଉଦ୍ୟମ କରି ସେଥିରେ କୃତକାର୍ଯ୍ୟ ହୋଇନଥିଲେ । ରାଣୀ ଚେନ୍ନାମ୍ମା ତଥା କିତ୍ତୁରର ଶାସକମାନଙ୍କ ପ୍ରତି ତେଣୁ ତାଙ୍କ ମନରେ ସ୍ୱାଭାବିକ ଭାବରେ ବିତୃଷ୍ଣା ଜାତ ହୋଇଥିଲା ।

ସେଇ ଦିନଠାରୁ ସେ ଇଂରେଜମାନଙ୍କ ସହିତ ଯୋଗାଯୋଗ କରି ରାଣୀଙ୍କ ବିରୁଦ୍ଧରେ ସେମାନଙ୍କୁ ନାନା ଖବର ଯୋଗାଉଥିଲେ । ଇଂରେଜମାନେ ତାଙ୍କୁ ରାୟଣ୍ଣାଙ୍କୁ ଧରାଇଦେବା ନିମନ୍ତେ ଉତ୍ତେଜିତ କରିବାକୁ ଲାଗିଲେ । ଆକୃତିରେ କ୍ଷୀଣ ଏବଂ ଦୁଷ୍ଟ ସ୍ୱଭାବ ବିଶିଷ୍ଟ ଲିଙ୍ଗନ୍ ଗୌଡ଼ ଏହାପରେ ରାୟଣ୍ଣାଙ୍କୁ ଧରିବା ନିମନ୍ତେ ଯୋଜନା ବଦ୍ଧ ଭାବରେ ପ୍ରସ୍ତୁତ ହେଲେ । ଏଥିରେ ତାଙ୍କୁ ସାହାଯ୍ୟ କଲେ ନାଗୀନଇ ବେଙ୍ଗଣା ନାମକ ଅପର ଜଣେ ବ୍ୟକ୍ତି । ସେ ସ୍ୱାସ୍ଥ୍ୟବାନ୍ ଥିଲେ । ପୁଣି ଥରେ ଆମ ନିଜ ଲୋକଙ୍କର ସାହାଯ୍ୟରେ ଇଂରେଜମାନେ ନିଜ ସାମ୍ରାଜ୍ୟକୁ ଦୃଢ଼ କରିବାର ସୁଯୋଗ ପାଇଲେ । ଲିଙ୍ଗନ୍ ନିଜକୁ ଜଣେ ରାଜ ଦ୍ରୋହୀ ରୂପରେ ପ୍ରଚାର କରାଇ ଦେଲେ । ଇଂରେଜ ବିରୁଦ୍ଧରେ ରାୟଣ୍ଣାଙ୍କ ସହିତ ହାତ ମିଳାଇବାର ଛଳନା କରି କିଛିମାସ ପର୍ଯ୍ୟନ୍ତ ସେ ରାୟଣ୍ଣାଙ୍କର ଗତିବିଧି ଲକ୍ଷ୍ୟ କରିବାକୁ ଲାଗିଲେ । ଦିନେ ଯେତେବେଳେ ରାୟଣ୍ଣା ସ୍ନାନ କରୁଥିଲେ, ଲିଙ୍ଗନ୍ ତାଙ୍କୁ ଧରାଇ ଦେବା ନିମନ୍ତେ ଦଳେ ସଶସ୍ତ୍ର ପୁଲିସ୍‌କୁ ଡାକି ଆଣିଲେ । ରାୟଣ୍ଣା ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ବ୍ରିଟିଶ୍ ପୁଲିସ୍ ତାଙ୍କୁ ଗିରଫ୍ କରିନେଲେ । ଦୋଷୀ ସାବ୍ୟସ୍ତ କରାଯାଇ ତାଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା । ସାଧାରଣ ଜନତାଙ୍କୁ ଆତଙ୍କିତ କରାଇବା ନିମନ୍ତେ ଇଂରେଜମାନେ ତାଙ୍କୁ ନନ୍ଦଗଡ଼ର ଏକ ପ୍ରକାଶ୍ୟ ସ୍ଥାନରେ ଫାଶୀ ଦେବା ନିମନ୍ତେ ସ୍ଥିର କଲେ । ନନ୍ଦଗଡ଼ ଥିଲା, ରାୟଣ୍ଣାଙ୍କର ଅତ୍ୟନ୍ତ ପ୍ରିୟ । କିଛି ଦିନ ପୂର୍ବରୁ ସେ ଏହି ସ୍ଥାନରେ ଖଜଣା ଲୁଟି କରିଥିଲେ । ଡିସେମ୍ବର 28 ତାରିଖ (1830)ରେ ତାଙ୍କୁ ଫାଶୀ ଦେଇ ଦିଆଗଲା । ଫାଶୀ ଖୁଣ୍ଟରେ ମୃତ୍ୟୁଦୂତଙ୍କୁ ସମ୍ମୁଖରେ ଦେଖି ସୁଦ୍ଧା ସେ ହସିବାକୁ ଲାଗିଲେ । ତାଙ୍କୁ ତାଙ୍କର ଅନ୍ତିମ ଇଚ୍ଛା ସମ୍ପର୍କରେ ପ୍ରଶ୍ନ କରାଯିବାରୁ ରାୟଣ୍ଣା ଦୃପ୍ତ କଣ୍ଠରେ ଉତ୍ତର ଦେଲେ, ''ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କୋଇ ସେମାନଙ୍କୁ ଏହି ପବିତ୍ର ଭୂମିରୁ ବହିଷ୍କୃତ କରିବା ନିମନ୍ତେ ମୁଁ ପୁନର୍ବାର ଏହି ଦେଶରେ ଜନ୍ମ ନେବାକୁ ଚାହେଁ । ଏହାହିଁ ମୋର ଶେଷଇଚ୍ଛା ।'' ଚୌକି ଉପରେ ଚଢ଼ି ଫାଶୀ ଦଉଡ଼ି ବେକରେ ଗଳାଇବା ନିମନ୍ତେ ତାଙ୍କ ପାଇଁ ଚୌକି ଆଣାଗଲା । ସେ ତାଙ୍କୁ ଗୋଇଠା ମାରି ଫୋପାଡ଼ି ଦେଲେ । ଫାଶୀ ଦଉଡ଼ିକୁ ନିଜ ହାତରେ ବେକରେ ଗଳାଇଦେଇ ଜହ୍ଲାଦମାନଙ୍କୁ ଦଉଡ଼ି ଟାଣିବା ନିମନ୍ତେ ଆଦେଶ ଦେଲେ । ଏହି ଦୁର୍ଦ୍ଦମନୀୟ ସାହସ ହିଁ ତାଙ୍କ ପ୍ରତି ଜନମନରେ ଅତୁଟ ଶ୍ରଦ୍ଧା ସୃଷ୍ଟି କରିବା ନିମନ୍ତେ ସକ୍ଷମ ହେଲା ।

ରାଣୀ ଚେନ୍ନମ୍ମା ତଥା ଜାନକୀବାଈଙ୍କର ମୃତ୍ୟୁପରେ ମଧ୍ୟ ବୀରଦ୍ଧା ଜୀବିତ ଥିଲେ । ତାଙ୍କୁ କିଛିଦିନ ବେଲହୋଙ୍ଗଲ୍‌ରେ ରଖାଗଲା । ଚେନ୍ନାମ୍ମା ତଥା ବୀରଦ୍ଧାଙ୍କର ପ୍ରକୃତି ଥିଲା ଏକାଭଳି । ତାଙ୍କର ଦୁର୍ଦ୍ଧାନ୍ତ ସାହସ ଥିଲା । କିତ୍ତୁରର ସ୍ୱାଧୀନତା ନିମନ୍ତେ ଶେଷ ପର୍ଯ୍ୟନ୍ତ ସଂଗ୍ରାମ କରିଯିବାକୁ ସେ କୃତ ସଂକଳ୍ପ ଥିଲେ । କିତ୍ତୁରର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସେ ଗୋପନରେ ସମ୍ବାଦ ପଠାଇଲେ । ବିଦ୍ରୋହ ସଂଗଠନ କରିବା ନିମନ୍ତେ କେତେକ ସର୍ଦ୍ଦାରଙ୍କୁ ସେ ଧନ ମଧ୍ୟ ଯୋଗାଇଦେଲେ । ଇଂରେଜମାନେ ଏହା ଜାଣି ପାରିଲେ । ସେମାନେ ବୀରଦ୍ଧାଙ୍କୁ ବେଲହୋଙ୍ଗେଲ୍ ଠାରୁ ଏକ ଦୂରବର୍ତ୍ତୀ ସ୍ଥାନକୁ ପଠାଇ ଦେବା ନିମନ୍ତେ ସ୍ଥିର କଲେ । ପ୍ରଥମେ ତାଙ୍କୁ କୁତିଗଇ ନିଆଯାଇ ପରେ ସେଠାରୁ ଖାନଦେଶ୍ ଜିଲ୍ଲାର ମେଇଗାଁଓକୁ ପଠାଇଦେବା ନିମନ୍ତେ ସ୍ଥିର କରାଗଲା । ଲୋକମାନେ ଏହା ଜାଣିବା ପରେ ବହୁ ସଂଖ୍ୟାରେ ବେଲ ହୋଙ୍ଗଲ୍ ଦୁର୍ଗ ନିକଟରେ ରୁଣ୍ଡ ହେଲେ । ଏକ ହଜାରରୁ ଅଧିକ ଲୋକ ବୀରଦ୍ଧାଙ୍କର ସ୍ଥାନାନ୍ତର ଗମନକୁ ନିରୋଧ କରିବା ନିମନ୍ତେ ବଦ୍ଧପରିକର ଥିଲେ । ଗଣ୍ଡଗୋଳ ବନ୍ଦ କରିବା ପାଇଁ ଇଂରେଜମାନେ ଅପର୍ଯ୍ୟାପ୍ତ ସୈନ୍ୟ ନେଇ ଆସିଲେ । ଅସହାୟ ଜନତା ସେଠାରୁ ଏଣେ ତେଣେ ପଳାଇଗଲେ । ସଶସ୍ତ୍ର ପ୍ରହରୀ ଗହଣରେ ବୀରଦ୍ଧାଙ୍କୁ କୁସ୍ତୁଗଲ ଦୁର୍ଗକୁ ପଠାଇ ଦିଆଗଲା ।

ସେଠାରେ ତାଙ୍କର ସ୍ୱାସ୍ଥ୍ୟ ଦିନକୁ ଦିନ ଖରାପ ହେବାକୁ ଲାଗିଲା । ଇଂରେଜମାନେ ଯେତେବେଳେ ତାଙ୍କର ମୃତ୍ୟୁ ସମ୍ପର୍କରେ ନିଃସନ୍ଦେହ ହୋଇଗଲେ, ସେତେବେଳେ ତାଙ୍କୁ ଧାରବାରର ଜଣେ ଆତ୍ମୀୟଙ୍କ ଘରକୁ ପଠାଇ ଦେଲେ । କିଛି ସୁସ୍ଥ ହୋଇ ଯିବା ପରେ ତାଙ୍କୁ ଉଲ୍ଲାବୀ ଚେନ୍ନାସର୍ବେଶ୍ୱର ମନ୍ଦିରକୁ ନିଆଗଲା । ଧାରବାରର ତତ୍କାଳୀନ କଲେକ୍ଟର ବାବର ତାଙ୍କୁ ନିଜ ହାତରେ ବିଷ ପିଆଇ ଦେଲେ ବୋଲି କୁହାଯାଏ । ତାଙ୍କର ଦୁଃଖଦ ପରିଣତିର କରୁଣ କାହାଣୀ ଏବେ ମଧ୍ୟ ଲୋକଗୀତର ବିଷୟ ହୋଇ ରହିଛି । ବିଷ ପିଇବା ପୂର୍ବରୁ ସେ ଶେଷଥର ପାଇଁ କିତ୍ତୁର ଦର୍ଶନ କରିବାର ଅଭିଳାଷ ପ୍ରକାଶ କଲେ । ତାଙ୍କୁ ମନ୍ଦିରର ଛାତ ଉପରକୁ ନିଆଗଲା ଏବଂ ସେଠାରୁ ସେ କିତ୍ତୁର ଦୁର୍ଗର ମୀନାର ପ୍ରତି ସତୃଷ୍ଣ ଦୃଷ୍ଟି ନିକ୍ଷେପ କଲେ । କିତ୍ତୁରର ସମୃଦ୍ଧ ଅତୀତ ସ୍ମରଣ କରି ସେତେବେଳେ ତାଙ୍କ ଛାତି ଥରାଇ ଗଭୀର ଦୀର୍ଘଶ୍ୱାସ ବାହାରି ଆସିଥିଲା । ତାହାପରେ ସେ ତଳକୁ ଓହ୍ଲାଇ ବିଷପାନ କରି ଶହୀଦ୍ ହୋଇ ଯାଇଥିଲେ ।

ପୁନର୍ବାର 1833 ମସିହାରେ ଶଙ୍କରନ୍ନା ନାମକ ଜଣେ ବ୍ୟକ୍ତି ବ୍ରିଟିଶ୍ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ନିମନ୍ତେ ଏକ ଅସଫଳ ଉଦ୍ୟମ କରିଥିଲେ । 1836 ରେ ନାଗପ୍ପା, ରାଜପତି ତଥା ସବାଇ ରୁଦପ୍ପା କୋଟଗୀଙ୍କ ନେତୃତ୍ୱରେ ବିଦ୍ରୋହୀମାନଙ୍କର ଏକଦଳ ଇଂରେଜମାନଙ୍କ ବିରୁଦ୍ଧରେ ଗୋଆସ୍ଥିତ ପର୍ତ୍ତୁଗାଲୀମାନଙ୍କର ସାହାଯ୍ୟ ନେବା ନିମନ୍ତେ ଉଦ୍ୟମ କରିଥିଲେ । ମାତ୍ର ତାହା ମଧ୍ୟ ନିଷ୍ଫଳ ହୋଇଗଲା । 1837 ରେ ଶିବଲିଙ୍ଗପ୍ପା ଓରଫ୍ ସବାଇ ମଲ୍ଲସରଜା ଗୋଟିଏ ବିଦ୍ରୋହର ନେତୃତ୍ୱ ନେଇଥିଲେ । ମାତ୍ର ତାଙ୍କୁ ଗିରଫ କରାଯାଇ କିଛି ସମୟ ପାଇଁ ଡୋଡ୍ ବାଉ ଦୁର୍ଗରେ ବନ୍ଦୀ କରାଯାଇଥିଲା । ଶିବଲିଙ୍ଗପ୍ପା ପୁନର୍ବାର ସମ୍ପାଗାଁଓ ଏବଂ ବିଦୀରେ ଇଂରେଜମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ନିମନ୍ତେ ଉଦ୍ୟମ କଲେ । ମାତ୍ର ତାଙ୍କ ଶ୍ୱଶୁର ବାଣ୍ଡାମୁରୀର ଦେଶାଇ ତାଙ୍କର ଯୋଜନା ସମ୍ବନ୍ଧରେ ଇଂରେଜମାନଙ୍କୁ ଆଗୁଆ ଖବର ଦେଇଦେଲେ । ଅପରାଧ ସମ୍ପର୍କୀୟ କିଛି ଚିଠିପତ୍ର ଜବତ୍ ହେଲା । ଶିବଲିଙ୍ଗପ୍ପାଙ୍କୁ ପୁଣି ଥରେ ବନ୍ଦୀ କରାଯାଇ କିଛିଦିନ ପର୍ଯ୍ୟନ୍ତ ଜେଲ୍‌ରେ ରଖାଗଲା । କିଛି ମାସ ପରେ ବାଣ୍ଡା ମୁରୀର ଦେଶାଇ ତଥା ସାଙ୍ଗ୍ଲୀର ରାଜା ଜାମିନ୍‌ରେ ତାଙ୍କୁ ଛଡ଼ାଇ ଆଣିଲେ । ଶେଷରେ 1857ରେ ଶିବଲିଙ୍ଗପ୍ପା ଇଂରେଜ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ଅନ୍ୟ ଏକ ଅସଫଳ ଉଦ୍ୟମ କଲେ ।

ରାଣୀ ଚେନ୍ନାମ୍ମାଙ୍କ ଦ୍ୱାରା ପ୍ରଜ୍ୱଳିତ ଜ୍ୟୋତି ନିର୍ବାପିତ ହେଲାନାହିଁ । କିତ୍ତୁରର ସ୍ୱାଧୀନତା ପ୍ରେମୀ ଜନତା ସୁଦୀର୍ଘ ତିନି ଦଶକ ପର୍ଯ୍ୟନ୍ତ ଏହାକୁ ଜଳାଇ ରଖିଲେ । ସେମାନଙ୍କର ସମସ୍ତ ଉଦ୍ୟମକୁ ନିଷ୍ଫଳ କରିଦିଆଗଲା ସତ୍ୟ, ତଥାପି ଏହା ଭବିଷ୍ୟ ବିଦ୍ରୋହୀମାନଙ୍କ ନିମନ୍ତେ ଏକ ପ୍ରକାର ପ୍ରେରଣାର ଉତ୍ସ ହୋଇରହିଲା । 1857ରେ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେଲା । ରାଣୀ ଚେନ୍ନାମ୍ମା ଯେ, ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅଗ୍ରଦୂତ ଥିଲେ, ଏଥିରେ ସନ୍ଦେହ ନାହିଁ, ତେଣୁ ଯଥାର୍ଥତଃ କୁହାଯାଇଛି, ''ରାଣୀ ଚେନ୍ନାମ୍ମା ଥିଲେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ପାହାନ୍ତି ତାରା ।''

# ଐତିହାସିକ ପ୍ରତୀକ

କିତ୍ତୁରର ଶେଷ ସଂଗ୍ରାମ ପରେ ଏହା ମଧ୍ୟରେ ଦେଢ଼ଶହ ବର୍ଷରୁ ମଧ୍ୟ ଅଧିକ କାଳ ବିତିଗଲାଣି । ତଥାପି ଏହି ଅବିସ୍ମରଣୀୟ ଘଟଣାର ସ୍ମୃତି ଏବେ ମଧ୍ୟ ଅଜସ୍ର କବିତା, ଲୋକଗୀତ, ନାଟକ ମାଧ୍ୟମରେ ସାଧାରଣ ଜନତାର ହୃଦୟରେ ଜୀବନ୍ତ ରହିଛି । କର୍ଣ୍ଣାଟକ ରାଜ୍ୟର ଉତ୍ତରାଞ୍ଚଳରେ ବିସ୍ତୃତ ଧ୍ୱଂସାବଶେଷ ହେଉଛି ଏହାର ମୂକ ସାକ୍ଷୀ । କିତ୍ତୁର ଦୁର୍ଗ ତଥା ରାଜପ୍ରାସାଦର ଭଗ୍ନାବଶେଷ ଏଗୁଡ଼ିକ ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ।

## କିତ୍ତୁର ଦୁର୍ଗ

ଅତୀତରେ ନିଜର ଦୃଢ଼ତା ନିମନ୍ତେ ଖ୍ୟାତ ଏହି ଦୁର୍ଗ ସମ୍ପ୍ରତି କେତେକ ଭଗ୍ନ ପ୍ରାଚୀର, ଧ୍ୱଂସମୁଖୀ ଇମାରତ୍ ମଧ୍ୟରେ ସୀମାବଦ୍ଧ । ଦୁର୍ଗ ଆଡ଼କୁ ଅଗ୍ରସର ହେଲାବେଳେ ଅତୀତର ଏକ ଯୁଗାନ୍ତକାରୀ ଘଟଣା ଆମର ମନେପଡ଼ିଯାଏ । ବାହାଦୁର ଗଡ଼ ଦୁର୍ଗ ବାହାରେ ଦକ୍ଷିଣ ପଶ୍ଚିମ ଦିଗରେ ଏକ ପ୍ରାକୃତିକ ଗିରି ଶିଖର ଉପରେ ଅବସ୍ଥିତ ସର୍ବୋଚ୍ଚ ସ୍ଥାନ । ଏହାର ଉଚ୍ଚ ବୁରୁଜ ଉପରୁ ଅତନ୍ଦ୍ର ପ୍ରହରୀମାନେ ଏକଦା ନିରୀକ୍ଷଣ କାର୍ଯ୍ୟ ଚଳାଉଥିଲେ । ଏଠାରୁ ଦିଗନ୍ତ ବିସ୍ତୃତ ଶ୍ୟାମଳ ବନଭୂମିର ଦୃଶ୍ୟ ଅତ୍ୟନ୍ତ ଆକର୍ଷଣୀୟ । ପଶ୍ଚିମ ଦିଗର ଧୂମାଚ୍ଛନ୍ନ ପର୍ବତମାଳାର ଧ୍ୟାନଗମ୍ଭୀର ମୂର୍ତ୍ତି ଅବିସ୍ମରଣୀୟ । ଅନ୍ୟ ଦୁଇ ଦିଗରେ ବିସ୍ତୃତ ସବୁଜ କ୍ଷେତ । ମୀନାରର ଉତ୍ତରରେ 'ରଣଗଟୀକେରୀ' ଅବସ୍ଥିତ । ଏହିଠାରେ ରାଣୀ ଚେନ୍ନାମ୍ମା ସଂକଳ୍ପବଦ୍ଧ ହୋଇ ଇଂରେଜମାନଙ୍କ ସହିତ ସଂଗ୍ରାମ ଚଳାଇଥିଲେ ।

ଦୁର୍ଗର ଆକୃତି ବୃତ୍ତାକାର । ଏହା ପରେ ପରେ ଦୁଇଟି ପ୍ରାଚୀର ରହିଛି । ଯାହା ଗଡ଼ଖାଇ ଦ୍ୱାରା ପରସ୍ପରଠାରୁ ପୃଥକୀକୃତ । ବାହାର ପ୍ରାଚୀରର ସମ୍ମୁଖ ଅଂଶରେ ଏକ ଅର୍ଦ୍ଧଚନ୍ଦ୍ରାକୃତି ବୁରୁଜ୍ ରହିଛି । ମୂଳତଃ, ଏହାରପୂର୍ବଦିଗରେ ଥିଲା ସିଂହଦ୍ୱାର । ଏଇଠି ବାହାର ଗଡ଼ଖାଇ ଉପରେ ପୋଲ ତିଆରି କରାଯାଇଥିଲା । ଏହି 'ଖାଇ'କୁ 'ଆନେଭୋଣ୍ଡା' କୁହାଯାଏ । ଏଠାରେ ହାତୀମାନଙ୍କୁ ଗାଧୋଇ ଦିଆଯାଉଥିଲା ।

ପ୍ରବେଶ ଦ୍ୱାରଗୁଡ଼ିକ ଜାଣିଶୁଣି ଏକା ସିଧାରେ ପ୍ରସ୍ତୁତ କରାଯାଇନଥିଲା । ନିରାପତ୍ତା ଦୃଷ୍ଟିରୁ ଏହିଭଳି କରାଯାଇଥିଲା । ପ୍ରାଚୀର ଦ୍ୱାର ବାଟେ ଭିତରକୁ ପ୍ରବେଶ କଲେ, ଅଦୂରରେ ରାଜପ୍ରାସାଦର ମୁଖ୍ୟ ଦ୍ୱାର ଦେଖାଯାଉଥିଲା । ଏହା ଥିଲା ଦୁର୍ଗଗତ ଦ୍ୱିତୀୟ ପ୍ରାଚୀରର ଉତ୍ତରୀ ଗମ୍ବୁଜ ନିକଟବର୍ତ୍ତୀ । ଦୁର୍ଗ ଭିତରେ ରାଜପ୍ରାସାଦର ଦକ୍ଷିଣରେ ଅସ୍ତ୍ରାବଲ୍‌ର ଧ୍ୱଂସାବଶେଷ ତଥା କିଛି ବାସ ଭବନର ଭିତ୍ତି ଏବେ ମଧ୍ୟ ରହିଛି । ଏଥିରେ ସମ୍ଭବତଃ ପ୍ରମୁଖ ରାଜ ପୁରୁଷମାନେ ବସ ବାସ କରୁଥିଲେ । ଦକ୍ଷିଣ ପଶ୍ଚିମରେ ଅତ୍ୟୁଚ ପ୍ରହରୀ ମୀନାର ରହିଛି । ସମାନ ଦୂରତ୍ୱରେ ପ୍ରସ୍ତୁତ ଅନେକ ସ୍ତମ୍ଭ ଉପରେ ଏହା ଅବସ୍ଥିତ ।

**ରାଜପ୍ରାସାଦ**

ରାଜ ପ୍ରାସାଦର ମୁଖ୍ୟ ଦ୍ୱାରର ଦୁଇପଟେ ଧାଡ଼ି ଧାଡ଼ି ସୈନିକ ତଥା ଅଶ୍ୱାରୋହୀ ମାନଙ୍କର ଗୃହ ରହିଥିଲା । ଆଜି ତାହାର ଧ୍ୱଂସାବଶେଷ ମାତ୍ର ରହିଛି । 100' ଚୌଡ଼ା ତଥା 30' ଉଚ୍ଚ 'ଅଗ୍ରମଣ୍ଡପ' ହେଉଛି ପ୍ରାସାଦର ସର୍ବୋତ୍ତମ ଆକର୍ଷଣୀୟ ଅଂଶ । ମଣ୍ଡପର ସମ୍ମୁଖଭାଗର ନିମ୍ନରେ ଧାଡି ଧାଡି ଲମ୍ୱା ପାଷାଣ ସ୍ତମ୍ଭମାନ ଗୁରୁଭାର ପ୍ରସ୍ତର ଉପରେ ଦଣ୍ଡାୟମାନ । ଆକୃତି ଦୃଷ୍ଟିରୁ ତଥା ନିର୍ମାଣ କଳା ଦୃଷ୍ଟିରୁ ସମଗ୍ର ପ୍ରାସାଦ ଏକ ଦର୍ଶନୀୟ ସାମଗ୍ରୀ । ବୈଠକ, ଅତିଥିଶାଳା, ସଭାକକ୍ଷ, ଭୋଜନ କକ୍ଷ, ସ୍ନାନାଗାର ପ୍ରଭୃତି ଏଭଳି ସୁବ୍ୟବସ୍ଥିତଯେ, ପ୍ରତ୍ୟେକ ସ୍ଥାନରେ ଅପରକକ୍ଷ ଅତିକ୍ରମ ନକରି ମଧ୍ୟ ଖୁବ୍ କମ୍ ସମୟରେ ପହଞ୍ଚି ଯାଇହେବ । ପ୍ରତ୍ୟେକ କକ୍ଷରେ ଦୁଇଟି ଦ୍ୱାର ରହିଛି । ଏହି ଦ୍ୱାର ସାହାଯ୍ୟରେ ଦୁଇଟି ଭିନ୍ନ କକ୍ଷକୁ ମଧ୍ୟ ଯାଇହେବ । ଏ ସମସ୍ତ ଅତ୍ୟନ୍ତ କୁଶଳ ବ୍ୟବସ୍ଥାର ନିଦର୍ଶନ । ରାଜପ୍ରାସାଦ ତଥା ତାହାର କକ୍ଷ ସମୂହ ବ୍ୟବସ୍ଥାପନାରେ କିଛି ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ରହିଛି । ରାଜ ମହଲ ମଧ୍ୟରେ ରମଣୀୟ ନାତିଦୀର୍ଘ ସଭା କକ୍ଷ ରହିଛି । ଏଥିରେ ସର୍ଦ୍ଦାର ତଥା ଅନ୍ୟ ମୁଖ୍ୟ ପଦାଧିକାରୀ ମାନଙ୍କର ଗୋପନ ମନ୍ତ୍ରଣା ଚାଲୁଥିଲା । ସଭା କକ୍ଷର କାନ୍ଥକୁ ଲାଗି ଧାଡ଼ି ଧାଡ଼ି ଆସନର ବ୍ୟବସ୍ଥା କରାଯାଇଛି । ଏହାର ନିକଟରେ ବିରାଟ ଭୋଜନ କକ୍ଷ ରହିଛି । ଏଠାରେ ସମୟ ସମୟରେ ଅତିଥି ମାନଙ୍କ ନିମନ୍ତେ ଭୋଜିର ଆୟୋଜନ କରାଯାଉଥିଲା । ରାଜ ମହଲର ବାମ ପାର୍ଶ୍ୱରେ ରାଜ ପରିବାରର ସଦସ୍ୟମାନଙ୍କ ସ୍ନାନ ଶୌଚାଦି ନିମନ୍ତେ ବିରାଟ ଏକ ପୁଷ୍କରଣୀ ରହିଛି । ବିଶେଷ ପ୍ରୟୋଜନ ନିମନ୍ତେ ପ୍ରାସାଦର ସମ୍ମୁଖ ଭାଗର ବାମ ପାର୍ଶ୍ୱରେ ଏକ କକ୍ଷ ରହିଛି । ଏହି କକ୍ଷର କାନ୍ଥ ମଧ୍ୟଦେଇ ଦେଢ଼ ଫୁଟ ବ୍ୟାସର ଲୌହ ନିର୍ମିତ ଏକ ପାଇପ୍ ରହିଛି, ଯାହା ଉପରକୁ ଉଠିଯାଇଛି । ଧ୍ରୁବତାରାକୁ ନିରୀକ୍ଷଣ କରିବା ନିମନ୍ତେ ଏହାର ଉପଯୋଗ କରାଯାଉଥିଲା । ପାଇପ୍ ସମ୍ମୁଖରେ ବସିବା ପାଇଁ ଏକ ଚଉତରା ନିର୍ମିତ ହୋଇଛି । ଗୋଟିଏ ସ୍ରୋତରୁ ସମଗ୍ର ପ୍ରାସାଦକୁ ଜଳ ସରବରାହର ବ୍ୟବସ୍ଥା କରାଯାଇଥିଲା । ଏହା ଅତ୍ୟନ୍ତ ସୁପରି କଳ୍ପିତ । ପଶ୍ଚାତ୍ ଭାଗର ଉନ୍ମୁକ୍ତ ପ୍ରାଙ୍ଗଣ ମଝିରେ ଗୋଟିଏ କୂଅ ରହିଛି । ପାଣି କାଢ଼ିବା ନିମନ୍ତେ ପାଷାଣ ନିର୍ମିତ ଏକ ସୁନ୍ଦର ପାତ୍ର ସଂଲଗ୍ନ ହୋଇଛି । ଏହା ପାଖରେ ତଥା ଦୁଇକୋଣରେ ପାଣିଟାଙ୍କିମାନ ରହିଛି । ଏ ସବୁ ରାଜ ମହଲର ପଶ୍ଚାତ୍‌ବର୍ତ୍ତୀ କାନ୍ଥକୁ ଲାଗି ରହିଛନ୍ତି । କୂଅରୁ ପାଣି କଢ଼ାଯାଇ ଏହି ସବୁ ପାତ୍ରରେ ସଂରକ୍ଷିତ ହେଉଥିଲା । ସେଠାରୁ ଏହାକୁ ଟାଙ୍କିକୁ ପଠାଯାଉଥିଲା । ତମ୍ୱାପାଇପ ସାହାଯ୍ୟରେ ଏହାକୁ ରୋଷେଇ ଘର ପର୍ଯ୍ୟନ୍ତ ମଧ୍ୟ ନିଆଯାଉଥିଲା । ଭୋଜନ କକ୍ଷ, ରୋଷେଇ ଘର ତଥା ଅନ୍ୟ କକ୍ଷର ଭିନ୍ନ ଭିନ୍ନ ସ୍ଥାନରେ ଯଥୋଚିତ ଭାବରେ ପଥର ନିର୍ମିତ ମୁହଁ ଧୁଆ କୁଣ୍ଡମାନ ରଖାଯାଇଥିଲା । ଏହି ସବୁକୁଣ୍ଡ ଆଧୁନିକ ଚିନାମାଟି ନିର୍ମିତ ୱାସ୍ ବେସିନ୍ ଭଳି । ରାଜ ପ୍ରାସାଦର ଅନ୍ୟ ଏକ ଆକର୍ଷଣୀୟ ବସ୍ତୁ ହେଉଛି ଏହାର ରମଣୀୟ ଉଦ୍ୟାନ ହଂସକରଣ୍ଡଳ ଶୋଭିତ ପୁଷ୍କରିଣୀ, ବର୍ଣ୍ଣାଢ଼୍ୟ ଫୁଆରା ଏହାର ଆକର୍ଷଣୀୟତାକୁ ବହୁଗୁଣରେ ବଢ଼ାଇ ଦେଇଥିଲା । ଉଦ୍ୟାନର ଚାରିଆଡ଼େ ବହୁ ପ୍ରକାର, ଭିନ୍ନ ଭିନ୍ନ ଆକୃତିର ଇଷ୍ଟକ ନିର୍ମିତ ମାର୍ଗ ରହିଥିଲା । ଛ ଇଞ୍ଚ ମୋଟା ସୁଦୃଢ଼ ପାଚେରୀ ଆଜି ମଧ୍ୟ ସେହିଭଳି ରହିଛି । ଗୌରିକ ସ୍ଫଟିକ, ଚିକ୍କଣ ପଥର ଖଚିତ ସମ୍ପୂର୍ଣ୍ଣ ପ୍ରାସାଦଟି ଚୂନମସଲାରେ ପ୍ରସ୍ତୁତ । ଗୋଲାକାର ସ୍ତମ୍ଭ ସବୁଜ ରଂଗର ପ୍ରସ୍ତର ନିର୍ମିତ । ଗୋଟିକ ପରେ ଗୋଟିଏ ପଥର ରଖାଯାଇ ଚୂନ ମସଲାରେ ସେଗୁଡ଼ିକୁ ଯୋଡ଼ା ଯାଇଥିଲା । କାନ୍ଥର ଝରକା, ସ୍ନାନାଗାର, ଏବଂ ରୋଷାଇଘରର କାନ୍ଥ ପଲସ୍ତରା କରାଯାଇଥିଲା । କକ୍ଷ ଗୁଡ଼ିକର ନିମ୍ନ ଅଂଶ ତଥା ଚଟାଣ, ଆୟତାକାର ସୁନ୍ଦର ପ୍ରସ୍ତରଖଣ୍ଡ ଦ୍ୱାରା ସୁଶୋଭିତ ହୋଇଥିଲା । ଗବାକ୍ଷ

ଗୁଡ଼ିକ ଏଭଳି ସୁବିନ୍ୟସ୍ତ ଯେ, ତାହା କକ୍ଷଗୁଡ଼ିକର ପର୍ଯାପ୍ତ ଆଲୋକ ଏବଂ ବାୟୁ ଚଳାଚଳ ନିମନ୍ତେ ପୂର୍ଣ୍ଣ ରୂପରେ ସକ୍ଷମ । ଚୌକୋଣିଆ ପଥରଜାଲି ଏବଂ ଗବାକ୍ଷର ନିର୍ମାଣକଳାରେ ମୁସଲମାନ ମରାଠା ସ୍ଥାପତ୍ୟକଳାର ସ୍ପଷ୍ଟ ପ୍ରଭାବ ବିଦ୍ୟମାନ । କିତ୍ତୁର ରାଜପ୍ରାସାଦ ଏହିଭଳି ସ୍ଥାପତ୍ୟ କଳାର ସର୍ବଶ୍ରେଷ୍ଠ ନିଦର୍ଶନ ।

## କିତ୍ତୁରର କଲମଠ ପ୍ରାଙ୍ଗଣରେ ସମାଧି

କଲମଠ ପ୍ରାଙ୍ଗଣରେ ସମାଧିସ୍ଥ କିତ୍ତୁରର ବିଭିନ୍ନ ଶାସକ ମାନଙ୍କର ସମାଧି ହେଉଛି ତତ୍ରତ୍ୟ ଭଗ୍ନାବଶେଷ ମଧ୍ୟରେ ଅତୀବ ମହତ୍ତ୍ୱପୂର୍ଣ୍ଣ । ସର୍ବ ମୋଟ ଛ'ଟି ସମାଧି ରହିଛି । ଏଗୁଡ଼ିକ ହେଉଛି ଯଥା କ୍ରମେ ମୁଦିମଲ୍ଲପ୍ପାସର ଦେଶାଇ, ମାଲବା ରୁଦ୍ରଗୌଡ଼ ଓରଫ୍ ଫକୀରା ରୁଦ୍ରସର୍ଜା, ବୀରପ୍ପା ଗୌଡ଼ ସରଦେଶାଇ, ମଲ୍ଲାସର୍ଜା, ରାଣୀ ଚେନାମ୍ମାଙ୍କ ପୁତ୍ର ବାଳାସାହେବ ତଥା ଶିବଲିଙ୍ଗ ରୁଦ୍ରସର୍ଜାଙ୍କର । ସ୍ଥାପତ୍ୟ କଳାଦୃଷ୍ଟିରୁ ମୁଦିମଲ୍ଲପ୍ପା ସରଦେଶାଇ, ମଲ୍ଲସର୍ଜା, ବାଳା ସାହେବ ଏବଂ ଶିବଲିଙ୍ଗ ରୁଦ୍ର ସର୍ଜାଙ୍କର ସମାଧିଗୁଡ଼ିକ ସମ୍ପୂର୍ଣ୍ଣ ଅନଳଙ୍କୃତ । ଏହାର ବାହାର ପାଖରେ ଶିବଲିଙ୍ଗ ତଥା ନନ୍ଦୀ ରହିଛନ୍ତି । ଭୂଗର୍ଭସ୍ଥ କକ୍ଷରେ କବର ରହିଛି, ଯାହା ବାହାରୁ ଦେଖାଯାଏ ନାହିଁ । ମାତ୍ର ବୀରପ୍ପାଗୌଡ଼ ସରଦେଶାଇଙ୍କ ସମାଧିର ଦୁଇଟି ଭାଗ ରହିଛି । ଭିତର କକ୍ଷରେ ଶିବଲିଙ୍ଗ ତଥା ବାହାର କକ୍ଷରେ ନନ୍ଦୀ ଅବସ୍ଥାପିତ । ଏହି ସମାଧି ମନ୍ଦିର ସର୍ବଶ୍ରେଷ୍ଠ ବୋଲି ଧରିନିଆଯାଏ । ଏହାର କାନ୍ଥଗୁଡ଼ିକ ଚିତ୍ରିତ, ଗୋଟିଏ ଅଳିନ୍ଦ ରହିଛି ତଥା ସୁନ୍ଦର ଏକ ଚୌକାଠ ମଧ୍ୟ ଅଛି । ସିୟୁମଠାରେ ତ୍ରୟୋଦଶ ଶତକରେ ନିର୍ମିତ ମନ୍ଦିରର ଚୌକାଠ ସହିତ ଏହାକୁ ତୁଳନା କରାଯାଇପାରେ । ଏହା ବ୍ୟତୀତ ଚଟାଣର ବିଶେଷ ବିଶେଷ ସ୍ଥାନରେ ଜାଲିଦାର ଝରକା ରହିଛି, ଯେଉଁ ବାଟଦେଇ ନିମ୍ନସ୍ଥ ସମାଧି ଗୁଡ଼ିକ ଦେଖାଯାଏ । ଫକୀରା ରୁଦ୍ରସର୍ଜାଙ୍କର ସମାଧିରେ ନିମ୍ନସ୍ଥ ପ୍ରକୋଷ୍ଠର ଛାତ ପସ୍ଫୁଟିତ ପଦ୍ମଫୁଲ ଆକୃତିର ସ୍ଥାପତ୍ୟକଳା ଦ୍ୱାରା ଶୋଭିତ । ଉପର ପ୍ରକୋଷ୍ଠର ଭିତର ପାଖ କାନ୍ଥରେ ଗଣେଶ ତଥା ଦୁର୍ଗାଙ୍କର ପ୍ରତିମୂର୍ତ୍ତି ରହିଛି ।

## ରାଣୀ ଚେନ୍ନାମ୍ମାଙ୍କର ସମାଧି

ବେଲହୋଙ୍ଗଲ ଠାରେ ରାଣୀ ଚେନାମ୍ମାଙ୍କର ସମାଧି ଅତ୍ୟନ୍ତ ସାଧାରଣ ମାନର । ଖୁବ୍ ନିକଟରେ ଏହା ଉପରେ ପୂଜା କରୁଥିବା ମୁଦ୍ରାରେ ନିର୍ମିତ ରାଣୀଙ୍କର ଏକ କୃଷ୍ଣ ପ୍ରସ୍ତର ନିର୍ମିତ ପ୍ରତିମୂର୍ତ୍ତି ସ୍ଥାପନ କରାଯାଇଛି ।

## ଶୂନ୍ୟ ସ୍ମାରକ

ଧାରବାରରେ ମଧ୍ୟ କିଛି ଗୁରୁତ୍ୱ ପୂର୍ଣ୍ଣ ଧ୍ୱଂସାବଶେଷ ରହିଛି । ତନ୍ମଧ୍ୟରୁ ଥାକରେ ସ୍ମୃତିରେ ଇଂରେଜମାନଙ୍କ ଦ୍ୱାରା ପ୍ରସ୍ତୁତ ସ୍ମାରକ ସର୍ବୋତ୍ତମ । ସେହି ସ୍ମାରକ ନିକଟରେର । କିତ୍ତୁର ଚେନାମ୍ମା ପାର୍କ ନାମରେ ଗୋଟିଏ ପାର୍କ ନିର୍ମାଣ କରାଯାଇଛି । ସହରର ପଶ୍ଚିମାଂଶରେ ୟୁରୋପୀୟ କବରଖାନାରେ ଅକ୍ଟୋବର ତେଇଶ (1824)ରେ କିତ୍ତୁର ଯୁଦ୍ଧରେ ମୃତ୍ୟୁ ବରଣକରିଥିବା ଇଂରେଜ ପଦାଧିକାରୀମାନଙ୍କର ସମାଧି ରହିଛି । ଥାକରେଙ୍କ ସମାଧି ଏଗୁଡ଼ିକ ମଧ୍ୟରେ ସର୍ବୋତ୍ତମ । ଏଥିରେ ଧୂସର ବର୍ଣ୍ଣର ଶଙ୍ଖମର୍ମର ଶିଳାରେ ନିମ୍ନଲିଖିତ ବାକ୍ୟ ଲେଖାଯାଇଛି :

23 ଅକ୍ଟୋବର 1824ରେ କିତ୍ତୁର ବିଦ୍ରୋହରେ ମୃତ୍ୟୁ ବରଣ କରିଥିଲେ ।

ଦକ୍ଷିଣ ମରାଠା ଅଞ୍ଚଳର ପ୍ରଧାନ କଲେକ୍ଟର ଏବଂ ରାଜନୀତିକ ଏଜେଣ୍ଟ

ସେଣ୍ଟ ଜନ ଥାକରେ

ଏହିଠାରେ ସମାଧିସ୍ଥ ।

ଏହାଠାରୁ ଅଦୂରରେ ଅନ୍ୟ ଏକ ସମାଧି ମନ୍ଦିର ରହିଛି । ଏଥିରେ କ୍ୟାପ୍ଟେନ୍ ବ୍ଲାକ୍, ଲେ. ସୀବେଲ୍ ତଥା ଲେ. ଡ଼ୀଟନଙ୍କର ଶବ ସମାଧିସ୍ଥ ହୋଇଛି । ଏଥିରେ ମଧ୍ୟ ପୂର୍ବୋକ୍ତ ବର୍ଣ୍ଣର ଶଙ୍ଖମର୍ମର ପ୍ରସ୍ତର ଲଗାଯାଇଛି । ଏଥିରେ ନିମ୍ନଲିଖିତ ବାକ୍ୟ ଖୋଦିତ ।

ମାନ୍ଦ୍ରାଜ ହର୍ସ ଆର୍ଟିଲାରୀ

ରାଜା କାପ୍ଟେନ୍ ବ୍ଲାକ୍, ଲେ. ସୀବେଲ ତଥା ଡ଼ୀଟନ୍‌ଙ୍କ

ସ୍ମୃତିରେ, ଯେଉଁମାନେ 23 ଅକ୍ଟୋବର 1824ରେ

ବିଦ୍ରୋହ ଦମନ କରିବା ନିମନ୍ତେ

ବୀରତ୍ୱର ସହିତ ଉଦ୍ୟମ କରି

ପ୍ରାଣ ବିସର୍ଜନ ଦେଇଥିଲେ ।

X X X

ସେମାନଙ୍କ ବନ୍ଧୁମାନଙ୍କ ଦ୍ୱାରା ନିର୍ମିତ,

ଯେଉଁମାନେ ସେହି ଦୁଃଖଦ ଘଟଣାରେ

ସେମାନଙ୍କର କର୍ତ୍ତବ୍ୟ ନିଷ୍ଠା ନିଜ ଆଖିରେ ଦେଖିଥିଲେ ।''

ଏ ସମସ୍ତ ଅବଶେଷ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ରାଣୀ ଚେନ୍ନାମ୍ମାଙ୍କର ଉଲ୍ଲେଖଯୋଗ୍ୟ ଭୂମିକାର ସ୍ମରଣୀୟ ଦଲୀଲ୍ । ସ୍ୱାଧୀନତାପ୍ରେମୀ ଯୁବଗୋଷ୍ଠୀ ନିମନ୍ତେ ଏହା ଚିରନ୍ତନ ପ୍ରେରଣାର ଉତ୍ସ ।

# ଅମର କିତ୍ତୁର

ସ୍ୱାଧୀନତା ପୂର୍ବବର୍ତ୍ତୀ ଅନ୍ୟ କେତେକ ଭାରତୀୟ ଦେଶୀୟ ରାଜ୍ୟ ତୁଳନାରେ କିତ୍ତୁର ଥିଲା ଅତ୍ୟନ୍ତ କ୍ଷୁଦ୍ର । ଅନେକ ରାଜ୍ୟ କିମ୍ବା ଜାଗୀର୍ ଶେଷ ପର୍ଯ୍ୟନ୍ତ ତିଷ୍ଠି ରହିଥିଲେ । ଏହାର କାରଣ ହେଉଛି ଯେ, ହୁଏତ ସେମାନେ ଭାରତରେ ଇଂରେଜ ସାମ୍ରାଜ୍ୟର ବିସ୍ତାରରେ ସାହାଯ୍ୟ କରିଥିଲେ କିମ୍ବା ନିଜର ସ୍ୱାଧିନତା ବଦଳରେ ଇଂରେଜମାନଙ୍କ ସହିତ ବୁଝାମଣା କରି ନେଇଥିଲେ । ସ୍ୱାଧୀନତା ପାଇବା ପରେ ଭାରତରୁ ସେଗୁଡ଼ିକୁ ଲୋପ କରିଦିଆଗଲା । ଆଜି ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ସମ୍ପୂର୍ଣ୍ଣ ବିସ୍ମୃତ । କିତ୍ତୁର ଥିଲା ଛଅ ଶହରୁ ଅଧିକ ଏହି ଦେଶୀୟ ରାଜ୍ୟ ଗୁଡ଼ିକଠାରୁ ସମ୍ପୂର୍ଣ୍ଣ ଭିନ୍ନ । କେବଳ ଇତିହାସରେ ନୁହେଁ, ଅସଂଖ୍ୟ ଗୀତ, ଲୋକଗୀତ, ନାଟକ, କବିତା, ତଥା ଅନ୍ୟାନ୍ୟ ରଚନାରେ ଏବଂ ଶ୍ରଦ୍ଧାଳୁ ଜନତାର ହୃଦୟରେ କିତ୍ତୁର ଆଜି ମଧ୍ୟ ଜୀବନ୍ତ ହୋଇ ରହିଛି । ରାଣୀ ଚେନ୍ନାମ୍ମାଙ୍କର ବୀରତ୍ୱ ପୂର୍ଣ୍ଣ ସଂଗ୍ରାମର କାହାଣୀ ଗ୍ରାମୀଣ ଜନତାର କଣ୍ଠରେ ଧ୍ୱନିତ । ଏମାନେ ତାଙ୍କର ମହିମା ଗାନ କରନ୍ତି । ତାଙ୍କ ଜୀବନ କାହାଣୀର ଗୌରବପୂର୍ଣ୍ଣ ଝଲକ ମଞ୍ଚରେ ତଥା ଚଳଚିତ୍ରରେ ପ୍ରକାଶିତ । କର୍ଣ୍ଣାଟକର ଜନତା ଏବେ ମଧ ସେଥିରୁ ପ୍ରେରଣାଲାଭ କରୁଛନ୍ତି ।

ରାଣୀ ଚେନ୍ନାମ୍ମା ହିଁ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ କିତ୍ତୁରକୁ କାଳକାଳ ପାଇଁ ଅମର କରି ଦେଇଯାଇଛନ୍ତି । ସେ ଇଂରେଜମାନଙ୍କଠାରୁ ପରାଜୟ ବରଣ କରିଥିଲେ । ଏଭଳି ଦୁର୍ଦ୍ଦଶା ଆହୁରି ଅନେକ ଦେଶୀୟ ରାଜ୍ୟ ମଧ ଭୋଗିଥିଲେ । ମାତ୍ର ସଂଗ୍ରାମ କ୍ଷେତ୍ରର ବିଜୟ ବା ପରାଜୟ କୌଣସି କାଳରେ ଦେଶର ଗୌରବର ନିୟାମକ ହୋଇନଥାଏ । ଯେଉଁ ଚିନ୍ତା କିତ୍ତୁରର ବୀର ସୈନିକ ମାନଙ୍କୁ ପ୍ରେରଣା ଦେଲା, ଆଉ ଯେଉଁ ମହାନ୍ ଆଦର୍ଶ ସେମାନଙ୍କୁ ଉଦ୍‌ବୁଦ୍ଧ କଲେ, ତାହା ହିଁ ହେଉଛି ସେମାନଙ୍କର ମହତ୍ୱର ଲକ୍ଷଣ । ଆଜି କିତ୍ତୁର ଅମର ହୋଇଛି ଦୁଇଟି କାରଣରୁ । ପ୍ରଥମତଃ, ସ୍ୱାଧୀନତାର ପବିତ୍ର ମସାଲ୍ ଜଳାଇ ରଖିବା ନିମନ୍ତେ ତାହାର ଆନ୍ତରିକ ଉଦ୍ୟମ । ଦ୍ୱିତୀୟତଃ, ସ୍ୱାଧୀନତା ନିମନ୍ତେ ନିଜର ସମସ୍ତ କିଛି ଉତ୍ସର୍ଗ କରିଦେବାର ସାହସ ତଥା ସଂକଳ୍ପ-ଏହାହିଁ କିତ୍ତୁରକୁ ଗୌରବାନ୍ୱିତ କରିଛି । ରାଣୀ ଚେନ୍ନାମ୍ମା କିତ୍ତୁରର ଅଧିବାସୀ ମାନଙ୍କ ମଧ୍ୟରେ ଦେଶ ଭକ୍ତି ତଥା ସ୍ୱାଧୀନତା ପ୍ରେମର ମନ୍ତ୍ର ପ୍ରଚାର କରିଥିଲେ । ତେଣୁ ସେ ଆଜି ସେଠାରେ ଶ୍ରଦ୍ଧା ଓ ସମ୍ମାନର ପାତ୍ରୀ ।

ଚେନ୍ନମ୍ମା ଏକ କ୍ଷୁଦ୍ର ରାଜ୍ୟର ରାଣୀ ଥିଲେ ସତ୍ୟ । ତଥାପି ତାଙ୍କଠାରେ ରାଜନୀତି ବିଶ୍ଳେଷଣ ଚାତୁର୍ଯ୍ୟ, ଅଦମ୍ୟ ସାହସ, ରାଜନୀତିଜ୍ଞତା, ଲୋକଚରିତ୍ର ବିଶ୍ଳେଷଣ, ପାଟବତା ପ୍ରତ୍ୟୁତ୍ପନ୍ନମତିତା ତଥା ଯୁଦ୍ଧନୀତି ପ୍ରବୀଣତା ପ୍ରଭୃତି ନେତୃତ୍ୱର ସମସ୍ତ ଗୁଣ ବିଦ୍ୟମାନ ଥିଲା । ସେ ଥିଲେ ଜଣେ ବିଚକ୍ଷଣ ପ୍ରଶାସକ ଏବଂ ଦୂରଦର୍ଶୀ କୂଟନୀତିଜ୍ଞ । ସେ ନିଷ୍ପତ୍ତି ନେଉଥିଲେ ମାତ୍ର ଗୋଟିଏ ମୁହୂର୍ତ୍ତରେ । ଏବଂ ଥରେ ନିର୍ଣ୍ଣୟ କରିନେବା ପରେ ସେ କାର୍ଯ୍ୟ ସମ୍ପୂର୍ଣ୍ଣ ନ କରି ରହୁନଥିଲେ । ଏହା ବ୍ୟତୀତ କିତ୍ତୁର ପାଇଁ, ଏହାର ଜନତାପାଇଁ ତାଙ୍କ ହୃଦୟରେ ଥିଲା ଗଭୀର ସ୍ନେହ । ଏହି ସବୁ ଗୁଣ ଯୋଗୁଁ ସେ ତାଙ୍କର

ଜୀବିତାବସ୍ଥାରେ ହିଁ ଏକ ଅଲୌକିକ ଚରିତ୍ରରେ ପରିଣତ ହୋଇଥିଲେ । ସେ ଗୁଣ ଅନୁରୂପ କାର୍ଯ୍ୟ ମଧ୍ୟ କରୁଥିଲେ । ରାଜ-ପଣ ଜାରି ରହିବାର ଘୋଷଣା ସେ ଉନ୍ମୁକ୍ତ ଦରବାରରୁ କରିଥିଲେ, ଇଂରେଜ ମାନଙ୍କୁ ଅବଜ୍ଞାକରି । ନିଜ ରାଜ୍ୟର ସ୍ୱାଧୀନତାକୁ ବଳୀ ନଦେଇ, ଇଂରେଜମାନଙ୍କ ସହିତ ବୁଝାମଣା କରି ଯୁଦ୍ଧ ଏଡ଼ାଇବା ନିମନ୍ତେ ସେ ଆନ୍ତରିକ ଉଦ୍ୟମ କରିଥିଲେ । ଇଂରେଜମାନଙ୍କ ସହିତ ସେ ଆଲୋଚନା କରିଥିଲେ, ଗୋଟିଏ ସ୍ତରରେ ରହି, ଦୃଢ଼ ତଥା ଗରିମାମୟ ରୂପରେ । ଆଲୋଚନାରୁ ପ୍ରକଟିତ ହୋଇଥିଲା ତାଙ୍କର କୁଶଳୀ ରାଜନୀତିଜ୍ଞର ରୂପ । ସ୍ୱାୟତ୍ତ ଶାସନର ଦାବୀରେ ସେ ଶେଷ ପର୍ଯ୍ୟନ୍ତ ଅଟଳ ରହିଥିଲେ । କେତେବେଳେ କେଉଁ କଥା ମାନିବାକୁ ହେବ, ଏକଥା ତାଙ୍କୁ ଭଲ ଭାବରେ ଜଣାଥିଲା । ଆଲୋଚନା ଯେତେବେଳେ ବିଫଳ ହୋଇଗଲା, ଏବଂ ଯୁଦ୍ଧ ଅପରିହାର୍ଯ୍ୟ ହୋଇ ପଡ଼ିଲା, ସେତେବେଳେ ସେ ନିଜର ଲୋକମାନଙ୍କୁ ଜାଗ୍ରତକରାଇବାରେ ସଫଳ ହୋଇ ପାରିଥିଲେ । ତାଙ୍କର ବଜ୍ର ଗମ୍ଭୀର ଘୋଷଣା କିତ୍ତୁରର ଲୋକଙ୍କୁ ଗୋଟିଏ ପତାକା ତଳେ ଠିଆ କରି ଦେଇଥିଲା । ବିଜୟ ସମୟରେ ସେ ଥିଲେ ଅତ୍ୟନ୍ତ ଗମ୍ଭୀର ତଥା ଉଦାର । ବନ୍ଦୀମାନଙ୍କୁ ସେ ମୁକ୍ତି ଦେଇଥିଲେ । ବନ୍ଦୀ ସ୍ତ୍ରୀ ବାଳକ ମାନଙ୍କ ସହିତ ତାଙ୍କର ବ୍ୟବହାର ଥିଲା ଭାରତୀୟ ରାଜ-ପରମ୍ପରାର ଅନୁରୂପ । ସେ ସେମାନଙ୍କୁ ରକ୍ଷା କରି ନିରାପଦରେ ଫେରାଇ ଦେଇଥିଲେ । ମାତ୍ର ଯେତେବେଳେ କିତ୍ତୁରର ସ୍ୱାଧୀନତା ପ୍ରଶ୍ନ ଉଠୁଥିଲା, ସେତେବେଳେ କୌଣସି ବୁଝାମଣା ହୋଇପାରୁନଥିଲା । ସେଥିପାଇଁ ପ୍ରାଣ ଦେବାକୁ ସେ ସଦାସର୍ବଦା ପ୍ରସ୍ତୁତ ଥିଲେ । ତାଙ୍କର ଏହି ସଦ୍‌ଗୁଣ ହିଁ ଜନତାକୁ ସହଜରେ ଅନୁପ୍ରାଣିତ କରୁଥିଲା । ତାଙ୍କର ସାମାନ୍ୟ ନିର୍ଦ୍ଦେଶରେ ସେମାନେ ପ୍ରାଣ- ଉତ୍ସର୍ଗ କରିଦେବାକୁ ମଧ୍ୟ ପ୍ରସ୍ତୁତ ହୋଇ ଯାଉଥିଲେ ।

ସାମାନ୍ୟ ମାତ୍ର ଅସ୍ତ୍ରଶସ୍ତ୍ର ସାହାଯ୍ୟରେ କେବଳ ଅତୁଟ ସାହସ ତଥା ଅଦମ୍ୟ ସଂକଳ୍ପ ସମ୍ବଳ କରି କିତ୍ତୁରର ସେଇ ଅଳ୍ପ ସଂଖ୍ୟକ ସେନା, ଦୁର୍ଦ୍ଦମନୀୟତାର ଯେଉଁ ଦୁର୍ଲଭ ଦୃଷ୍ଟାନ୍ତ ସ୍ଥାପନ କଲେ, ତାହା ଆଜି ମଧ୍ୟ ଅନତିକ୍ରମ୍ୟ ହୋଇ ରହିଛି । ଯେଉଁ ଇଂରେଜ ପଦାଧିକାରୀ ବୃନ୍ଦ ଏହି ସଂଗ୍ରାମର ପ୍ରତ୍ୟକ୍ଷଦର୍ଶୀ ଥିଲେ ସେମାନେ ମଧ୍ୟ ଶତ୍ରୁ ସୈନ୍ୟର ଅତୁଳ ଧୈର୍ଯ୍ୟର ଭୂରି ଭୂରି ପ୍ରଶଂସା କରିଯାଇଛନ୍ତି । ଦକ୍ଷିଣାଞ୍ଚଳର କମିଶନର୍ ଡେକାନ୍ କିତ୍ତୁର୍ ସେନା ବାହିନୀର ସାହସ, ଶୌର୍ଯ୍ୟ ତଥା ସଂକଳ୍ପ ପ୍ରସଙ୍ଗରେ କହିଥିଲେ, ''ସେମାନେ ତରବାରୀ ଉତ୍ତୋଳନ କରି କୋଷ ଗୁଡ଼ିକୁ ଫିଙ୍ଗି ଦେଇଛନ୍ତି ।'' ଚାପଲିନ୍‌ଙ୍କର ରାଜନୀତିକ ଏଜେଣ୍ଟ ଷ୍ଟିଭେନ୍‌ସନ୍ ନିଜର ଏକ ପତ୍ରରେ ବିଦ୍ରୋହୀମାନଙ୍କର ''ପ୍ରଚଣ୍ଡ ଉତ୍ସାହ ତଥା କ୍ରୋଧ'' ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ଶେଷ ବିଜୟ ସମ୍ପର୍କରେ ରିପୋର୍ଟ ଲେଖିଲାବେଳେ ଚାପ୍‌ଲିନ୍ ଏମାନଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଲେଖିଛନ୍ତି, ''ଅସାଧାରଣ ଉତ୍ସାହ ତଥା ଓଜଦୀପ୍ତ, କୃତସଂକଳ୍ପ କିତ୍ତୁର ସେନା ସୁଦୃଢ଼ ଦୁର୍ଗ ରକ୍ଷା ଦାୟିତ୍ୱ ବହନ କରିଛନ୍ତି ।

କିତ୍ତୁରର ପରାଜୟ ପରେ ଅନେକ ବର୍ଷ ପର୍ଯ୍ୟନ୍ତ ରାଜ୍ୟୋଦ୍ଧାର ତଥା ନ୍ୟାୟୋଚିତ ଉତ୍ତରାଧିକାରୀଙ୍କର ପ୍ରତିଷ୍ଠାପନ ନିମନ୍ତେ ଛୋଟ ଛୋଟ ବିଦ୍ରୋହମାନ ହୋଇଥିଲା । କିତ୍ତୁର ରାଜ ପରିବାର ପ୍ରତି ଏହା ଥିଲା, ତତ୍ରତ୍ୟ ଜନତାର ଅଦ୍ୱିତୀୟ ତଥା ଅବ୍ୟକ୍ତ ନିଷ୍ଠାର ପରିଚାୟକ । ଏପରିକି 1831ରେ ଲଣ୍ଡନ ପଠାଯାଇଥିବା ବମ୍ବେ ପଲିଟିକାଲ୍ ଡେସ୍‌ପାଚ୍ (4) ରେ ଧାରବାରର କଲେକ୍ଟର ନିସବତ୍ ଲେଖିଥିଲେ ''ସମଗ୍ର ରାଜ୍ୟ ଯେ ଗୋଟିଏ ଲକ୍ଷ୍ୟରେ ଅଟଳ, ଏହା ବିଶ୍ୱାସ କରିବା ନିମନ୍ତେ ପ୍ରତିଦିନ କିଛି ନା କିଛି ନୂଆ ଘଟଣା ଘଟିଯାଉଛି । କୌଣସି କାରଣରୁ ସାଧାରଣ ଜନତା ଏହି ବିଶ୍ୱାସରେ ଦୃଢ଼ ଯେ, ସେମାନଙ୍କର ହୃତ ସ୍ୱାଧୀନତା, ସେମାନେ ପୁନର୍ବାର ଫେରି ପାଇବା

ସମ୍ଭବପର ।''

କୁହାଯାଉଛି ଯେ, ଗୋଟିଏ ଅନ୍ୟ ପତ୍ରରେ ସେ ନିମ୍ନଲିଖିତ ରିପୋର୍ଟ ଦେଇଥିଲେ । ତାଙ୍କ ମତରେ,'' ବଡ଼ ଦୁଃଖର ସହିତ ମୁଁ ଏହା ଉଲ୍ଲେଖ କରିବାକୁ ବାଧ୍ୟ ହେଉଛି ଯେ, ମୋର ପୁରା ବିଶ୍ୱାସ, କିତ୍ତୁରର ଜନତା ନିଜର ପୂର୍ବବର୍ତ୍ତୀ ଶାସକମାନଙ୍କ ପ୍ରତି ଆତ୍ୟନ୍ତିକ ମମତା କାରଣରୁ ସେମାନଙ୍କଠାରୁ ପ୍ରାପ୍ତ ଯେ କୌଣସି ନିର୍ଦ୍ଦେଶକୁ ପାଳନ କରିବା ନିମନ୍ତେ ତତ୍ପର ତଥା ଇଚ୍ଛୁକ ।'' ସେ ଆହୁରି ମଧ୍ୟ ଲେଖିଥିଲେ ଯେ, ଏହି ରାଜ୍ୟର ଲୋକେ ବିଶ୍ୱାସ କରନ୍ତି ଯେ, ଦେଶୀଭକ୍ତର ପୁନଃ ସ୍ଥାପନର ସମୟ ଆସିଗଲାଣି । ସେଇ ଲକ୍ଷ୍ୟ ପୂରଣ ନିମନ୍ତେ ସେମାନେ ସଂଗ୍ରାମ କରିବା ଉଚିତ ବୋଲି ମନେକରନ୍ତି । ନିଜ ଆଶଙ୍କାର ସମର୍ଥନରେ ନିସ୍‌ବତ୍ ଲେଖିଥିଲେ ଯେ, ଧାରବାର କଲେକ୍ଟର 3474 ଜଣ ସନନ୍ଦଧାରୀଙ୍କୁ ବ୍ରିଟିଶ୍ ସାମ୍ରାଜ୍ୟ ପ୍ରତି ଆନୁଗତ୍ୟ ପ୍ରଦର୍ଶନ ନିମନ୍ତେ ଆହ୍ୱାନ କରିଥିବା ସ୍ଥଳେ ମାତ୍ର 499 ଜଣ ସନନ୍ଦଧାରୀ ତାଙ୍କର ଆଦେଶ ପାଳନ କରିଥିଲେ । ଯେଉଁମାନେ ଆସିଲେ ନାହିଁ, ସେମାନେ ଏବେ ମଧ୍ୟ କିତ୍ତୁରର ଶାସକମାନଙ୍କ ପ୍ରତି ନିଷ୍ଠାବାନ୍ ପ୍ରତୀତ ହେଉଛନ୍ତି । ନିଜର ଶାସକଙ୍କ ପ୍ରତି କିତ୍ତୁରର ଲୋକଙ୍କର ପ୍ରଗାଢ଼ ଆସ୍ଥା, ଅତୁଟ ବିଶ୍ୱାସ ତଥା ଅଟଳ ନିଷ୍ଠା ରହିଥିଲା । ସେମାନଙ୍କର ଦେଶଭକ୍ତି, ସ୍ୱାତନ୍ତ୍ର୍ୟବୋଧ ଅତୁଳନୀୟ ।

କିତ୍ତୁର ଥିଲା ସବୁ ଦୃଷ୍ଟିରୁ ଅଜେୟ । କିତ୍ତୁର ସଂଗ୍ରାମ ଥିଲା ଇଂରେଜ ବିରୁଦ୍ଧରେ ସ୍ୱାଧୀନତା ନିମନ୍ତେ ପ୍ରଥମ ଭାରତୀୟ ସଂଗ୍ରାମ । ଏଣୁ ଅକ୍ଟୋବର 23 ତାରିଖ 1824, ଦିବସଟି ଇତିହାସରେ ବ୍ରିଟିଶ୍ ସାମ୍ରାଜ୍ୟ ବିରୁଦ୍ଧରେ କ୍ଷୁଦ୍ର ଏକ ରାଜ୍ୟର ବିଜୟର ଏକ ମହାନ୍ ଦିବସ ରୂପରେ ଚିହ୍ନିତ ହୋଇ ରହିବ । ଏହି ଦିବସଟିର ଗୁରୁତ୍ୱ ଏହି କାରଣରୁ ରହିଛି ଯେ, 1857 ର ସ୍ୱାଧୀନତା ସଂଗ୍ରାମ ତଥା ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ 1942ର ଭାରତ ଛାଡ଼ ଆନ୍ଦୋଳନର ପୂର୍ବାଭାସ ସେହିଦିନ ହିଁ ହୋଇଯାଇଥିଲା । ରାଣୀ ଚେନ୍ନାମ୍ମା ତଥା ମାତୃଭୂମିର ସ୍ୱାଧୀନତା ରକ୍ଷା ନିମନ୍ତେ ଯେଉଁମାନେ ନିର୍ବିକାର ଚିତ୍ତରେ ଯୁଦ୍ଧ ଭୂମିରେ ନିଜର ପ୍ରାଣ ଉତ୍ସର୍ଗ କରି ଦେଇଥିଲେ, ସେହି କିତ୍ତୁରର ସୈନିକବୃନ୍ଦ ସେମାନଙ୍କର ମହାନ୍ ଆଦର୍ଶ, ଅଦମ୍ୟ ଉତ୍ସାହ, ସାହସ ଏବଂ ଶୌର୍ଯ୍ୟ ଯୁଗ ଯୁଗ ଧରି ଅମଳିନ ରହିବ । ସେହି ଶୌର୍ଯ୍ୟ ଯୁଗର ନେତା ଏବେ ଆମ ଭିତରେ ନାହାଁନ୍ତି । ମାତ୍ର ତାଙ୍କର ସ୍ମୃତି ଚିର ଅମର ।

# ଗ୍ରନ୍ଥ ସୂଚୀ

**1. ଇଂରେଜୀ**

ବିବରିଜ୍ ହେନ୍‌ରୀ : 1872 ଏ କମ୍ପ୍ରିହେନ୍‌ସିଭ୍ ହିଷ୍ଟ୍ରି ଅଫ୍ ଇଣ୍ଡିଆ ( ସିଭିଲ୍, ମିଲିଟାରୀ-ଏଣ୍ଡ ସୋସିଆଲ୍ ଭାଗ 3- ଲଣ୍ଡନ)

କୃଷ୍ଣ ରାଓ : ଏମ୍. ବି. ଏନ୍. ହଲପ୍ପା, ଜୀ. ଏସ୍. (ସଂସ୍କରଣ) 1962

ହିଷ୍ଟ୍ରି ଅଫ୍ ଫ୍ରିଡମ୍ ମୁଭମେଣ୍ଟ ଇନ୍ କର୍ଣ୍ଣାଟକ. ଭା 1, ବାଙ୍ଗାଲୋର, ପୃ : 98-198

ଷ୍ଟୋକ୍ସ, ଏଚ୍. ଜେ. : 1870 ହିଷ୍ଟୋରିକାଲ ଏକାଉଣ୍ଟ ଅଫ୍ ଦି ବେଲ୍‌ଗାଁଓ ଡିଷ୍ଟ୍ରିକ୍ଟ ଇନ୍ ବମ୍ବେ ପ୍ରେସିଡ଼େନ୍ସି : ବାଇକୁଲା ଏଜୁକେଶନ୍ ସୋସାଇଟି, ବମ୍ବେ ।

1825 ଏବଂ 1826ରେ ପଲିଟିକାଲ୍ ଡିପାର୍ଟମେଣ୍ଟ ଫାଇଲ୍ : 1825 ର ଡି. ଏନ୍. (39) ଏବଂ ଆର୍. ଏନ୍. (201) ତଥା 1826ରେ ଡି. ଏନ୍ (13) ଏବଂ ଅର. ଏନ୍. (236) ନିର୍ଦ୍ଦେଶକ, ମହାରାଷ୍ଟ୍ର ରାଜ୍ୟ ସଂଗ୍ରହାଳୟ, ବମ୍ବେ ।

ମନୋହର ମୁଲଗାଓଁକର : 1971 : ଛତ୍ରପତୀଜ୍ ଅପ୍ କୋହ୍ଲାପୁର, ବମ୍ବେ ପପୁଲାର ପ୍ରକାଶନ, ବମ୍ବେ ପୃ : 405-9 ।

ଗେଜେଟିୟର୍ ଅଫ୍ ବମ୍ବେ କର୍ଣ୍ଣାଟକ, ଭାଗ - 21 ।

ଶ୍ରୀଧର ତେଲକର : 1957 : କିତ୍ତୁର ଚେନ୍ନାମ୍ମା ରାଣୀ, କିତ୍ତୁର ରାଣୀ ଚେନ୍ନାମ୍ମା, ଇତିହାସ ମଣ୍ଡଲସ୍ ବୋଲହୋଙ୍ଗଲ୍. ବେଲଗାଁଓ ଜିଲ୍ଲା (କେ. ଆର୍. ସି. ଆଇ. ଏମ. ବି.) ଏସିଆଟିକ୍ କ୍ବାର୍ଟର୍ଲି ରିଭ୍ୟୁ : ନ୍ୟୁ ସିରିଜ୍ ଭାଗ 1. ସଂ 122 ।

ଅନିଲ୍ ସୁଦ୍ ବିଦରୀ, 1957 (ଜାନୁୟାରୀ), ରାଣୀ ଚେନ୍ନାମ୍ମା : ଭାଲି ଆଣ୍ଡ କ୍ୱିନ୍ ଅଫ୍ କିତ୍ତୁର : ଦି ମିରର୍ : ପୃ : 60-64 ।

**2. କନ୍ନଡ଼**

ଭାବେପ୍ପା ମୁଗୀ ( ସଂସ୍କରଣ) : 1948 : ଫରାସୀ କାଗଜପତ୍ର ମଲ୍ଲ. କେ. ସି. ଆର. ଆଇ. ଏମ୍. ବି.

ଭାବେପ୍ପା ମୁଗୀ ( ସଂସ୍କରଣ) 1951 : ମଲ୍ଲସରଜନ୍ ଦୁନ୍ଦଭୀ : କେ. ସି. ଆର. ଆଇ. ଏମ୍. ବି.

ଭାବେପ୍ପା ମୁଗୀ ( ସଂସ୍କରଣ) 1959 : କିତ୍ତୁର କାଲଗା, ରୁଦ୍ରଗଡ଼ ପ୍ରକାଶନ, ବେଲ୍‌ହୋଙ୍ଗେଲ୍ ଜିଲ୍ଲା ବେଲଗାଁଓ ।

ବିନ୍ଦୁ ମାଧବ ବରଲୀ ଏବଂ ଦେଶାଇ, ପି. ବି. (1938) କନ୍ନଡ଼ ନାଡ଼ିଣ ମିଟିଦା ମହିଳେୟର ମିଚିନ୍ ବଲ୍ଲୀ, ଧାରବାର

ହଲପ୍ପା, ଜି. ଏସ. 1922 ଭାରତ ସ୍ୱାତନ୍ତ୍ର୍ୟଦ ବେଳାଚୂକୀ, କର୍ଣ୍ଣାଟକ ସରକାର ସାହିତ୍ୟ ସଂଘ ଲିମିଟେଡ଼ : ଧାରବାର

ହିରେଭଟ, ଆର୍. ସି. (ବିଦୀ) 1970 ହସୁର ହଲ୍ଲଦ ଯୋଗୀ ଶ୍ରୀ ଗରମଦ, ମାଡ଼ି ବାଲେଶ୍ୱେର ଚରିତ୍ରେ, ହୁବଲୀ

ଜକାତୀ, ବି. ଆର. ଗୁରୁପାଦସ୍ୱାମୀ ଏବଂ ହିରେମଠ ; 1975, କିତ୍ତୁର ନାଡ଼ିନଲ୍ଲୀ ସ୍ୱାତନ୍ତ୍ର୍ୟ ସମର, ବେଲହୋଙ୍ଗଲ ।

କେ. ସି. ଆର୍. ଆଇ. ଏମ୍. ବି. 1946 ବରଦୀ ମନ୍ତୁ ଘଟନେ, ଏ ରିପୋର୍ଟ ।

କୃଷ୍ଣମୂର୍ତ୍ତି ପୂର୍ଣ୍ଣିକା; 1974 : କିତ୍ତୁର ଚେନ୍ନାମ୍ମା, ଭାରତ ଭାରତୀ ପୁସ୍ତକ ସମ୍ପଦା ବାଙ୍ଗାଲୋର ।

କୁଲକର୍ଣ୍ଣି; ସି. ଏମ୍. 1970 : ଭାରତ ସ୍ତ୍ରୀ ରତ୍ନଗଲୁ, ଭାରତ ବୁକ୍ ଡିପୋ ଧାରବାର

କୃଷ୍ଣାରାୟ, ଏ. ଏନ୍. : 1951 : କିତ୍ତୁର ରାଣୀ ଚେନ୍ନାମ୍ମା, ଆନନ୍ଦ ବ୍ରଦର୍ସ, ବାଙ୍ଗାଲୋର ।

ରାୟଣ ଗୌଡ଼ ତଲ୍ଲୁର (ସଂ) 1924, କିତ୍ତୁର ବନ୍ଦୟା, ବେଲ୍‌ହୋଙ୍ଗଲ ।

ରାୟଣ ଗୌଡ଼ ତଲ୍ଲୁର (ସଂ), 1948, ଧୌରେ ମଲ୍ଲ ସର୍ଜନା କାବ୍ୟ, କେ. ସି. ଆର୍. ଆଇ.ଏମ୍. ବି ।

ରାୟଣ ଗୌଡ଼ ତଲ୍ଲୁର (ସଂ), 1949; କିତ୍ତୁର କଡ଼ଂଗାଇଟ୍, ବେଲ୍‌ହୋଙ୍ଗଲ୍ ସରସ୍ୱତୀ ଦେବି

ଗୌଡ଼ଶ, 1945, ଭାରତଦା ବୀର ମହିଳେୟର୍ ।

ସିବାରାମୁ ; 1967, କନ୍ନଡ କତ୍ତୁବାଲିଙ୍ଗଲୁ, ରାଷ୍ଟ୍ରୋତ୍ଥାନ ସାହିତ୍ୟ ବାଙ୍ଗାଲୋର ।

ଶ୍ରୀ ନାଗେଶ ; 1968; ସ୍ୱାତନ୍ତ୍ର୍ୟ ଦେବୀ ଚେନ୍ନାମ୍ମା ରାଣୀ, ଧାରବାର ।

ମୁଙ୍କାପୁର, ଏମ୍. ଏସ୍. (ସଂସ୍କରଣ); 1972, ଜୀବନ ଜୋକାଲୀ; ଗରିତିୟର ଗରିମୈ କର୍ଣ୍ଣାଟକ ବିଶ୍ୱବିଦ୍ୟାଳୟ, ଧାରବାର, ପୃ : 1-72 ।

ସୁଙ୍କାପୁର, ଏମ୍. ଏସ୍. (ସଂସ୍କରଣ) ; 1976; ଜନପଦ ସାହିତ୍ୟ ଦର୍ଶନ, ଖଣ୍ଡ 2, କର୍ଣ୍ଣାଟକ ବିଶ୍ୱବିଦ୍ୟାଳୟ, ଧାରବାର, ପୃ : 187-247 ।

Printed at : Gayatri Offset Press, Noida.